ହେ ମହାଜୀବନ

HE MAHAJIBANA

■ ଲେଖକ : ଡଃ ହେମନ୍ତ କୁମାର ଦାସ
■ Written By:Dr. Hemanta Kumar Das
■ ପ୍ରକାଶକ : ଆନନ୍ଦ ପ୍ରକାଶନ
ମହମ୍ମଦିଆ ବଜାର,କଟକ- ୨
■ Publisher : Anand Prakasan
Mohammadia Bazar, Cuttack-2
■ ଫୋନ୍ ନଂ.୦୬୭୧-୨୬୦୭୮୪୦,୯୩୩୭୩୦୫୯୧୦
■ Phone No.0671-2607840, 9337305910
■ ପ୍ରଚ୍ଛଦ ଓ ଅକ୍ଷର : ଆନନ୍ଦ, ମହମ୍ମଦିଆ ବଜାର, କଟକ
■ Cover Design & Laser Type : Anand
Mohamadia Bazar, Cuttack
■ ମୁଦ୍ରଣ: ରଶ୍ମି ପ୍ରିଣ୍ଟର୍ସ, କଟକ- ୨
■ Printed at : Rashmi Printers,Cuttack
■ ମୂଲ୍ୟ : ଟ ୧୫୭.୦୦ ମାତ୍ର (ବନ୍ଧାଇ)
ଟ ୧୪୭.୦୦ ମାତ୍ର (ସାଧା)
■ Price : Rs.157/- Only (Board Binding)
Rs.147/- Only (Paper Back)
■ ପ୍ରଥମ ସଂସ୍କରଣ : ୨୦୦୭
■ First Edition : 2007

# ଗଳ୍ପାନୁକ୍ରମ

# ସ୍ୱର୍ଗଦ୍ୱାର

ବେଳାଭୂମିର ଗୋଟିଏ ଅପେକ୍ଷାକୃତ ନିର୍ଜ୍ଜନ ଅଂଶରେ ବସି ବେଣୁଧର ବାବୁ ସ୍ୱର୍ଗଦ୍ୱାର ଆଡ଼େ ଅନାଇଥିଲେ । ଦିଗ୍‌ବଳୟର ପଛଭୂମିରେ ଦେଖା ଯାଉଥିବା ସିମେଣ୍ଟ କଂକ୍ରିଟ୍‌ର ଭିନ୍ନ ଭିନ୍ନ ଆକାରର ସିଲହଟ୍‌ଗୁଡ଼ିକ ଦେଖି ଦେଖି ତାଙ୍କ ମନ ବିରକ୍ତିରେ ଭରି ଯାଉଥିଲା । ଦିନଥିଲା, ଯେତେବେଳେ କି ସ୍ୱଷ୍ଟ ଦିବାଲୋକରେ ମଧ୍ୟ ସେଆଡ଼େ ଯିବାକୁ ଡରମାଡୁ ଥିଲା । ସ୍ୱର୍ଗପଥ ଯାତ୍ରୀମାନଙ୍କର ନିର୍ଜ୍ଜନତା ଆଉ ଶାନ୍ତି ପାଇଁ ସହରର ଏଇ ଅଂଶଟିକୁ ଛାଡ଼ି ଦିଆ ଯାଇଥିଲା । ମାତ୍ର ଆଜି ଆଉ ସେ ସୁନା ଧଉଳା ଦିନ ନାହିଁ । ଶବ ଦାହ ପାଇଁ ଯେଉଁ ଦେଢ଼ଚାଖଣ୍ଡ ଭୂଇଁକୁ ମଣିଷର ସର୍ବଗ୍ରାସୀ କ୍ଷୁଧାର ଦାଉରୁ ବଞ୍ଚାଇ ତଥାପି ବାଡ଼ବନ୍ଦୀ କରି ରଖାଯାଇଛି, ତା'ର ପଛରେ ରାସ୍ତା, ଆଗରେ ରାସ୍ତା, ଗାଡ଼ି ମଟରର କୋଳାହଳରେ ଚତୁର୍ଦ୍ଦିଗର ଆକାଶ ଭାରି ହୋଇ ଝୁଲିପଡ଼ିଚି । ହୁଏତ ଅଦୂର ଭବିଷ୍ୟତରେ ରାଜନୀତିବାଲାଙ୍କ ଅପାର କରୁଣାରୁ ଏଇ ସାମାନ୍ୟ ଭୂଇଁ ଚାଖଣ୍ଡକ ଉପରେ ବି ଆକାଶଚୁମ୍ବୀ ଆବାସ ମୁଣ୍ଡ ଟେକି ଉଠିବ ।

ବେଣୁଧରଙ୍କ ଚିନ୍ତା ଅର୍ଦ୍ଧଶତାବ୍ଦୀ ତଳକୁ ଫେରି ଯାଉଥିଲା । ସ୍କୁଲରୁ ଫେରିବା ପରେ ସେ ଅଭିରାମ ସହିତ ପ୍ରତ୍ୟେକ ଦିନ ଏଇଠି ଆସି ବସୁଥିଲେ । ପଶ୍ଚିମ ଦିଗନ୍ତରେ ଅସ୍ତ ସୂର୍ଯ୍ୟର ବିଦାୟକାଳୀନ ବର୍ଣ୍ଣର ମହୋତ୍ସବ, ତାଙ୍କର ସଦ୍ୟ ତରୁଣ ମନରେ କେତେ ଯେ, ଅବୁଝା ଆବେଗର ଲୁଚକାଳି ଖେଳ ସୃଷ୍ଟି କରୁଥିଲା, ତାହା ଆଜି ଆଉ ତାଙ୍କର ମନେ ନାହିଁ । ଅଭିରାମଟା ହରଦମ ବକ୍ ବକ୍ କରି ଯାଉଥିଲା । ସେଇ ବୟସରେ ତା'ର ଆକାଂକ୍ଷା, ତା'ର ସ୍ୱପ୍ନ କଥା ଶୁଣି ଶୁଣି ବେଣୁଧର ନିଜେ ନିର୍ବାକ ହୋଇ ଯାଉଥିଲେ ।

ଅଭିରାମ କହୁଥିଲା – ବଡ଼ ହୋଇ ସେ ବିଲାତ ଯିବ । ବହୁତ ବଡ଼ କାମ କରି (କାମଟି ପ୍ରକୃତରେ କ'ଣ, ସେ ବିଷୟରେ ନା ତା'ର ଧାରଣା ଥିଲା, ନା ବେଣୁଧରଙ୍କର)

ସେ ବହୁତ ଟଙ୍କା ଅର୍ଜିବ । ତେଣିକି ଟଙ୍କା ପଛେ ପଛେ ଅନ୍ୟ ସବୁ ଆନୁଷଙ୍ଗିକ ଉପକରଣଗୁଡ଼ିକ ଆପେ ଆପେ ମାଡ଼ି ଆସିବେ । ଆଜିକାଲିର ପିଲାମାନେ ଯେମିତି ବାହାର ଦୁନିଆ ସାଙ୍ଗରେ କ୍ଷୀରନୀର ନ୍ୟାୟରେ ମିଶିଯାଇ, ମୂଳରୁ ନିଜର ଲକ୍ଷ୍ୟ ସ୍ଥିର କରି ନେଉଛନ୍ତି, ସେ ଯୁଗରେ ସେମିତି ହେଉଥିଲା କେଉଁଠୁ ? ବିଲାତ ଯିବା ହିଁ ଥିଲା ସେମାନଙ୍କର ସ୍ୱପ୍ନର ଶେଷସୀମା । ତେଣିକି ସେଠିକି ଗଲେ ତ କିଛି ନା କିଛି ହେବାକୁ ପଡ଼ିବ, ନା ନୁହେଁ ? ପରାଧୀନ ଦେଶରେ ବିଲାତ ଫେରନ୍ତାର ମୋହରର କିମ୍ମତ କିଛି କମ ନ ଥିଲା ।

ଅଭିରାମର ସ୍ୱପ୍ନ କିନ୍ତୁ ନିଜ ଅମଳରେ ସଫଳ ହେଲା ନାହିଁ । ମାଟ୍ରିକ ପାସ କରୁଣୁ ନ କରୁଣୁ ବାପା ଚାଲିଗଲେ । ଘରର ବଡ଼ ପୁଅ ଯେତେବେଳେ ପରିବାରର ଦାୟିତ୍ୱ ତ ତାକୁ ମୁଣ୍ଡାଇବାକୁ ପଡ଼ିବ । କାମନାର କବର ଉପରେ ଅଭିରାମ କିରାଣୀ ଚାକିରି ଆରମ୍ଭ କଲା । ତା' ପରେ ବିବାହ–ସନ୍ତାନସନ୍ତତି ସେମାନଙ୍କର ବଢ଼ି ଉଠିବା–ପାଠପଢ଼ା– ତାଲିମ– ଏସବୁ ଭିତରେ ଅଭିରାମର ସେଇ ପିଲାଳିଆ ଖିଆଲ କାହିଁ କୁଆଡ଼େ ଭାସି ଯାଇଥିଲା ।

ମଧ୍ୟ ବୟସରେ ଦୁଇବନ୍ଧୁ ପୁଣି ଥରେ ଏଇ ସମୁଦ୍ର ବେଳାରେ ଏକାଠି ହୋଇଥିଲେ । ବେଣୁଧରଙ୍କ ମୁଣ୍ଡରୁ ସେତେବେଳେ ଦେଶ ସେବାର ଭୂତ ଓହ୍ଲାଇ ଯିବାକୁ ଆରମ୍ଭ କରିଥିଲା ଏବଂ ଅଣ୍ଡର ଗ୍ରାଉଣ୍ଡ ଜୀବନକୁ ବିଦାୟ ଦେଇ ସେ ନିଜ ପାଇଁ ଗୋଟାଏ କ'ଣ କରିବା କଥା ଚିନ୍ତା କରୁଥିଲେ ।

ସେଦିନ କିଛି କହିବା ପୂର୍ବରୁ, ସେ ଅଭିରାମକୁ ବୁଝାଇଥିଲେ – ଏଇ ଢେଉକୁ ଦେଖୁଚୁ ଅଭି । ତାକୁ ଯାହା ଦେଲେ ବି ସେ ଆଣି ପୁଣି ତୁମ ପାଖରେ ଥୋଇ ଦେଇଯାଏ । ତାରି ପାଖରେ ତୁ ଯେତେ କଥା କହି ଯାଇଚୁ, ଯେତେ ସ୍ୱପ୍ନ ଦେଖିଚୁ–ଭାବୁଚୁ କି, ସେ ସବୁ ଭାସିଯାଇଚି ବୋଲି । ଦେଖିବୁ ରହ, ସେ ନିଶ୍ଚୟ ସେ ସବୁକୁ ତଟେ ଫେରାଇ ଦେବ।

ଅଭିରାମ ସେତେବେଳକୁ ଘୋର ସଂସାରୀ । ଅନୁଭୂତିର ନିଆଁରେ ଜଳି ଜଳି ଏକେବାରେ ପଥର ପରି ଟାଣ – ଏ ସବୁ ଆବେଗର ତା' ପାଖରେ କି ମୂଲ୍ୟ ଥାଇପାରେ ?

ବିରକ୍ତ କଣ୍ଠରେ ସେ କହିଲା, ଶୁଣ ବେଣୁ । ମନୁଟା କ'ଣ ଗୋଟାଏ ସ୍କଲାରସିପ୍ ପାଇଁ ଦୁଇବର୍ଷ ଆମେରିକା ଯିବ । ଆଷ୍ଟ୍ରୋ–ଫିଜିକ୍ସରେ ପି. ଏଚ୍. ଡ଼ି କରିବା ପାଇଁ ।

ହାତରେ ମୋତେ ପନ୍ଦର ଦିନ ସମୟ । ପାସ୍‌ପୋର୍ଟ-ଭିସା ଏସବୁ ହେଲା ନାହିଁ । ତୁ ତ କଲିକତାରେ ଏତେଦିନ ରହିଲୁ । ସେଠି ଯଦି ତୋ'ର କେହି ଚିହ୍ନା ପରିଚୟ ଥାଏ, ତେବେ ଟିକିଏ ଚେଷ୍ଟା କର ।

ବେଣୁଧର ଅଭିରାମର କଥା ରଖିଥିଲେ । ହାଉଡ଼ା ଷ୍ଟେସନରେ ଅଭିର ପୁଅ ମନୋଜକୁ ବିଦାୟ ଦେବା ପାଇଁ ସେ ମଧ ଅଭି ସହିତ ଉପସ୍ଥିତ ଥିଲେ । ମନୁ ଚାଲିଗଲା । କ'ଣ ସବୁ କାମ ଦାମ କରି ସିଆଡ଼େ କାହାକୁ ବାହା ହୋଇ ଚାକିରି ବାକିରି କରି ରହିଗଲା । ସେତେବେଳେ ମଧ ହତାଶ ଆଉ ବିରକ୍ତ ଅଭିରାମକୁ ବେଣୁଧର ବୁଝାଇ ଥିଲେ । ଅଭିରାମ କିନ୍ତୁ କହିଥିଲା – ମାଟ୍ରିକ୍ ପାଶ କରୁ ନ କରୁଣୁ ବାପା ଚାଲିଗଲେ । ବଡ଼ପୁଅ ବୋଲି ସବୁଦାୟିତ୍ୱ ମୁଣ୍ଡାଇବାକୁ ମୋତେ ତ କେହି ବାଧ କରି ନଥିଲା । ମୋର ସ୍ୱପ୍ନକୁ ସମାଧି ଦେଇ ମୁଁ କିନ୍ତୁ ପରିବାରକୁ ଆଗୁଳି ଧରି ଥିଲି । ମନୁ ବି ତ ଏଇ ପରିବାରର ବଡ଼ପୁଅ । ଆଜି ଯଦି ମୁଁ ନ ଥାନ୍ତି ତେବେ ଏମାନେ ବାଟରେ ବସି ଥାଆନ୍ତେ, ନା ନାଇଁ ?

ବେଣୁଧର ତାକୁ କହିଥିଲେ ଯଦି ଆଉ ଏମିତିକୁ ନେଇ ସଂସାର ଚଳେ ନାଇଁ । ମନୁ ଆଜି କାଲିକା ପିଲା । ଜୀବନଟା ଯେତେବେଳେ ତା'ର ଯାହା ଭଲ ବୁଝିଲା, ସେ କଲା । ତମମାନଙ୍କୁ ତ ଫୋପାଡ଼ି ଦେଉ ନାଇଁ ।

ଅଭିରାମ କହିଲା – ଏମାନେ ସ୍ୱାର୍ଥପର । ନିଜ ଛଡ଼ା ଆଉ କାହାରି କଥା ଚିନ୍ତା କରନ୍ତି ନାହିଁ । ରକ୍ତର ଦୋଷ – କହିବି କାହାକୁ ?

ଅଭି ସେଦିନ କୌଣସି କଥା ବୁଝି ନ ଥିଲା । ସ୍ୱର୍ଗଦ୍ୱାରର ମୁଠାଏ ମାଟିର କାମନା ବାରମ୍ବାର ପ୍ରକାଶ କରି ମନୁର ମୁହଁ ଆଉ କେବେ ଦେଖିବ ନାହିଁ ବୋଲି ପ୍ରତିଜ୍ଞା କରିଥିଲା ।

ମଣିଷର ସବୁ ପ୍ରତିଜ୍ଞାରେ କି ମୂଲ୍ୟ ଥାଏ ? ମଣିଷ ଚାହିଁଲେ ଯଦି ସବୁ ହୋଇ ଯାଉଥାଆନ୍ତା, ତେବେ ଶେଷରେ ମନୁର ମୁହଁ ନ ଦେଖିବାକୁ ଶପଥ କରିଥିବା ଅଭିରାମ ତାରି ଡାକରାରେ କାନାଡ଼ା ଯାଇଥାଆନ୍ତା କାହିଁକି ଏବଂ କାହିଁକି ବା ସେଇଠି ତା'ର ଶେଷ ଡାକରା ଆସି ଯାଇଥାଆନ୍ତା ?

ଅଭିର ସାନପୁଅ ଠାରୁ ଖବରଟା ପାଇ ବେଣୁଧର ସେଦିନ ସ୍ତବ୍ଧ ହୋଇ ଯାଇଥିଲେ । ଗୋଟିଏ ଗୋଟିଏ ଚାଲି ଶେଷରେ ଆସି ପହଞ୍ଚି ଯାଇଥିଲେ, ଦୁଇ

ଜଣଙ୍କର ଏଇ ପ୍ରିୟ ସ୍ଥାନଟିରେ । ଅଦୂରରେ ବେଳା ଭୂଇଁରେ ମଥାପିଟି ଲେଉଟି ଯାଉଥିବା ଢେଉ ଆଡ଼କୁ ଅନାଇ ବେଣୁଧର କହୁଥିଲେ, ଦେଖିଲୁଟି ଅଭି, ଏଇ ଢେଉ କେମିତି ତତେ ନେଇ ତୋ' ସ୍ୱପ୍ନର ବିଲାତରେ ପହଞ୍ଚାଇ ଦେଲା । ସେଠି ତତେ ଏତେ ଭଲ ଲାଗିଗଲା ଯେ, ଆଉ ଏଇ ମଶାମାଛିର ଦରିଦ୍ର ଦେଶକୁ ଲେଉଟିବାକୁ ତୋର ମନ ହେଲା ନାହିଁ ! ସ୍ୱର୍ଗଦ୍ୱାରରେ ୪ ଆଉ ମାଟି ନାହିଁରେ । ଏଠି ଯୋଉ ବିଜୁଳି ଚୁଲୀ, ସେଠି ବି ସେଇଆ । ତୁ ଭଲରେ ଥାଆ ।

– ''ଆମାକେ ଚିନ୍‌ତେ ପାର୍‌ଚେନ ?''

ହଠାତ୍ ଅପରିଚିତ ନାରୀ କଣ୍ଠରୁ ବଙ୍ଗଳା ଭାଷାର ପ୍ରଶ୍ନ ଶୁଣି ବେଣୁଧର କଳ୍ପନା ରାଜ୍ୟରୁ ଫେରି ଆସିଲେ । ଅସ୍ତସୂର୍ଯ୍ୟର ରକ୍ତାଭ ଆଲୋକ ଯେଉଁ ପରିବାରଟି ଉପରେ ପଡ଼ିଚି, ସେମାନେ ଆପାତତଃ ସୁଖୀ ଓ ସଂତୃପ୍ତ ମନେ ହେଉଥିଲେ । ସେମାନେ ସଂଖ୍ୟାରେ ତିନିଜଣ । ଦୁଇଜଣ ପରିଣତ ବୟସ୍କ ।

ଜଣେ ପୁରୁଷ – ଆଉ ଜଣେ ନାରୀ । ମନେ ହେଉଛି ସ୍ୱାମୀ, ସ୍ତ୍ରୀ ତୃତୀୟ ଜଣକ ତରୁଣୀ– ହୋଇପାରେ ଏମାନଙ୍କର ବଧୂ ବା କନ୍ୟା – ବେଶ ପୋଷାକରେ ସମ୍ଭ୍ରାନ୍ତ – ବାର୍ଦ୍ଧକ୍ୟର ମହିମାମଣ୍ଡିତ ରୂପ–ଦମ୍ପତିଙ୍କର ପ୍ରଥମ ଦର୍ଶନରେ ସମ୍ଭ୍ରମ ଫୁଟି–ଉଠୁଛି । ବେଣୁଧର ମନେ ମନେ ଏମାନଙ୍କୁ ଠଉର କରିବାକୁ ଚେଷ୍ଟା କଲେ । ତାଙ୍କ ଦୃଷ୍ଟିରେ ଅସହାୟତା ପ୍ରକାଶ ପାଇଲା ।

ଚିନ୍‌ତେ ପାରଲେନ୍ ନା ତୋ ? ବୟସ୍କା ମହିଳା ଜଣକ ଏଥର ନବତାରୁଣ୍ୟର ଉଚ୍ଛଳତାରେ ହସି ଉଠିଲେ ।

ବେଣୁଧର ଅଗତ୍ୟା କହିଲେ– ଆପଣମାନେ.... ଆପନାରା ? ?

ନିଜକୁ ସମ୍ଭରଣ କରି ନେଇ ଆଗନ୍ତୁକା କହିଲେ – ଆମି ଅନୁ... ଅନୁରାଧା... ମାଷ୍ଟର – ମଶାୟ – ଆପ୍‌ନିଏର୍ ମଧ୍ୟେ ଆମାକେ ଭୁଲେ ଗେଲେନ୍, ଏତୋ ଭାଲୋ କଥାନୟ !

ମାଷ୍ଟାର ମଶାୟ ! ! ଅନୁ... ଅନୁରାଧା... ।

ତିରିଶ ବର୍ଷ ତଳର ଗୋଟିଏ ସନ୍ଧ୍ୟା ବେଣୁଙ୍କର ମନେ ପଡ଼ିଗଲା । ଲେକ୍–ଗାର୍ଡ଼ନର ଗୋଟିଏ ପୋର୍ଟିକୋରେ ସେତେବେଳେ ଏକ ବିଦାୟ ଦୃଶ୍ୟର ଅଭିନୟ

ଚାଲିଥାଏ । ଗୃହକର୍ତ୍ତା ତାଙ୍କର ପିଠି ଥାପୁଡ଼େଇ ଦେଇ କହିଲେ, 'Life is like that, young man, Take it easy', ଗୃହିଣୀ ଆବେଗପୂର୍ଣ୍ଣ କଣ୍ଠରେ କହିଥିଲେ - ସାବଧାନେ ଥେକୋ ବାବା.... ଶେଷ ଅଶ୍ରୁ ଗଦ୍‌ଗଦ କଣ୍ଠଟି ଜଣେ ଷୋଡ଼ଶୀଙ୍କର - ସେ କହିଲେ - ଆବାର୍ ଆସ୍‌ବେନ୍ ମାଷ୍ଟରମଶାୟ.... ।''

ଏଇ ତେବେ ସେଇ ଅନୁ.... ଅନୁରାଧା... ।

ତାଙ୍କର ଦୃଷ୍ଟିରେ ପରିଚୟର ଅନ୍ତରଙ୍ଗତା ପ୍ରକାଶ ପାଇଲା । ସେ କହିଲେ- ଅନୁରାଧା.... କଲିକତାରୁ କେବେ ଆସିଲ ?''

ଅନୁରାଧା କହିଲେ... ଆମି ଏକ୍‌ନଜରେ ଆପ୍‌ନାକେ ଚିନ୍‌ତେ ପାର୍‌ଲାମ । ଆପନି ବିଶେଷ ବଦ୍‌ଲାନ୍‌ନି ।

ବେଣୁଧର କହିଲେ - କେତେବର୍ଷ ତଳର କଥା । ମନେ ରଖିବା କ'ଣ ଏତେ ସହଜ ?

ଅନୁରାଧା ଉତ୍ତର ଦେଲେ - ଆମାର କିନ୍ତୁ ସବୁ ମନେ ଆଛେ । ସେଇ - ସେଇ ଯେ... ପ୍ରଥମଦିନ ଆମାକେ ଏଇ ଜଲେର ଧାରେ... ।

ଆଲୁଅ ଆଉ ଅନ୍ଧାରର ଲହଡ଼ି ଉପରେ ଦୋଳି ଖେଳୁ ଖେଳୁ ବେଣୁଧର ପଛକୁ ପଛ ଭାସି ଚାଲିଲେ । ଶେଷକୁ ଯାଇ ପହଞ୍ଚିଗଲେ ଚାଳିଶ ବର୍ଷ ତଳର ଠିକ ଆଜିପରି ଗୋଟିଏ ଦିନରେ । ପୁରୀର ସମୁଦ୍ର ବେଳା ସେତେବେଳେ ଆଜିପରି ଏତେ ଜନାକୀର୍ଣ୍ଣ ହୋଇ ନଥିଲା କି ଏତେ ଓଟ, ଘୋଡ଼ା, ହାତୀ ଘୂରି ବୁଲୁ ନ ଥିଲେ । ବାହାରୁ ଆସୁଥିବା ଯାତ୍ରୀମାନଙ୍କ ଭିତରେ ବଙ୍ଗୀୟ ହିଁ ବେଶୀ ଥିଲେ ।

ସମୁଦ୍ର କୂଳରେ ଘର କହିଲେ, କେତୋଟି ଭଙ୍ଗା, ଦରଭଙ୍ଗା କୋଠା । ଭୂତ ପ୍ରେତଙ୍କର ଆଡ୍‌ଡ଼ା ସ୍ଥଳ । ଦିନ ବେଳେ ବି ତା' ପାଖକୁ ଯିବାକୁ ଲୋକଙ୍କର ଡର । ଲୋକ ଆସନ୍ତି, ଆଉ ମୁହଁ ଅନ୍ଧାର ହେବା ଆଗରୁ ନିଜ ଡେରାକୁ ଫେରିଯାଆନ୍ତି... ।

ବେଣୁଧରଙ୍କର ମନେ ଅଛି, ସେତେବେଳେ ଖରାଛୁଟି ଚାଲିଥାଏ । ଛୁଟି କଟାଇବାକୁ ସେ ଘରକୁ ବୁଲି ଆସିଥାଆନ୍ତି । ଅଭିରାମ ସେତେବେଳେ କଲେକ୍ଟରିଏଟ୍‌ରେ କିରାଣୀ । ପ୍ରତିଦିନ ଚାରିଟା ବାଜିବା ବେଳକୁ ବେଣୁଧର ତା' ଅଫିସରେ ହାଜର ହୋଇଯାଆନ୍ତି । ସେଇଠୁ ଦୁଇବନ୍ଧୁ ସମୁଦ୍ର କୂଳକୁ ବୁଲି ଯାଆନ୍ତି । ମୁହଁ ଅନ୍ଧାର ହେବାଯାଏ ବସନ୍ତି ।

ସେଦିନ ବି ସେମିତି ବସି ଏଣୁ ତେଣୁ ନାନା କଥା ଗପୁ ଥିଲେ । ଅଭି କହୁଥାଏ ନୂଆ ଆସିଥିବା କଲେକ୍ଟର ସାହେବଙ୍କ କଥା । ଜାତିକୁ ନେଇ ଅଫିସର ମହଲରେ ଯେଉଁ ରାଜନୀତି ଚାଲିଛି, ତାହାର ଗୂଢ଼ ରହସ୍ୟ ତନ୍ମୟ ହୋଇ ବର୍ଣ୍ଣନା କରୁଥିବା ବେଳେ ହଠାତ୍ ଚିତ୍କାର ଶୁଣାଗଲା....ଅ...ନୁ... ବାଁ ଚା ଓ ...ଆମାର ମେୟେକେ ବାଚାଁ ଓ... ।

ଚକିତରେ ଦୁଇ ବନ୍ଧୁ ଚିତ୍କାର ଆସୁଥିବା ଜାଗା ଆଡ଼କୁ ଅନାଇଲେ। ବେଣୁଧର ତୀର ଗତିରେ ଦୌଡ଼ି ଯାଇଁ ସମୁଦ୍ର ଭିତରକୁ ଡେଇଁ ପଡ଼ିଲେ । କିଛି କହିବା ବା ବୁଝିବା ଆଗରୁ ଏ ଅଘଟଣଟି ଘଟିଗଲା, ଅଭିରାମ କେବଳ ନିର୍ବୋଧଙ୍କ ଭଳି ଚାହିଁ ରହିଲା – ସମୁଦ୍ରରେ ବୁଡୁଥିବା ଆଉ ଉଠୁଥିବା ଗୋଟିଏ ମୁଣ୍ଡ ଆଡ଼କୁ ଆଉ ତାକୁ ଲକ୍ଷ୍ୟ କରି ତୀବ୍ର ଗତିରେ ପହଁରି ଯାଉଥିବା ବେଣୁଧର ଆଡ଼କୁ ।

ତାଙ୍କ ପାଟିରୁ ବାହାରି ଆସିଲା – ବେଣୁ... ହୁସିଆର.... ସେଦିନ ଲୋକବାକ ବେଶୀ ନ ଥିଲେ ବି ସମୁଦ୍ର କୂଳ ଏକା ବେଳକେ ଜନଶୂନ୍ୟ ନଥିଲା । ପାଟିଗୋଳ ଶୁଣି ସେମାନେ ଜଣକ ପରେ ଜଣେ ଆସିଲେ । ଗୋଟିଏ ନୋଳିଆ ବି ଦେବ–ପ୍ରେରିତ ଭଳି କୁଆଡୁ ଆସି ପହଞ୍ଚିଯାଇ, ତାକୁ କେହି କିଛି କହିବା ପୂର୍ବରୁ ପାଣିକି ଡେଇଁ ପଡ଼ିଲା ।

ତେବେ ସେତେବେଳେକୁ ବେଣୁ ଅନୁର ହାତଧରି ତାକୁ କୂଳ ଆଡ଼କୁ ଘୋଷାଡ଼ି ଆଣୁଥାଏ ।

ସେଦିନର କଥା ପରେ ବେଣୁଧର ନିଜେ ନିଜେ ବିଶ୍ଳେଷଣ କରି ଦେଖିଛନ୍ତି । ଅଭିଯୋଗ – ଝିଅ ପିଲାଟାଏ ବୁଡ଼ି ଯାଉଥିବାର ଦେଖି ବେଣୁର ବୀରପଣିଆ ବାହାରି ପଡ଼ିଲା । ଯଦି ବୁଡ଼ିଯାଉଥିବା ମଣିଷଟି ବୁଢ଼ାଟିଏ କି ପିଲାଟାଏ ହୋଇଥାଆନ୍ତା ?

ବେଣୁଧର ସତ କଥା ହିଁ କହିଛନ୍ତି । କିଏ ବୁଡ଼ିଯାଉଚି, ଏକଥା ବେଣୁଧର ଜାଣିବାର ସମୟ ପାଇ ନାହାନ୍ତି ମୋଟେ । ତାଙ୍କ କାନରେ ପଡ଼ିଚି ରମଣୀ-କଣ୍ଠର ଆର୍ତ୍ତଚିତ୍କାର ଆଉ ଆଖି ଦେଖିଚି ବିଶ୍ବାସ ଘାତକ ଢେଉ ଭିତରକୁ ଭିତରକୁ ଟାଣି ନେଇ ଯାଉ ଥିବା କ୍ବଚିତ ଦୃଶ୍ୟମାନ ଏକ ମଣିଷ ମୁଣ୍ଡ । ମୁଣ୍ଡର ତ କୌଣସି ଲିଙ୍ଗ ନ ଥାଏ

ବେଣୁଧର ପୂର୍ବରୁ ଏଭଳି ଦୁଃସାହସିକ କାମ କେବେ କରିନଥିଲେ । ନିଜେ ଯେ ଖୁବ୍ ସାହସୀ ଏକଥା ତାଙ୍କୁ ଭଲ ପାଉଥିବା ଲୋକଟି ମଧ୍ୟ କହିପାରିବ ନାହିଁ । ବଢ଼ି ମରୁଡ଼ି ପ୍ରପୀଡ଼ିତ ଓଡ଼ିଶାର ସନ୍ତାନ । ଦେହ ଚର୍ଚ୍ଚା ନାହିଁ ।ତେଣୁ ବଳକଥା ନ କହିଲେ ବି ଚଳିବ । ତେବେ ଏଭଳି ଏକ ବିପ୍ରଦପୂର୍ଣ୍ଣ କାର୍ଯ୍ୟରେ ଜୀବନପଣ କରି ଦେଲେ କେମିତି ?

ବେଣୁଧରଙ୍କର ଏଥକୁ କିଛି ଉତ୍ତର ନାହିଁ । ତାଙ୍କ ସପକ୍ଷରେ ଅଛି କେବଳ ତାଙ୍କର ବୟସ । ଏତେବେଳେ ବହୁ ଆଖିର କେନ୍ଦ୍ରବିନ୍ଦୁ ହେବା ପାଇଁ ମନରେ ଏକ ସ୍ୱାଭାବିକ ଆକାଂକ୍ଷା ଥାଏ । କିଏ ପଦେ ପ୍ରଶଂସା କରିଦେଲେ ଜୀବନ ଧନ୍ୟ ହୋଇଯାଏ । ମରଣ ଯନ୍ତା ମନେହୁଏ ନନ୍ଦନକାନନ । ଏଇ କାରଣରୁ କେତେ ଅବାଟରେ ଚାଲିଯାଆନ୍ତି । ଉତ୍ତେଜନା, ଶିହରଣ, ରୋମାଞ୍ଚ ଖୋଜୁ ଖୋଜୁ ଜୀବନର ଅନ୍ଧଗଳିରେ ହଜି ଯାଆନ୍ତି । ଦୁଃସାହସିକତାର ଅନ୍ୟ ନାମ ତ ଯୌବନ ।

ଅନୁରାଧା ଉଦ୍ଧାର ପାଇ ଆସିବା ଆଗରୁ ଯଥା ରୀତି ଦୁର୍ଘଟଣାର କାରଣ ଅନୁସନ୍ଧାନ, ଅନୁରାଧାକୁ ସଚେତ କରିବା ପାଇଁ ନାନା ପରାମର୍ଶ ଓ ସମୁଦ୍ର ସମ୍ପର୍କରେ ଏଇ ସବୁ ଅତି ଫାଜିଲ ବିଦେଶୀମାନଙ୍କର ଅଜ୍ଞତା ଜନିତ ନିର୍ବୋଧତା ଉପରେ ତାତ୍ତ୍ୱିକ ଆଲୋଚନା ଚାଲି ସିଦ୍ଧାନ୍ତମାନ ଖୋଜା ଯାଉଥାଏ । ପୂର୍ଣ୍ଣିମା ଦିନଟାରେ ଚୋରା ସୁଅ ଡରରେ କେଡ଼େ କେଡ଼େ ରଥୀ ମହାରଥୀ ଢେଉକୁ ଦୂରରୁ ନମସ୍କାର ପକାଇ ଏଡ଼ାଇ ଯାଉଥିବା ବେଳେ ବଢ଼ିଲା ଝିଅଟାକୁ ବାପ ମା ଜାଣି ଶୁଣି ସମୁଦ୍ରର ଫୁଲିଲା ପାଣିରେ ଧେଇ ଧେଇ ନାଚିବାକୁ କେମିତି ଛାଡ଼ି ଦେଉଥିଲେ ବୋଲି ବିଚରା – ଅନୁରାଧାର ବାପାମାଙ୍କୁ ବହୁ ନିନ୍ଦା କରି ପ୍ରସ୍ତାବମାନ ମଧ୍ୟ ଗୃହୀତ ହୋଇ ସାରିଥାଏ । ପଣ୍ଡା ଟୋକାଟିଏ କାହୁଁ ଉଦୟ ହୋଇ ବଡ଼ ପାଟିରେ ଗାଉଥାଏ – ଖଳିକାର ନୋହି କଳାନାଗକୁ ଚାଳିଲୁରେ– ।"

ବେଣୁଧର କ'ଣ ଆଉ ନିଜ ବଳରେ ଏଡ଼େ ବଡ଼ ଝିଅଟାକୁ କୂଳକୁ ଟାଣି ଆଣି ପାରିଥାଆନ୍ତେ ? ଜୀବନ ବିକଳରେ ଅନୁରାଧା ଯେମିତି ତାଙ୍କୁ ଅକ୍ଟୋପାସ୍ ଭଳି ଜଡ଼ାଇ ଧରିବାକୁ ଆରମ୍ଭ କରିଥିଲା ଏବଂ ସେଥିରେ ତାଙ୍କର ଶ୍ୱାସ ଯେମିତି ରୁଦ୍ଧ ହେବାକୁ ଆରମ୍ଭ କରିଥିଲା, ପରିଣତି କ'ଣ ହୋଇ ଥାଆନ୍ତା, କହି ହେବ ନାହିଁ ।

ଏତିକି ବେଳେ ପହଞ୍ଚି ଯାଇଥିଲା ନୋଳିଆଟି । ସେନ ଦମ୍ପତି ବିମୂଢ଼ ଅବସ୍ଥାରେ ବସି ରହିଥିବା ବେଳେ ଅନୁରାଧାର ଉପଚାର ଚାଲିଥିଲା । ପାଣି କୂଳରେ କାରବାର

ହେଉଥିବା, ଅଧିକାଂଶ ଲୋକ ଏ ସବୁ ଜାଣନ୍ତି । ବାଲିରେ ତାକୁ ଶୁଆଇ ପକାଇ ପେଟରେ ଚାପଦେବା ଫଳରେ ଝଲକା ପାଣି ସେତେବେଳେ ବାହାରି ଆସୁଥାଏ ।

ଅନୁରାଧାର ଚେତା ଫେରିବା ପରେ ସେନ୍ ଗୃହିଣୀଙ୍କର ଆଖି ଫଟାଇ ପାଣି ଝରିବାକୁ ଆରମ୍ଭ କରିଥିଲା । ପଥର ପରି ଠିଆ ହୋଇଥିବା ସେନ୍ ମହାଶୟଙ୍କଠାରେ ପ୍ରାଣ ସଞ୍ଚାର ହୋଇଥିଲା ।

ପରିଚୟ ପାଇବାକୁ ବିଳମ୍ବ ହୋଇନଥିଲା । ଅରୂପ ସେନ୍ ପୋଲିସ୍‌ର ବଡ଼ ଅଫିସର୍ । ଲାଲବଜାରରେ ସରକାରୀ କ୍ୱାର୍ଟରରେ ରହନ୍ତି । ଆଉ ଦିନ ନାହିଁ, ରାତି ନାହିଁ, କଲିକତାର ଅଣ୍ଡରଓ୍ୱାର୍ଲଡ଼ର ଅଧିବାସୀମାନଙ୍କୁ ଶୁଙ୍ଘିଂ ବୁଲନ୍ତି । ଅନୁରାଧା ଏକମାତ୍ର ସନ୍ତାନ । ତାରି ଜିଦ୍‌ରେ ଅସମୟରେ ଛୁଟି ନେଇ ପୁରୀ ଆସିବା କଥା ।

ବେଣୁଧର ଅନ୍ତର୍ମୁଖୀ ମଣିଷ । କଥା ପିଠିରେ କଥା କହିବା ଅଭ୍ୟାସ ତା'ର ମୋଟେ ନାହିଁ । ଅରୂପ ସେନ୍ ଆଉ ତାଙ୍କ ପତ୍ନୀ ଦଶଟା କଥା କହିଲେ, ଯା' ତୁଣ୍ଡରୁ ବଡ଼ କଷ୍ଟରେ ପଦେ ସଂକ୍ଷିପ୍ତ ଉତ୍ତର ବାହାରେ । ସେନ୍ ଗୃହିଣୀ କହନ୍ତି, ଓମା, କି ଲାଜୁକ ଛେଲେରେ ବାବା ।

ଅନୁରାଧାର ତ ଏ ପର୍ବରେ କଥା କହିବାର କୌଣସି ଅବକାଶ ନାହିଁ ।

ଏହା ପରେ ବିଦାୟ ପର୍ବ ! ଷ୍ଟେସନ୍‌ରେ ବେଣୁଧର ଆଉ ଅଭିରାମ । ଗାଡ଼ି ଛାଡ଼ିବା ପୂର୍ବରୁ ସେନ୍ ଗୃହିଣୀ ବେଣୁଧର ହାତ ଧରି କଲିକତା ଆସିବାକୁ ବାରମ୍ବାର ନିବେଦନ କରୁଥାଆନ୍ତି । ଅରୁପ ସେନ୍ କହିଲେ – ଯଦି ଭବିଷ୍ୟତରେ କେବେ ଦରକାର ପଡ଼େ, ଯଦି ଦୁର୍ଭାଗ୍ୟବଶତଃ ବେଣୁ କେବେ ବିପଦରେ ପଡ଼ନ୍ତି, ତେବେ ତାଙ୍କୁ ଯେମିତି ଅତି ଅବଶ୍ୟ ସ୍ମରଣ କରାଯାଏ ।

ସେନ୍ ପରିବାରକୁ ନେଇ ଗାଡ଼ି ଚାଲିଗଲା । ଦୁଇ ବନ୍ଧୁ ଫେରିବା ବେଳେ ଆଲୋଚନା କରୁଥାଆନ୍ତି । ଅଭି କହୁଥାଏ – ଅତି ଖଲିଫା ଲୋକ ଏଇ ଅରୂପ ସେନ । ଭବିଷ୍ୟତରେ ଯଦି କେବେ ବିପଦ ପଡ଼େ, ତେବେ ଦରକାର ବେଳେ କର୍ମରେ ଆସିବେ । ସେମିତି ଅବସ୍ଥା ଆସିଲେ କହିବେ – ଆପଣଙ୍କୁ ତ ଚିହ୍ନି ପାରିଲି ନାହିଁ ।

ବେଣୁ କହୁଥାଏ – ମଣିଷକୁ ଥଟ୍ଟା କରିବା ତୋ'ର ଗୋଟାଏ ବଡ଼ ଖରାପ ଅଭ୍ୟାସ । କାଲି କ'ଣ ହେବ ଜାଣିଛୁ ?

ବେଣୁଧର ସେତେବେଳେ ରେଭେନ୍‌ସା କଲେଜର ଛାତ୍ର । ବୟାଳିଶ ଆନ୍ଦୋଳନରେ ସାରା ଦେଶରେ ସେତେବେଳେ ଅରାଜକତାର ଝଡ଼ ବୋହୁଥାଏ । ସେଇ ଝଡ଼ର ଘୂର୍ଣ୍ଣି କେତେବେଳେ ଆସି କଲେଜରେ ପହଞ୍ଚିଗଲା, ଆଉ ବେଣୁଧର କେମିତି ତା' ଭିତରକୁ ଡେଇଁ ପଡ଼ିଲା, ସେ ସବୁ ଆଉ ଏବେ କିଛି ମନେ ପଡୁନାହିଁ ।

ସେ କେବଳ ଏତିକି ମନେ ରଖିଛି, ତା'ର ଗୋଟାଏ ସ୍ୱପ୍ନର ପୃଥିବୀ ଥିଲା । ସେଠି ତା'ର ଇଚ୍ଛାମାନେ ଶୋଇଥାଆନ୍ତି ନଈ ପାଣିରେ ବୁଡ଼ି ରହିଥିବା ଶାମୁକାର ମୁକ୍ତା ଭଳି । ବର୍ଷା ହେଲେ ଶାମୁକା ଖୋଲିଯାଏ, ମୁକ୍ତାଗୁଡ଼ିକ ସଚଳ ହୋଇଯାଆନ୍ତି । ବର୍ଷା ବନ୍ଦ ହୋଇଗଲେ ମୁକ୍ତା ସବୁ ନିଦେଇ ଯାଆନ୍ତି । ସେମାନଙ୍କଠାରେ ଆଉ ଜୀବନର ଲକ୍ଷଣ ଦେଖାଯାଏ ନାହିଁ । ଆଶ୍ଚର୍ଯ୍ୟ ଏକ ଉଷ୍ଣତାରେ ସେମାନେ ଶାମୁକାର ପେଟରେ ଗଭୀର ନିଦ୍ରାରେ ଅଚେତନ ହୋଇ ରହନ୍ତି ।

ଗୋପନରେ ସବୁ କାମ ଚାଲିଥାଏ । ଅଳିଶା ବଜାରର କେଉଁ ଏକ ଅଜଣା ସ୍ଥାନରୁ ସାଇକ୍ଲୋଷ୍ଟାଇଲ ବୁଲେଟିନ ସବୁ ଛାପା ହୋଇ ଆସୁଥାଏ । ବେଣୁଧର ଆଉ ତା'ର ସାଥୀମାନେ ସେଇସବୁ କାଗଜକୁ ଠିକଣା ଜାଗାରେ ପହଞ୍ଚାଇ ଦେଉଥାଆନ୍ତି । ପୁଲିସ ବି ଚୁପ୍-ଚାପ୍ ବସି ନ ଥାଏ । ଦୁର୍ଦ୍ଧର୍ଷ ପୋଲିସ ଅଧିକାରୀ ନନ୍ଦ ଲୁଣମରା ବେଳର ଅଭିଜ୍ଞତା ନେଇ ପୁଲିସ ବାହିନୀକୁ ଲୋକଙ୍କ ପଛରେ ଡାହାଳ କୁକୁର ଭଳି ଲଗାଇ ଦେଇଥାଆନ୍ତି । ଲୋକ ଧରା ପଡୁଥାନ୍ତି । ମାଡ଼ ଖାଉ ଥାଆନ୍ତି । ନୂଆ ଲୋକ ଆସି ପୁରୁଣା ଲୋକଙ୍କ ଜାଗାରେ ବସୁଥାଆନ୍ତି । ନେତା କହିଥାଆନ୍ତି, ଏବେ ସାରା ଦେଶର ଜନତା ନିଜେ ନିଜର ନେତା । 'କର ଅବା ମର', ଏହା ଛଡ଼ା ଆଉ ବାଟ ନାହିଁ ।

ପୋଲିସ ଭାବୁଥାଏ ସାରା ଦେଶଟା ଯୋଉଠି ଟେରରିଷ୍ଟ ପାଲଟିଗଲାଣି, ସେଠି କେତେ ଲୋକଙ୍କୁ ସେମାନେ ବାନ୍ଧିବେ ? ଏତେ ଲୋକ ରଖିବାକୁ ଜେଲରେ ଜାଗା କାହିଁ ? ଏହାରି ଭିତରେ ବେଣୁଧରଙ୍କର ନାମଟି ପୋଲିସ ରେକର୍ଡ଼ରେ ଦରଜ ହୋଇଗଲା । ନନ୍ଦ ବଡ଼ ହୁସିଆରୀରେ ବେଣୁଧରଙ୍କୁ ଧରିବା ପାଇଁ ଯେତେବେଳେ ଚାରିଆଡୁ ଜାଲ ଗୋଟାଇ ଆଣୁଥିଲେ, ସେତିକିବେଳେ ବେଣୁଧର ହଠାତ୍ ଉଭାନ ହୋଇଗଲେ । ପୋଲିସ ଭାଗ୍ୟରେ ନନ୍ଦଙ୍କ ୟୁସଲେସ୍, ବ୍ଲଡ଼ିଫୁଲ ପ୍ରଭୃତି ଇଂରେଜୀ ଘୁଷିମାନ ଜୁଟିଲା ସିନା, ବେଣୁଧର ବିଶାଳ ଜନସମୁଦ୍ର ମଧ୍ୟରେ କୁଆଡ଼େ ତଳେଇ ଗଲେ ତାଙ୍କର ପତ୍ତା ମିଳିଲା ନାହିଁ ।

କଟକରୁ ଅଣ୍ଡରଗ୍ରାଉଣ୍ଡରେ ରହିବା ପାଇଁ ଆଦେଶ ପାଇ ବେଣୁଧର ଯେତେବେଳେ ହାଓଡ଼ା ପ୍ଲାଟଫର୍ମରେ ଭାସି ଉଠିଲେ, ସେତେବେଳେ ପ୍ରଥମେ ତାଙ୍କର ମନେ ପଡ଼ିଗଲା, ଅରୂପ ସେନଙ୍କ କଥା । ଲାଲବଜାର ଅତି ବିଖ୍ୟାତ ଜାଗା । ସେଇଠି ଖୋଜ ଖବର ନେଲେ, ନିଶ୍ଚୟ ତାଙ୍କର ଠିକଣା ମିଳିଯିବ ।

ଦ୍ୱାର ଖୋଲିଥିଲା ନିଜେ ଅନୁରାଧା । ଏ ଭିତରେ ଅନେକ ବଡ଼ ହୋଇଗଲାଣି । ସେଦିନ ବେଣୁଧର ତାକୁ ଦେଖିଥିଲେ, ସ୍ଫୁଟନୋନ୍ମୁଖ ଗୋଟିଏ କଢ଼ିର ଅବସ୍ଥାରେ । ଆଜି ସେଇ କଢ଼ ସମ୍ପୂର୍ଣ୍ଣ ପ୍ରସ୍ଫୁଟିତ । ସୁବାସ ଆଉ ସୌନ୍ଦର୍ଯ୍ୟରେ ଜଗତ ମୋହୁଛି । ପ୍ରଥମ ଦେଖାରେ ହିଁ ସେ ତାଙ୍କୁ ଚିହ୍ନି ପାରିଲା – କହିଲା – ଓ ମା ଆପନି ! ତା'ପରେ ଚିତ୍କାର ମା, ମାଗୋ, ଦେଖେ ଯାଏ କେ ଏସେଛେନ୍ ।

ସେନ ଗୃହିଣୀଙ୍କର ବିଶେଷ କୌଣସି ପରିବର୍ତ୍ତନ ହୋଇନାହିଁ । ମାତୃମୂର୍ତ୍ତିର ଆଖିରୁ କରୁଣାର ଅମୃତ ଝରି ପଡୁଚି । ସେ ମଧ୍ୟ ବେଣୁଧରକୁ ଚିହ୍ନି ପକାଇଲେ । କହିଲେ- ଏତୋ ଦିନେ ବୁଝି ତୋମାର ସମୟ ହଲୋ । ଆମରା ମନେ ପଡ଼୍‌ଲାମ୍ ?

ଖାଇବା ଟେବୁଲରେ ବେଣୁଧରକୁ ବସାଇ ସେନ୍ ଗୃହିଣୀ ତାର ଖବର ନେଉଥିଲେ । ବେଣୁଧର କିଛି ଲୁଚାଇଲେ ନାହିଁ । କେଉଁ ଅବସ୍ଥାରେ ତାଙ୍କୁ କଟକ ଛାଡ଼ିବାକୁ ହୋଉଛି, ତାହା ମଧ୍ୟ ଚୁମ୍ବକରେ କହିଦେଲେ । ଗୃହିଣୀ ଗମ୍ଭୀର ହୋଇଗଲେ । କହିଲେ – ଆମି ମେୟେ ମାନୁଷ୍ । ସବ୍ ଠିକ୍ ବୁଝି ଓ ନା ଅନୁର ବାବା ଆସୁନ୍ । ବ୍ୟବସ୍ଥା ଏକଟା ହୟେ ଯାବେ ।

ବେଣୁଧରଙ୍କର ମନରେ ଖଟ୍‌କା ଲାଗିଥିଲା । ଅରୂପ ସେନ୍ ଦୁର୍ଦ୍ଦାନ୍ତ ପୁଲିସ୍ ଅଫିସର । ବେଣୁଧରଙ୍କୁ ଓଡ଼ିଶା ପୋଲିସ ହାତରେ ସମର୍ପଣ କରି ଦେଇ ପାରିଲେ, ତାଙ୍କୁ ସରକାର ତରଫରୁ ନେକ୍‌ନାମୀ ମିଳିବ । ସେ କେବେ ଏ ସୁଯୋଗ ହାତଛଡ଼ା କରିବେ ନାହିଁ । ପୋଲିସ ନିଜ ବାପ ମାଆର ମଧ୍ୟ ନୁହନ୍ତି ।

ବେଣୁଧର ତେବେ କ'ଣ ପଳାଇ ଯିବେ ? କୁଆଡ଼େ ଯିବେ ? କଲିକତାରେ ତ ତାଙ୍କର ପରିଚିତ କେହି ନାହାନ୍ତି । ମୁଣ୍ଡ ଗୁଞ୍ଜିବାକୁ ଅନ୍ତତଃ ଟିକିଏ ଆଶ୍ରୟ ତ ଲୋଡ଼ା । କିଏ ଦେବ ସେଇ ଆଶ୍ରୟ ?

ଅରୁପ ସେନ୍ ଗୃହିଣୀଙ୍କଠାରୁ ସବୁ ଶୁଣିଲେ । ଜୀବନରେ ହୁଏତ କେବେ ଏଭଳି ଅବସ୍ଥାର ସମ୍ମୁଖୀନ ହୋଇ ନଥିବେ । କର୍ତ୍ତବ୍ୟ ଆଉ ମାନବିକତାର ଏଇ ଦ୍ୱନ୍ଦ୍ୱ

ଭିତରେ ପଡ଼ିବାକୁ ହୋଇ ନ ଥିବ । ଏଇ ଓଡ଼ିଆ ପିଲାଟି ତାଙ୍କ ବଂଶଧାରାର ପୁଷ୍ପିତ ଲତାଟିକୁ ନୂଆ ଜୀବନ ଦେଇଛି । ପରିବାରର ମୁହଁରେ ହସ ଫୁଟାଇଛି । ନ ହେଲେ ଆଜି କ'ଣ ହୋଇଥାଆନ୍ତା ତାଙ୍କର ଅବସ୍ଥା । ଆଜି ସେ ବିପଦରେ ପଡ଼ି ତାଙ୍କ ପାଖରେ ଠିଆ ହୋଇଛି । ତାକୁ କ'ଣ ସେ କର୍ତ୍ତବ୍ୟର ଖାତିରରେ ପୋଲିସ ହାତରେ ସମର୍ପଣ କରି ଦେବେ ? ମାନବିକତାର ଇତିହାସକୁ ଚିରଦିନ ପାଇଁ କଳଙ୍କିତ କରି ଦେବେ ସାମାନ୍ୟ ସ୍ୱାର୍ଥ ପାଇଁ ? ଯାହା ଦେଖାଯାଉଛି, ଇଂରେଜମାନେ ତ ଏଥର ଯିବେ । କିଛି ଦିନ ପାଇଁ ଯଦି ପିଲାଟାକୁ କୌଣସି ପରିଚୟରେ ନିଜ ଘରେ ରଖି ନିଆଯାଏ, ତେବେ ହୁଏତ କୌଣସି ଅସୁବିଧା ହେବନାହିଁ । ଯଦି କଥାଟା ଜଣା ପଡ଼ିଯାଏ, ତେବେ ତାଙ୍କର ଅବସ୍ଥା ଯାହା ହେବ, ତାଙ୍କୁ ଜଣା ଅଛି । ଚାକିରି ତ ଯିବ । ଏମାନେ ତାଙ୍କୁ ଜେଲ୍ ପଠାଇବାକୁ ବି ଭୁଲିବେ ନାହିଁ । ସେ ଯାହା ହେବ ଦେଖାଯିବ । ଆପାତତଃ ପିଲାଟା ଥାଉ ।

ସେନ୍ ମହାଶୟ ମନସ୍ଥିର କରି ସାରିଥିଲେ ।

ବେଣୁଧରଙ୍କୁ କହିଲେ, ଦେଖୋ ବେନୁ, ଆମି ତୋମାର ଦୋଷ ଦିଛିନା । ଦେଶ ପାଇଁ ହଜାର ହଜାର ଲୋକ ଯାହା କରୁଛନ୍ତି, ତମେ ସେଇଆ କରିଛ । ମୁଁ ତା'ର ବିଚାର କରିବାକୁ କିଏ ? ତମେ ସେଦିନ ମୋ ପାଇଁ ଯାହା କରିଛ, ସେଥିପାଇଁ ମୋ ନିଜ ଜୀବନତ ଅତି ତୁଚ୍ଛ କଥା । ମୋ କାରିଅର୍‌କୁ ଆଜି ବାଜୀ ଲଗାଇ ଦେଉଛି ।

ଅରୂପ ସେନ୍ ନିଜର ପ୍ରତିଶ୍ରୁତି ରଖିଲେ । ବେଣୁଧର ସରକାରୀ କ୍ୱାର୍ଟରରେ ନୂତନ ପରିଚୟ ନେଇ ରହିଗଲେ । ଝିଅ ପାଇଁ ସେନ୍‌ଙ୍କୁ ଜଣେ ଭଲ ଗୃହଶିକ୍ଷକ ମିଳିଯାଇଛି । ଓଡ଼ିଆ ହେଲେ କ'ଣ ହେଲା । ବ୍ରିଲିୟାଣ୍ଟ ଛାତ୍ର । ଝିଅଟାର କ୍ୟାରିଅର ଗଢ଼ିଦେବ । ବାହାରେ ଅନ୍ତତଃ ସମସ୍ତେ ଏଇଆ ଜାଣିଲେ ।

ବେଣୁଧର ହେଲେ – ଅନୁରାଧାର ମାଷ୍ଟର – ମାଷ୍ଟର ମଶାୟ ।

ଗୋଟି ଗୋଟି ହୋଇ ସବୁକଥା ବେଣୁଧରଙ୍କର ମନେ ପଡୁଥିଲା । ସେନ୍ ଗୃହିଣୀଙ୍କର ମାତୃ-ସମା ବାତ୍ସଲ୍ୟ, ଗୃହକର୍ତ୍ତାଙ୍କର ଅଭିଭାବକ ସୁଲଭ ସ୍ନେହ, ସର୍ବୋପରି ଅନୁରାଧାର ଭକ୍ତି ଆଉ ଶ୍ରଦ୍ଧା ଭିତରେ ସ୍ୱପ୍ନ ପରି କଟିଯାଇଥିଲା କେଇଟି ଦିନ । ବେଣୁଧର ଅରୂପ ସେନ୍‌ଙ୍କର ଅବସ୍ଥା ବୁଝି ପାରୁଥିଲେ । ନିଜ ଉପରକୁ ଯେଉଁ ବିରାଟ

ଝୁଙ୍କି ନେଇ ସେ ବେଣୁଧରକୁ ଘରେ ଆଶ୍ରୟ ଦେଇଛନ୍ତି, ତାହା ତାଙ୍କର ନ ବୁଝିବାର କଥା ନୁହେଁ । ସେନ୍‌ଙ୍କର ଅବସ୍ଥା ଠିକ୍ ନାଗ ଚୁଚୁନ୍ଦ୍ରା ଧରିଲା ଭଳି । ନା ଗିଳି ପାରୁଛନ୍ତି, ନା ଛାଡ଼ି ପାରୁଛନ୍ତି !

ବେଣୁଧର ନିଜେ ମଧ ତାଙ୍କୁ ମୁକ୍ତି ଦେବା ପାଇଁ ଅନେକଥର ଚିନ୍ତା କରନ୍ତି । ଏଡ଼େ ବଡ଼ ସହରରେ ତାଙ୍କୁ ମୁଣ୍ଡ ଗୁଞ୍ଜିବାକୁ କ'ଣ ଟିକିଏ ହେଲେ ଜାଗା କେଉଁଠି ମିଳିବ ନାହିଁ ? ତାଙ୍କରି ପାଇଁ ବିଚରା ଭଦ୍ର ଲୋକ କି ଟେନ୍‌ସନ ଭିତରେ ରହୁଛନ୍ତି ?

ପରମୁହୂର୍ତ୍ତରେ ତାଙ୍କର ମନେ ପଡ଼ିଯାଏ, ତାଙ୍କ ନିଜର ଅସହାୟ ଅବସ୍ଥା । କୁଆଡ଼େ ଯିବେ ? କାହାକୁ ଚିହ୍ନି ନାହାନ୍ତି । କାହା ପାଖରେ ଆଶ୍ରୟ ଚାହିଁବେ ? ଶୁଣିଛନ୍ତି ତିନି ଲକ୍ଷରୁ ଅଧିକ ଓଡ଼ିଆ ଏ ସହରରେ ଅଛନ୍ତି । ସେମାନଙ୍କ ଭିତରୁ କେହି ଜଣେ ?

ବେଣୁଧର ଏ ଯୋଜନାକୁ ତତ୍‌କ୍ଷଣାତ୍ ବାତିଲ କରିଦିଅନ୍ତି ।

ସେ ଜାଣନ୍ତି ନନ୍ଦ ଜଣେ ଧୂର୍ତ୍ତ ଅଫିସର । ସେ କେବେ ଚୁପ୍ ହୋଇ ବସି ନଥିବ । ଆଜି ହେଉ କାଲି ହେଉ, ତାଙ୍କର କଲିକତା ପଳାଇ ଆସିବା କଥା ତା' ପାଖରେ ଅଛପା ରହିବ ନାହିଁ । ଏଠାରେ ପହଞ୍ଚି ସେ ପ୍ରଥମେ ତାଙ୍କୁ ଓଡ଼ିଆ ବସ୍ତିରେ ଖୋଜିବ । ନାଃ – ନିଜ ପାଇଁ ସେ କେଉଁ ନିରୀହ ଲୋକକୁ ବିପଦରେ ପକାଇ ପାରିବେ ନାହିଁ । ତା' ଅପେକ୍ଷା ଏଠି ସେ ପୋଲିସ ହେପାଜତରେ ବେଶ ନିରାପଦରେ ଅଛନ୍ତି ।

ଆଗରେ ଠିଆ ହୋଇଥିବା ଅନୁରାଧା ପରିବାର ଆଡ଼କୁ ଅନାଇ ବେଣୁଧର ପଚାରିଲେ, ବାପା ମା ?

ଅନୁରାଧାର ଆଖି ଛଳ ଛଳ ହୋଇଗଲା । ସେ କିଛି କହିବା ପୂର୍ବରୁ ତରୁଣୀ ଜଣକ କହିଲେ, ଆପନି ଥାମୁନ ତୋ,ଆମି, ବଲ୍‌ଛି ।

ଜଣାଗଲା ତରୁଣୀଟି ଅନୁରାଧାର ପୁତ୍ରବଧୂ । ପୁଅ ବୋହୂଙ୍କୁ ନେଇ ରାୟ ପରିବାର ପ୍ରମୋଦ–ଭ୍ରମଣରେ ପୁରୀ ଆସିଛନ୍ତି । ଅରୂପସେନ ଆଉ ତାଙ୍କର ପତ୍ନୀ ଗତ ହୋଇଛନ୍ତି ଅନେକଦିନୁ । ରିଟାୟାର କରିବା ପରେ ସେମାନେ ସଲ୍‌ଟଲେକ ଅଞ୍ଚଳରେ ଘର କରି ରହୁଥିଲେ । ଅନୁରାଧା ଏବେ ସେଇଠି ରହୁଛି ।

ବେଣୁଧରଙ୍କ ଆଡ଼କୁ ଅନାଇ ଅନୁରାଧା କହୁଥିଲା ଜାନେନ୍ ମାଷ୍ଟର୍ ମଶାୟ,

ବାବା–ବଲଛିଲ, ଛେଲେଟା କୋଥାୟ ହାରିୟେ ଗେଲ... ।

ଅରୂପ ସେନ ମୃତ୍ୟୁ ପୂର୍ବରୁ ତାକୁ ଖୋଜୁଥିଲେ । କ'ଣ କହିବେ ବୋଲି ଠିକ୍ କରିଥିଲେ । ବେଣୁଧରର ଠିକଣା କୋଉଠୁ କିଏ ପାଆନ୍ତା ? ସେନ ପରିବାର ସାଙ୍ଗରେ ସେତ କୌଣସି ସମ୍ପର୍କ ରଖିନାହିଁ ।

ଅନୁରାଧା ପୁଣି ପଚାରୁଥିଲା – କେମନ ଆଛେନ ମାଷ୍ଟର ମଶାୟ ?

ବେଣୁଧର ଉତ୍ତର ଦେଲେ – ଯେମିତି ଦେଖୁଚ ।

ଅନୁରାଧା ଦୀର୍ଘଶ୍ୱାସ ପକାଇଲା । କହିଲ– ଭାଲୋ ତ କିଛୁ ଦେଖିନା... ଖୁବ୍ ଦୁଃଖ ପେୟେଛେନ୍ ମନେ ହଚେ ।''

ବେଣୁଧର କହିଲେ – ଜାଣିଚ ଅନୁ, ଯେଉଁମାନେ ଦୁଃଖ କଷ୍ଟ ଭିତରେ ବଡ଼ ହୁଅନ୍ତି, ସେମାନଙ୍କୁ ସାରା ଜୀବନ ଧରି କଷ୍ଟ ଭୋଗିବାକୁ ପଡ଼େ । କବିପରା କହିଛନ୍ତି, ଦୁଃଖେ ଯାଦେର ଜୀବନଗଡ଼ା, ତା' ଦେର ଆବାର ଦୁଃଖ କିରେ ?'' ଦୁଃଖକଷ୍ଟକୁ ଆଉ ସେତେ ଦିହକୁ ନିଏ ନାଇଁ ।

ଅନୁରାଧାର ସ୍ୱାମୀ ଚୁପ୍‌ଚାପ୍ ଏଇ ଅଦ୍ଭୁତ ମଣିଷଟି ଆଡ଼େ ଅନାଇଥିଲେ । ବେଣୁଧରଙ୍କ କଥା ସେ ଏତେ ଶୁଣିଛନ୍ତି ଯେ, ସେ ତାଙ୍କୁ ଆଦୌ ଅପରିଚିତ ମନେ ହେଉ ନଥିଲେ । ଅପଚୟ ଭିତର ଦେଇ ଏମାନେ ଜୀବନର ରହସ୍ୟ ଉଦ୍‌ଘାଟନ କରିବାକୁ ଚେଷ୍ଟା କରନ୍ତି । ସେମାନେ କ'ଣ ତା' ପାରନ୍ତି ? କେଜାଣି !

କଲିକତା ରହଣିର ଶେଷ ଆଡ଼କୁ ଯେଉଁ ବିଚିତ୍ର ଘଟଣା ଘଟିଗଲା, ମୃତ୍ୟୁ ପର୍ଯ୍ୟନ୍ତ ମଧ ତାହାର ସ୍ମୃତି ବେଣୁଧରଙ୍କ ମନରୁ ଯିବ ନାହିଁ । ଅନୁରାଧା କ'ଣ ସେ ଘଟଣା ଭୁଲି ଯାଇଥିବ ? କିଏ ଭଲା ଭୁଲିପାରେ ?

କଟକରେ ନନ୍ଦ ଠିକ ଖବର ପାଇଥିଲେ । ଶିକୁଳି କାଟି ଚଢ଼େଇ ତା'ର ଉଡ଼ିଯାଇଛି । ଯିବ କୁଆଡ଼େ ? ଓଡ଼ିଆମାନଙ୍କ ଧାଉଡ଼ି କହିଲେ ଏପଟେ କାଳିମାଟି, ସେପଟେ କଲିକତା । ତେବେ କାଳିମାଟି ଛୋଟ ସହର । ସେଠି ଲୁଚି ରହିବା ଏତେ ସହଜ ନୁହେଁ । କଲିକତାକୁ ଆଖିରେ ରଖିଲେ, ଚଢ଼େଇ ନିଶ୍ଚେ ଧରା ପଡ଼ିବ ।

ସମୟ କିଛି ଅବଶ୍ୟ ଲାଗିଲା । ବେଣୁଧର ନିଜର ଆସ୍ଥାନ ରୂପରେ ଯେଉଁ ସ୍ଥାନଟିକୁ ବାଛି ଥିଲେ, ଖୋଦ୍ ଦେବଗୁରୁ ବୃହସ୍ପତି ମଧ ତା'ର ସନ୍ଧାନ ପାଆନ୍ତେ ନାହିଁ । ତେବେ ନନ୍ଦଙ୍କର ଇଣ୍ଟେଲିଜେନସ ନେଟ୍‌ୱାର୍କ ଖୁବ୍ ଭଲ ।

ଓଡ଼ିଶାରୁ ଜଣେ ଓଡ଼ିଆ ଟେରରିଷ୍ଟ ନିଖୋଜ ହୋଇଯାଇଛି । ଠିକ୍ ସେତିକିବେଳେ ଏସ୍.ପି.ଙ୍କ ଘରେ ନୂଆ ଗୃହ ଶିକ୍ଷକଙ୍କର ଆମଦାନୀ ହୋଇଛି । ସେ ପୁଣି ଘରେ ରହେ । ପ୍ରାୟ ବାହାରକୁ ବାହାରେ ନାହିଁ । ବେଣୁଧର ହୋଇପାରେ ଏକ ମୂଲ୍ୟବାନ ମଣି । ତେବେ ସେ ବାଛି ବାଛି ଅହିରାଜ ମୁଣ୍ଡରେ ଚଢ଼ି ବସିଚି । ସେଠୁ ତାକୁ ଆଣିବ କିଏ ?

ଏ କାନ ସେ କାନ ହେଉ ହେଉ କଥାଟା ଖୋଦ୍ ଆଇ. ଜି.ଙ୍କ କାନରେ ବାଜିଗଲା । ସାହେବ ଆଇ. ଜି. ବୋଲି କଥା । କାନରେ ନ ପକାଇଲେ ନାଲି ମୁହାଁ ଆଉ ଜାତି ଗୋତ୍ର ରଖିବ ? ତେଣୁ ଟିକା, ଟିପ୍ପଣୀ, ଉଦାତ୍ତ, ଅନୁଦାତ୍ତ, ସ୍ୱରିତ – କଥନ ରୀତିର ସମସ୍ତ କୌଶଳ ପ୍ରୟୋଗ କରି କଥାଟିକୁ ଆଇ. ଜି.ଙ୍କ କାନରେ ପକାଇ ଦିଆଗଲା ।

ମହାମାନ୍ୟ ପାଇପ୍‌ଟାଏ କାମୁଡ଼ି ଧରି ସବୁ କଥା ଶୁଣିଲେ । ଏ ଇଣ୍ଡିଆନମାନଙ୍କର ନାଡ଼ି ନକ୍ଷତ୍ର ସବୁ ତାଙ୍କୁ ଜଣା । ଯାହା ଯେମିତି ହେଲେ ବି ମିଛଟା ଯଦି ଟିକିଏ କମ କହୁ ଥାଆନ୍ତେ – those bloody liar's ତେବେ କଥାଟା ଉଠିଲାଣି ଯେତେବେଳେ ଅରୂପ ସେନ୍‌କୁ ଟିକିଏ ବଜାଇ ଦେଖିବାକୁ ହେବ – ଦିନକାଳ ଭଲ ନୁହେଁ.... ପାଟିରୁ ପାଇପ୍‌ଟାକୁ ହଟାଇ କେବଳ କହିଲେ – Let me see ତାପରେ ସେ ପୁଣି ପାଇପ୍ ପାଟି ଭିତରକୁ ଠେଲି ଦେଲେ ।

ଆଢୁଆଳରେ ଥାଇ ସବୁ ଦେଖିବା ପରେ ଆହୁରି ଆଢୁଆଳକୁ ଯାଇ ଦାରୋଗା ସନାତନ ମୁଖାର୍ଜୀ ଶ୍ଳୋକ ବୋଲିଲେ–

ଗୋରାଂ ଚରିତ୍ରଂ ପୁରୁଷାଂ ଚ ଭାଗ୍ୟଂ – ଇତ୍ୟାଦି ।

ଅସମୟରେ ନିଜ ଘରେ ଗୋରା ଆଇ. ଜି.ଙ୍କୁ ଦେଖି ଅରୂପ ସେନ ଆତଙ୍କିତ ହୋଇ ଉଠିଲେ । ନିଶ୍ଚୟ କୋଉଠି କ'ଣ ଗୋଟାଏ ଅସୁବିଧା ହୋଇଯାଇଛି । ଆଇ. ଜି. ଅବଶ୍ୟ ପ୍ରବେଶ ମାତ୍ରକେ ଅଭୟବାଣୀ ଶୁଣାଇ ଦେଇଥିଲେ । ଏଇ ବାଟେ କ୍ଳବକୁ ଯାଉଥିଲେ । ଡ୍ରାଇଭରଠୁ' ଶୁଣିଲେ – ଏଠି ଏସ୍.ପି. ରହନ୍ତି । ଜଷ୍ଟ ଦେଖିବାକୁ ଚାଲି ଆସିଛନ୍ତି । I like Indian life style so much – ଆଇ. ଜି. ସଫେଇ ବାଢ଼ିଥିଲେ ।

ଅରୂପ ସେନ ଏମାନଙ୍କୁ ହାଡ଼େ ହାଡେ ଚିହ୍ନନ୍ତି । କୁମ୍ଭୀର ଯେମିତି ଶିକାରକୁ ମଡ଼ମଡ଼ ଚୋବାଉ ଚୋବାଉ କାନ୍ଦି ଆକୁଳ ହୁଏ, ଏମାନେ ବି ସେମିତି ହସି ହସି ଅବାଞ୍ଛିତ ଛାତିରେ ଗୁଳି ବସାଇ ସାଙ୍ଗେ ସାଙ୍ଗେ କଣ୍ଡୋଲେନ୍ସ୍ ଲେଖି ବସନ୍ତି । ପକେଟ୍‌ର ରୁମାଲକୁ ନେଇ ଆଖିରେ ଛୁଆଁନ୍ତି । ଅରୂପ ସେନ ତ ନିଜେ ଘର ଭିତରେ ଜୀବନ୍ତ ବୋମାଟିଏ ଲୁଚାଇ ରଖିଛନ୍ତି । ଦେଖାଯାଉ, କୋଉ ପାଣି କୁଆଡ଼କୁ ଯାଉଛି !

ସେନ ସାହେବ ଯଥା ସମ୍ଭବ ନିଜକୁ ଅବିଚଳିତ ରଖି ଆତିଥ୍ୟ ଆଡ଼େ ମନ ଦେଇଥିଲେ । ଚା' ପାନ କରୁ କରୁ ସାହେବ କହିଲେ, Do you know sen ପ୍ରିନ୍‌ସ ଅଫ୍ ୱେଲସ୍ ଇଣ୍ଡିଆ ଆସିଥିଲେ in the year 1875 ତାଙ୍କର ଇଚ୍ଛା ହେଲା ସେ ଗୋଟାଏ respectable Hindu family ର ଜେନାନା ଭିଜିଟ୍ କରିବେ । There was much hullagulla.However ପ୍ରିନସ୍ ଆସିଲେ, ଦେଖିଲେ ଏବଂ do you know what remarks he passed ? He said, I find no difference between a Hindu harem and that of Buckingham palace. ହାଃ–ହାଃ–ହାଃ ।

ଆଲୋଚନା ଠିକ୍ କୁଆଡ଼େ ଯାଉଛି, ସେନ୍ ସାହେବ, ତାହା ଧରିପାରୁ ନ ଥିଲେ ହେଁ, କିଛି କିଛି ବୁଝି ପାରୁଥିଲେ ଏବଂ ସେଥିପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ସାହେବ କହିଲେ, I have the same curiosity. ମୁଁ ବି ହିନ୍ଦୁ ଜେନାନା ଦେଖିବାକୁ ଚାହେଁ ଏବଂ ତମରି ଘରୁ ଏହାକୁ ଆରମ୍ଭ କରିବାକୁ ଚାହେଁ ।

ସେନ ସାହେବଙ୍କ ଆଗରେ ବ୍ୟାପାରଟା ସ୍ପଷ୍ଟ ହୋଇଗଲା । ନିଶ୍ଚିତ ଖବର ପାଇ ସାହେବ ବାପୁଡ଼ା ଏସ୍.ପି. ଙ୍କୁ ନିଜ ହାତରେ ଧରିବାକୁ ଆସିଛି । ବେଣୁଧର ଭିତରେ ଅଛି । ତେବେ ସେ ଶେଷ ଚେଷ୍ଟା କରି ଦେଖିବେ । ଫଳ ଯାହା ହେବାର ହେଉ ।

ସାହେବ ପାଖରୁ Excuse me sir ବୋଲି କହି ମାତ୍ର ପାଞ୍ଚ ମିନିଟ୍ ସମୟ ସେ ସେଦିନ ମାଗି ନେଇଥିଲେ । ନିଜର ବ୍ୟବସ୍ଥା ଉପରେ ଆଇ. ଜି.ଙ୍କର ଏତେ ଆସ୍ଥା ଥିଲା ଯେ, ସେ never mind, never mind କହି ସେନକୁ ଭିତରକୁ ଯିବାକୁ ଦେଇଥିଲେ ।

ସାହେବ ଜାଣିଲେ ସେନ ତାଙ୍କ ପରିଦର୍ଶନ ନିମନ୍ତେ ଭିତରଟାକୁ ଟିକିଏ ବ୍ୟବସ୍ଥିତ କରି ଦେବାକୁ ଚାହେଁ । poor fellow.

ଦ୍ରୁତ ଗତିରେ ସେବ୍ ସାହେବ ଅନୁରାଧା ପାଖରେ ଉପସ୍ଥିତ ହୋଇଥିଲେ । ତାକୁ ସମସ୍ତ ବ୍ୟାପାର ବୁଝାଇ ଦେବା ପରେ କହିଥିଲେ ଆଜ ତୋର ପରୀକ୍ଷାର ସମୟ ଏସେଛେ । ଲଜ୍ୟା କି ମା, ବେନୁ ତୋର ଶିକ୍ଷା ଗୁରୁ, ଆର୍ ଗୁରୁତୋ ପିତାର ମତ... ।

ତାଙ୍କ କଥାରେ ଅନୁରାଧାର କି ପ୍ରତିକ୍ରିୟା ହେଲା, ତାହା ଲକ୍ଷ୍ୟ କରିବା ପାଇଁ ସମୟ ନଥିଲା । ବେଣୁଧରକୁ ଡକାଇ ଅନୁଠାରୁ ସବୁ ଶୁଣିବାକୁ କହି... ଦ୍ରୁତ ଗତିରେ ବୈଠକଖାନାକୁ ଫେରି ଯାଇଥିଲେ । ସାହେବଙ୍କ ଘଡ଼ିରେ ସେତେବେଳକୁ ମାତ୍ର ଚାରି ମିନିଟ ଅତିକ୍ରାନ୍ତ ହୋଇଥିଲା ।

ସାହେବଙ୍କ ପାଖରେ ଠିଆ ହୋଇ ସେବ୍ ସାହେବ ତାଙ୍କୁ ନିଜର ଅନ୍ତଃପୁରକୁ ନିମନ୍ତ୍ରଣ ଜଣାଇଥିଲେ । ମିସେସ ସେନ କାର୍ଯ୍ୟ ବ୍ୟସ୍ତ ଥିବାରୁ ନିଜେ ଉପସ୍ଥିତ ହୋଇ ପାରିନାହାନ୍ତି ବୋଲି ଜଣାଇ ଦେଉଥିଲେ । ତେବେ ଚିନ୍ତା କରିବାର୍ କିଛି ନାହିଁ । ମିସେସଙ୍କ ସାଙ୍ଗରେ ଭିତରେ ଦେଖା ହୋଇଯିବ ବୋଲି ଆଶ୍ୱାସନା ବାଣୀ ଶୁଣାଇଥିଲେ ।

ସରକାରୀ କ୍ୱାର୍ଟର । କେତେ ବା ଘର ? ତେବେ ସେକାଳର ସାହେବ ଅଫିସରମାନଙ୍କ ପାଇଁ ତିଆରି । ସେଥିରେ ଆଡ଼ମ୍ବର ନ ଥାଉ, ବିସ୍ତୃତି ଥିଲା । ସାହେବ ସବୁ ଘର ବୁଲି ଦେଖିଲେ । ଗାଧୁଆ ଆଉ ଟଏଲଟ୍ ବ୍ୟବସ୍ଥା ଆଡ଼େ ବି ଆଖି ପକାଇଲେ । ଫେରିବା ସମୟରେ ହଠାତ୍ ଗୋଟିଏ ବନ୍ଦ ଘର ସାମ୍ନାରେ ଠିଆ ହୋଇ ପଡ଼ି କହିଲେ What is this ?

ଘରଟି ଅନ୍ଧାର ହୋଇଥିଲା । ଅବିଚଳିତ କଣ୍ଠରେ ସେନ ସାହେବ ଜଣାଇଲେ, କିଛି ଦିନ ପୂର୍ବେ ସେ ତାଙ୍କର କନ୍ୟାର ବିବାହ ଦେଇଛନ୍ତି । ଆଜି ହଠାତ୍ କନ୍ୟା – ଜାମାତା ଆସି ଉପସ୍ଥିତ ହୋଇଛନ୍ତି । ସେମାନେ ଏଇ ଘରେ....

ସାହେବ କହିଲେ – Very good, very good- Let me introduce my self to your son-in-law `

ସେନ କୁଣ୍ଠିତ ଭାବରେ ଆଉଜା ହୋଇଥିବା କବାଟକୁ ଖୋଲି ଦେଲେ । ଘର ଭିତର ଅନ୍ଧାର ; ବାରଣ୍ଡାର ଆଲୁଅରେ ଦେଖାଗଲା– ଖଟ ଉପରେ ଦୁଇଜଣ ତରୁଣ

ତରୁଣୀ ନିବିଡ଼ ଆଶ୍ଳେଷରେ ପରସ୍ପରକୁ ବନ୍ଦୀ କରି ଅଷାଢ଼ ନିଦ୍ରାରେ ଶୋଇ ରହିଛନ୍ତି । ତରୁଣର ଗୋଟିଏ ଜଂଘ ତରୁଣୀର କଟିମଣ୍ଡନ କରିଛି ।

Excuse me. I am sorry ବୋଲି କହୁ କହୁ ସାହେବ ଦ୍ରୁତ ଲେଉଟି ପଡ଼ିଲେ ଏବଂ ପ୍ରାୟ ଧାଇଁ ଧାଇଁ ଫାଟକ ପାଖରେ ରଖା ଯାଇଥିବା ଗାଡ଼ି ପାଖରେ ପହଞ୍ଚିଗଲେ । ସେନ୍‌ସାହେବ ଗାଡ଼ି ପାଖରେ ପହଞ୍ଚିଲା ବେଳକୁ ଗାଡ଼ି ଷ୍ଟାର୍ଟ ହୋଇସାରିଥିଲା । ସାହେବ କେବଳ କହିଲେ । am extremely sorry ।

ସେନ ସାହେବଙ୍କ ବିମୂଢ଼ ଦୃଷ୍ଟି ଆଗରେ ଧୂଆଁ ଛାଡ଼ି ଗାଡ଼ି ବାହାରିଗଲା ।

ବେଣୁଧର ଦୀର୍ଘଶ୍ୱାସ ପକାଇଲେ ।

ଅନୁରାଧା କହୁଥିଲା – ଆଜି ଏତେ ଦିନ ପରେ ଯେତେବେଳେ ଆପଣଙ୍କୁ ପାଇଛି, ଏମିତିରେ ଛାଡ଼ି ଦେଉନାହିଁ । ମୋ ଘରେ ପାୟେର ଧୂଳୋ' ଦେବାକୁ ହେବ ।

ବେଣୁଧର ଭାବୁଥିଲେ, ସେଦିନ ସେଇ ଅନ୍ଧକାର ଘରେ ତରୁଣୀ – ଅନୁରାଧା ଯେତେବେଳେ ନିଜ ହାତରେ ତାଙ୍କର ଗୋଟିଏ ପାଦକୁ ନେଇ ତା'ର କଟି ଦେଶରେ ସ୍ଥାପନ କରିଥିଲା ଏବଂ ନିବିଡ଼ ଆଶ୍ଳେଷରେ ତାଙ୍କୁ ବାନ୍ଧି ରଖି ନିଜକୁ ତାଙ୍କର ଶରୀରରେ ସମ୍ପୂର୍ଣ୍ଣ ରୂପେ ମିଶାଇ ଦେବାକୁ ଚାହୁଁଥିଲା, ତାହା କ'ଣ ସେ କେବଳ ବାପାଙ୍କର ଆଦେଶ ପାଳନ କରିବାକୁ ଅଭିନୟ ରୂପରେ କରିଥିଲା ?



# ପର ଆପଣା

କଥାଟା ଘଟିଗଲା ବଡ଼ ଅପ୍ରତ୍ୟାଶିତ ଭାବେ । ଉଭୟପକ୍ଷ କେହି ଏଥିପାଇଁ ପ୍ରସ୍ତୁତ ନ ଥିଲେ । ତେବେ ଥରେ ସୂତ୍ରପାତ ହୋଇଯିବା ପରେ ତା' ପରେ ଘଟଣା ସବୁ ଦ୍ରୁତଗତିରେ ଘଟି ଚାଲିଲା । ଦଳେଇ ଭାବିଲେ– ଏତେ ଦିନର ପରିଚୟ । ଏତେ ଘନିଷ୍ଠତା, ପାରିବାରିକ ଆତ୍ମୀୟତା – ସେ ଏତେ ରୁକ୍ଷ ହେବା ଉଚିତ ନ ଥିଲା ।

ପଣ୍ଡା ଭାବିଲେ – ଦେଖ ତା' କଥାକୁ । କେଡ଼େ ଛୋଟ ବୁଦ୍ଧି । ସେ ତ ଆଉ ଜାଣିଶୁଣି ଏଇ ଦୁର୍ଘଟଣା ଘଟାଇ ନାହାନ୍ତି । ଏଥିପାଇଁ ଏତେ ମୁଣ୍ଡ ଗରମ କରିବାର କ'ଣ ଦରକାର ଥିଲା ?

ଦଳେଇ ଚିନ୍ତା କଲେ, ଦୋଷ ତ ପଣ୍ଡାର । ସେ ତାଙ୍କର ଅଧସ୍ତନ । ପାଖାପାଖି ସରକାରୀ କ୍ୱାର୍ଟରରେ ବସା । ଯିବାଆସିବା, ପାଖରେ ବସିବାର ସୁଯୋଗ ଦେଇଛନ୍ତି ବୋଲି କ'ଣ ଆଉ ମୁଣ୍ଡରେ ବସିବାକୁ କହିଛନ୍ତି ? ପଣ୍ଡା କ'ଣ ତାଙ୍କୁ କଥାଟା ବୁଝାଇ କହିପାରି ନଥାନ୍ତା ! ? ନିଜର ସୀମା କେଉଁଠି, ତା'ର ତ ଜାଣିବା ଉଚିତ ।

ପଣ୍ଡା ଥଣ୍ଡା ମିଜାଜ୍‌ରେ କଥାଟାକୁ ତଳେଇ ବିଚାର କଲେ । ହଁ, ସେ ଚୁକ୍ତିର ଖିଲାପ କରିଛନ୍ତି । ତେବେ ତା'ର କାରଣ ତ ସେ ସେଇ ମୁହୂର୍ତ୍ତରେ ଦଳେଇଙ୍କୁ ଜଣାଇ ଦେଇଥିଲେ । ମଣିଷର କ'ଣ ଆଉ ସୁବିଧା ଅସୁବିଧା ନାହିଁ ? କଥା ଦେଇଛନ୍ତି ବୋଲି କ'ଣ ସେ ହାତକାଟି ଲେଖି ଦେଇଛନ୍ତି ନା ମୁଣ୍ଡ ବିକି ଦେଇଛନ୍ତି ?

ସକାଳୁ ଉଠିଲା ମାତ୍ରେ ପଣ୍ଡାଙ୍କର ପୁଅ ଟୁଟୁ ବହୁ କାଳର ଅଭ୍ୟାସ ହେତୁ ଦଳେଇଙ୍କର କ୍ୱାର୍ଟରରେ ହାଜର ହୁଏ । ସେତେବେଳେ ହୁଏତ ଦଳେଇ ଜଳଖିଆ ଖାଉଥା'ନ୍ତି । ଟୁଟୁ ପାଇଁ ନିମନ୍ତ୍ରଣର ପ୍ରୟୋଜନ ହୁଏ ନାହିଁ । ସିଧା ଯାଇ ଦଳେଇଙ୍କ କୋଳରେ ଚଢ଼ି ବସେ ।

ଦ୍ୱିପ୍ରହରବେଳେ ବାବୁମାନେ କାମ ଉପରକୁ, ଆଉ ପିଲାମାନେ ସ୍କୁଲକୁ ଚାଲିଗଲା ପରେ ଦଳେଇ ଗୃହିଣୀ ହାତରେ ବିଭିନ୍ନ ଆକାରର ତାଟିଆ ଥାଳିଆ ଧରି ପଣ୍ଡାଙ୍କ କ୍ୱାର୍ଟରରେ ଉପସ୍ଥିତ ହୁଅନ୍ତି । ପଣ୍ଡିଆଣୀ ସେତେବେଳକୁ ଟେବୁଲରେ ଦୁଇଟି ଜାଗାରେ ଖାଇବାର ବାଢ଼ି ବାରମ୍ବାର ଦ୍ୱାର ଆଡ଼କୁ ଅନାଇ ବସିଥାଆନ୍ତି ।

ଦଳେଇଆଣୀ ପହଞ୍ଚିଯିବା ପରେ ଏକାଥରକେ ଆରମ୍ଭ କରିଦିଅନ୍ତି – ମାଇଚିଆ ଦୁଃଖୀ କ'ଣ କହୁଚି, ଶୁଣିଲଣି ଅପା !

କିଛି ଦିନ, ମାନେ ଯେଉଁଦିନ ଏ ଦୁର୍ଘଟଣା ଘଟିଗଲା – ତା' ପରଦିନଠୁଁ ଅବସ୍ଥାର ପରିବର୍ତ୍ତନ ହୋଇଛି । ଗୃହକର୍ତ୍ତାମାନେ ଯେ ଏ ବିଷୟରେ ପରିବାରରେ ଆଲୋଚନା କରିଛନ୍ତି, ଏହା ନୁହେଁ । ତେବେ କିଛି ଯେ ଗୋଟାଏ ଘଟିଯାଉଛି ଉଭୟ ପକ୍ଷର ଗୃହିଣୀ ସେମାନଙ୍କର କର୍ତ୍ତାମାନଙ୍କର ମୁହଁ ଦେଖି ବୁଝିଯାଇଛନ୍ତି । ଏଭଳିକି ଟୁଟୁଠାରେ ମଧ୍ୟ ପରିବର୍ତ୍ତନର ଏଇ ହାଓ୍ୱା ବେଶ୍ ଜୋର୍‌ରେ ବାଜିଛି । ନିତିଦିନିଆ ଅଭ୍ୟାସରେ ଟୁଟୁ ସେଦିନ ସକାଳୁ ତା'ର ନିଜସ୍ୱ ସ୍ଥାନଟି ଦଖଲ କରିବାକୁ ଯାଉଥିଲା । ଦଳେଇଙ୍କର ଭ୍ରୂକୁଞ୍ଚିତ ହୋଇଉଠିଲା । ସେ ରୁକ୍ଷ ସ୍ୱରରେ କହିଲେ – ଟୁଟୁ, ନାଃ...

ଟୁଟୁ ସ୍ତମ୍ଭିତ ହୋଇ ଠିଆ ହୋଇ ପଡ଼ିଲା । ତା'ର ଥମ୍ ଥମ୍ ମୁହଁରୁ ପାଣି ନିଗିଡ଼ି ପଡ଼ିଲା । ତା' ପରେ ସେ ମୁହଁ ବୁଲାଇ ତୀବ୍ର ଗତିରେ ନିଜ ଘର ଆଡ଼କୁ ଧାଇଁଗଲା ।

ଆଦର–ଅନାଦର, ପୁରସ୍କାର – ତିରସ୍କାର ଏସବୁ କଥା ପାଟିରେ ନ କହିଲେ ମଧ୍ୟ ପିଲାମାନେ ଠିକ୍ ବୁଝିପାରନ୍ତି ।

ଦଳେଇଆଣୀ ଦୃଶ୍ୟଟିକୁ ଦେଖି ଚକିତ ହେଲେ । ସ୍ୱାମୀଙ୍କ ଆଡ଼କୁ ଅନାଇ କହିଲେ – ଏ କ'ଣ ? ଟୁଟୁ ଏମିତି ବାଇବିଛ ଲାଗିଲା ଭଳି ପଳାଇଲା କାହିଁକି ?

କଡ଼ା କଣ୍ଠରେ ଦଳେଇ ଉତ୍ତର ଦେଲେ – ମୁଁ କେମିତି ଜାଣିବି ?

ମନଟା କିନ୍ତୁ ଖରାପ ହୋଇଗଲା । ସକାଳଟା ଲାଗିଲା କେମିତି ଫାଙ୍କା ଫାଙ୍କା । ଟୁଟୁର ବହୁ ଅଦରକାରୀ ପ୍ରଶ୍ନର ଉତ୍ତର ଦେଉ ଦେଉ', ଯେଉଁ ସକାଳ ତାଙ୍କୁ ଅତି ଛୋଟ ମନେ ହେଉଥିଲା – ସେଇ ଏବେ ମନେହେଲା କେତେ ବିଶାଳ – କେତେ ଶୂନ୍ୟ ! ଦଳେଇ ଭାବିଲେ – ନାଃ, କଥାଟାକୁ ଆଉ ଆଗକୁ ବଢ଼ିବାକୁ ଦିଆଯିବା ଭଲ ହେବ ନାହିଁ । ପଣ୍ଡାକୁ ଡାକି ଗୋଟାଏ ସାଲିସ୍ କରିନେବା ଠିକ୍ ହେବ ।

ଅଭିମାନରୁ ଚିନ୍ତା ଆସେ, କେଡ଼େ ଖରାପ ଲୋକଟା । ଦୋଷ କରିବ, ଏଣେ ପୁଣି ନାଲି ଆଖି ଦେଖେଇବ ! ଉପରିସ୍ଥଙ୍କ ପାଖରେ ଟିକିଏ ମୁଣ୍ଡ ନୁଆଇଁ ଦେଲେ କ'ଣ ବଡ଼ପଣ ଚାଲିଯିବ ? ନାଃ, ସେ କେବେ ତାକୁ ଡାକିବେ ନାହିଁ । ଦେଖିବେ ବ୍ରାହ୍ମଣଟୋକାର ଦୌଡ଼ କେତେଯାଏ । ପଣ୍ଡାଙ୍କ କାନ ଉନ୍ମୁଖ ହୋଇଥାଏ – ଗୋଟିଏ ଗୁରୁଗମ୍ଭୀର ଡାକକୁ । ଅଫିସରୁ ଫେରିବା ପରେ ଦୁଇ ବନ୍ଧୁଙ୍କର ଆଡ୍‌ଡ଼ା ଜମେ ପଣ୍ଡାଙ୍କ ଚାହା ଟେବୁଲରେ । 'ଆହେ ପଣ୍ଡା' ବୋଲି ଡାକଟାଏ ମାରି ଦେଇ ଦଳେଇ ଡାଇନିଂ ସ୍ପେଶ୍ ଆଡ଼କୁ ମାଡ଼ି ଆସନ୍ତି । ରୋଷେଇଘରୁ ଶୁଣାଯାଉଥାଏ, ଚେଁ ଚାଁ, ସେଁ ସାଁ ଇତ୍ୟାଦି ଶବ୍ଦ । ଦଳେଇ ହୁଙ୍କାର ଛାଡ଼ନ୍ତି – ଦୁଃଖା, ଆବେ ହେ ଦୁଃଖା ! ଚା' ଟିକିଏ ପାଇଁ ଆଉ କେତେବେଳେ ବସାଇବୁ ବେ ?

ଆରମ୍ଭ ହୋଇଯାଏ ଦେଶ କଥା, ରାଜ୍ୟ କଥା, ଅଫିସ ରାଜନୀତି କଥା । ଢିଙ୍କିଶାଳରୁ କଥା ଯାଇ ଢେଙ୍କାନାଳରେ ଉଠେ । ଲାଲୁ ଯାଦବ ଶୁଆଙ୍କୁ ଯେତେ ଶିଖେଇ ପାର୍ଲିଆମେଣ୍ଟ ଘେରାଉ କଲେ ବି କେହି ପିଠିରେ ପଡ଼ିବେ ନାହିଁ । ନାଇଡୁ – ସେ ଯୋଉ ଶୁଖିଲା ମୁହାଁ ଦାଢ଼ିଆଟି ଏବେ ଦିଲ୍ଲୀ ଦରବାରର କିଂମେକର ହୋଇଛନ୍ତି – ସେଇ ତ ତା' ଶ୍ୱଶୁରକୁ ମାରିଚି ହେ – ତେମେ ଶୁଣିନା ପଣ୍ଡା– କ୍ଷମତା ପାଇଁ ମୋଗଲ ଅମଳରେ ଏମିତି ବାପା, ଦାଦା, ଭାଇଙ୍କୁ ହତ୍ୟା କରାଯାଉଥିଲା । ହାଃ ହାଃ... ହାଃ... ଗମ୍ଭୀର ଅଟ୍ଟହାସ୍ୟରେ ସରକାରୀ କ୍ୱାର୍ଟରର ଏଗାର ଫୁଟିଆ ଛାତ ଫାଟି ପଡ଼ିଲା ଭଳି ଲାଗେ....

ଏବେ ସେ ସବୁ ଶୂନ୍ୟ । ସମୟ ନିସ୍ତରଙ୍ଗ ହୋଇ ପଣ୍ଡାଙ୍କ ମୁଣ୍ଡ ଉପରେ ଝୁଲି ରହିଛି । ପଣ୍ଡା ଭାବନ୍ତି – ନାଃ, ଥରେ ଯିବେ । ଦଳେଇଙ୍କ ସାଙ୍ଗରେ ଗୋଟାଏ ବୁଝାମଣା କରିନେବେ । ପୁଣି ଭାବନ୍ତି – ଯଦି ସେ ଦୋଷ କରିଛନ୍ତି, ଦଳେଇ କ'ଣ ତାଙ୍କୁ ଥରେ ଡାକି, ବୁଝେଇଦେଇ ପାରନ୍ତେ ନାହିଁ ? ତାଙ୍କୁ ସମ୍ମାନ ଦେଖାଇବାରେ ସେ କ'ଣ କେବେ ହେଳା କରିଛନ୍ତି ? ନାଃ – ସେ ଡାକିବେ ନାଇଁ, ବଡ଼ ପଣ ଚାଲିଯିବ ନାଁ ? ଥାଉ – ତା' ଅଫିସରଗିରି ତା' ଘରେ – ଯାନେ ଦୋ... ।

ଉଭୟ ପକ୍ଷ କେହି କାହାରି ପାଖକୁ ଆସିପାରନ୍ତି ନାହିଁ । ଭିତରେ ଭିତରେ କୁହୁଳୁ ଥାଆନ୍ତି । ମନର ଆକାଶ ମେଘାଚ୍ଛନ୍ନ ହୋଇ ଆସେ ।

ଗୋଟିଏ ପ୍ରୋଜେକ୍ଟର ଦୁଇ କର୍ମଚାରୀ । ଜଣେ ଏସ୍.ଡ଼ି. ଓ. ଆଉ ଜଣେ ଓଭରସିୟର୍ । ଶିକ୍ଷାଗତ ଯୋଗ୍ୟତା ସମାନ । ପାହ୍ୟାରେ ଟିକିଏ ତଳ ଉପର ଅଛି ।

ସେ ଦୃଷ୍ଟିରୁ ଦଳେଇ ପଣ୍ଡାଙ୍କର ଉପରିସ୍ଥ । ସେଥିରେ କିଛି ଯାଏ ଆସେ ନାହିଁ । ସବୁବେଳେ ଦୂରତ୍ୱ ରଖି ଚଳିହୁଏ ନାହିଁ । କୋଟି କୋଟି ଟଙ୍କାର କାମ । ଦଶବାର ଜଣ ଠିକାଦାର । ୱାର୍କସରକାର, ମେଟ୍, ଖଲାସି, ଡ୍ରାଇଭର, କୁଲି –ଶତାଧିକ ଲୋକ । ଏମାନଙ୍କ କଥା ବୁଝିବାକୁ ହେବ ।

ଭିନ୍ନ ଭିନ୍ନ କାମରେ ପ୍ରତ୍ୟେକ ଦିନ ନୂଆ ନୂଆ ଲୋକ ଆସି ପହଞ୍ଚନ୍ତି । ଠିକାଦାରମାନେ ଅଛନ୍ତି । ଖାଲି ହାତରେ ରାଜ-ଦର୍ଶନକୁ ଆସିବା ଏ ଦେଶରେ ଅବିଧି । ଏବେ ଯାହାକୁ ଲାଞ୍ଚ ବୋଲି କୁହାଯାଉଛି, ଶାସ୍ତ୍ରରେ ତାହା ହେଉଛି ସମ୍ମାନ ମୂଲ୍ୟ । ପଣ୍ଡା ହୁଅନ୍ତୁ, ଅବା ଦଳେଇ ହୁଅନ୍ତୁ ସେମାନେ ଶାସ୍ତ୍ରୀୟ ବ୍ୟବସ୍ଥାର ବାହାରକୁ ଯିବେ କିପରି ?

ଦଳେଇ ଅବିବେକୀ ନୁହନ୍ତି । ସନ୍ଧ୍ୟା ସୁଦ୍ଧା ସଂଗୃହୀତ ପ୍ରଣାମିକୁ ଦଶ'ଣା-ଛ'ଣା ହିସାବରେ ବଣ୍ଟାଯିବାର ପଣ୍ଡାଙ୍କର ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରିଦେଇ ଗୋଟିଏ ଗପ କହିଥିଲେ । ଗପର ଚରିତ୍ର ହେଉଛନ୍ତି ପାଲାର ଦୁଇଟି ପାତ୍ର । ଗାୟକ ଆଉ ପାଳିଆ । ତାଙ୍କ ଭିତରେ ପାରିଶ୍ରମିକର ହାର ଥାଏ – ସେଇ ଦଶ'ଣା ଆଉ ଛ'ଣା । ପାଳିଆ ବିଚରା ଏଥିରେ କ୍ଷୁବ୍ଧ । ମାତ୍ର ପ୍ରତିବାଦ କରିବାର ଉପାୟ ନାହିଁ । ସେ ସୁଯୋଗ ଉଣ୍ଡୁଥାଏ । ଦିନେ ସେ ସୁଯୋଗ ଆସିଗଲା । ଚଅଁର ହଲେଇ ଭ୍ରୂଭଙ୍ଗୀ କରି ନାଚିକୁଦି ଗାହାଣ ମହାଶୟ ଲଙ୍କା ବିଜୟ ପାଲା ବର୍ଣ୍ଣନା କରୁଛନ୍ତି । ମଲା ଯା... ଲଙ୍କାପୋଡ଼ିର ନାୟକର ନାଁ ଯେ ତଣ୍ଟିରେ ଅଛି, ଜିଭ ଆଗକୁ ଆସୁନାହିଁ । ସେ ମନେ ପକାଉଛନ୍ତି, ଆଉ ଆ'... ଆ' ଉଁ...ଉଁ କରି ସମୟ ନେଉଛନ୍ତି । ମୁହଁରେ ବିନ୍ଦୁ ବିନ୍ଦୁ ଝାଳ ।

ମହା ପାଚ୍ଚ୍ଖା ପାଳିଆ ମହାଶୟ ଗାହାଣଙ୍କର ଅସୁବିଧା ବୁଝିଗଲେଣି । ବାପଧନ ଏତେ ଦିନେ ଫାନ୍ଦରେ ପଡ଼ିଛନ୍ତି । ଭଗବାନ୍ ବଡ଼ ଲୋକ ।

ଗାହାଣ ପାଳିଆଙ୍କର ମନସ୍ତତ୍ତ୍ୱ ବୁଝନ୍ତି । କ'ଣ ଆଉ କରିବେ ? ତାଙ୍କର ଯେ ମୁଣ୍ଡ ଉପରେ ସଂକ୍ରାନ୍ତି । ରହିରହିକା ତାନ ଛାଡ଼ିଲେ.... ଆରେ ହୋ ପାଳିଆଭାଇ ! ବିନୀତ ପାଳିଆଙ୍କର ନମ୍ର ଉତ୍ତର – ହଁ ଭାଇ...

– ଆରେ ଆରେ ଲଙ୍କା କେ ଯେ ପୁଡ଼ିୟା ଦିଲ ତା'ର ନାମ କି ? ଇ... ଇ... ଇ...

– ଦ'ଶାନା ଛ' ଆନା ଭାଗ୍ ଆମି ବଲ୍‌ବ କି... ଇ... ଇ..., ପାଳିଆଙ୍କର ସୁଲଳିତ ଉତ୍ତର । ଭାବିବାକୁ ସମୟ ନାହିଁ । ଆସର୍ ଉଦ୍‌ଗ୍ରୀବ ହୋଇ ଗାହାଣଙ୍କ ଆଡ଼କୁ ଅନାଇ ରହିଛି । ମାଟିରେ ମିଶିଯିବ ଏତେଦିନର ପ୍ରତିଷ୍ଠା ଆଉ ସମ୍ମାନ । ତୁଣ୍ଡରୁ ବାହାରି ଆସିଲା – 'ଆଜ୍ ଥେକେ ଭାଗ୍ ହବେ ସମାନ୍ ସମାନ୍ ।' ପାଳିଆ ଏତେ ଦିନଯାଏ ଏଇ ସ୍ୱୀକୃତି ଟିକକ ପାଇଁ ସତୃଷ୍ଣ ହୋଇ ଅପେକ୍ଷା କରୁଥିଲେ । ସେତକ ମିଳିଗଲା ପରେ ସେ ତତ୍‌କ୍ଷଣାତ୍ ଉତ୍ତର ଦେଲେ – ଲଙ୍କାକେ ପୁଡ଼ିୟା ଦିଲ ବୀର ହନୁମାନ୍..." ଝାଞ୍ଜର ଝାଇଁ ଝାଇଁ ଆଉ ଖୋଳର ଗୁମ୍ ଗୁମ୍ ଶବ୍ଦ ଭିତରେ ଗାହାଣଙ୍କର ଦୀର୍ଘଶ୍ୱାସ, ଆଉ ପାଳିଆଙ୍କର ଉଲ୍ଲାସ ମିଳିମିଶି ଏକାକାର ହୋଇଯାଇଥିଲା ।

କାହାଣୀ ଶେଷ କରି ସେଦିନ ଠୋ ଠୋ ହସି ଦଳେଇ କହିଥିଲେ – ପାଣିରେ ଘର କରି କୁମ୍ଭୀର ସାଙ୍ଗରେ ବିବାଦ କରିବାକୁ ବଡ଼ବଡ଼ିଆମାନେ ମନା କରିଛନ୍ତି । ତମେ ବିଲ୍ ତିଆରି କରିବ । ଟେଜ୍ରେରୀରୁ ଟଙ୍କା ଉଠେଇବି ମୁଁ । କୋଉଠି କ'ଣ ଓଲମ୍ ବିଲମ୍ ହେଲେ, ମୁଣ୍ଡ ଗଡ଼ିବ ମୋର । ନାଃ –ଭାଇ, ଅସନ୍ତୁଷ୍ଟ ପାଳିଆ ନେଇ ମୁଁ କାରବାର କରେ ନାହିଁ । ମୋର ମୂଳରୁ ସେଇ ସମାନ୍ – ସମାନ୍ ।

ସେଇ ବ୍ୟବସ୍ଥା ଚାଲିଥିଲା । ପଣ୍ଡା ଆଉ ଦଳେଇ ପରସ୍ପର ପ୍ରତି କୃତଜ୍ଞ ଥିଲେ । ଦଳେଇ ସନ୍ତୁଷ୍ଟ – ଉଡ଼ନ୍ତା ଖଇ ଗୋବିନ୍ଦାୟ ନମଃ କରି ସେ ନିଜର ସର୍ଭିସ୍ ବହିକୁ ନିଷ୍କଳଙ୍କ କରି ରଖୁଛନ୍ତି । ପଣ୍ଡା ଉଲ୍ଲସିତ । ବିନା ପରିଶ୍ରମରେ କିଛି ଅଧିକ ଆୟ ହେଉଛି । ସ୍ୱାର୍ଥର ଦୁର୍ବଳ ଭିତ୍ତି ଉପରେ ପ୍ରତିଷ୍ଠିତ ଏହି ସମ୍ପର୍କ ଯେ କେତେବେଳେ ମାନବିକତାର ଏକ ସୁଦୃଶ୍ୟ ସେତୁରେ ପ୍ରସ୍ତୁତ ହୋଇଯାଇଥିଲା, ଏ କଥା ଉଭୟ ପରିବାରର କୌଣସି ସଦସ୍ୟଙ୍କୁ ଗୋଚର ହୋଇ ନଥିଲା ।

ତେବେ ଗୋଟିଏ ସମୟରେ ଦେଖାଗଲା ଯେ, ଜଣେ ନ ହେଲେ ଆଉ ଜଣକର ଜୀବନ ଠିକ୍ ଠାକ୍ ଚାଲୁନାହିଁ । ଏ ପର୍ଯ୍ୟନ୍ତ ସବୁ ସୁନ୍ଦର ଛନ୍ଦରେ ଚାଲିଥିଲା । ହଠାତ୍ ଦିନେ ସେହି ଅଘଟଣଟି ଘଟିଗଲା । ସବୁଦିନ ପରି ପଣ୍ଡା ସେଦିନ ମଧ୍ୟ ସାଇଟ୍ ଉପରକୁ ଯାଇଥିଲେ । ମହାନଦୀର ଛାତି ଉପରେ ଧୀରେ ଧୀରେ ଯେଉଁ ବିଶାଳ ବ୍ୟାରେଜ୍ ମୁଣ୍ଡଟେକି ଉଠୁଛି, ତାହାର ଅଗ୍ରଗତି ତନଖି ଦେଖିବା ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟ ।

ମନ ତାଙ୍କର ବିଶେଷ ଭଲ ନ ଥିଲା । ଗଲା ପନ୍ଦର ଦିନ ହେବ ଘରେ ପଲେ କୁଣିଆ ପଡ଼ିଛନ୍ତି । ଲଞ୍ଚ ବୁଲା, ତୀର୍ଥସ୍ଥାନ ଦର୍ଶନ, ମହାନଦୀର ତଟକା ମାଛ ଭକ୍ଷଣ, ପ୍ରମୋଦ ଭ୍ରମଣ ସବୁ ସରିଲାଣି । ତଥାପି କୁଣିଆମାନେ ବାହୁଡ଼ା ବିଜେ କରିବାର ନାମ ଧରୁନାହାନ୍ତି ।

ପଣ୍ଡୋଉଣୀଙ୍କର ରାବଣ ଗୋଷ୍ଠୀ । ସବୁବେଳେ କେହି ନା କେହି ବିଧୁର ଆତ୍ମୀୟ ଝିଅକୁ ଦେଖିବାକୁ ଆସି ପହଞ୍ଚିଯାଆନ୍ତି । ଆସିଲ, ଦେଖିଲ, ଏଥର ଯାଅନା, ବାବା, ନାଃ – ତା' କରିବେ ନାହିଁ । ଆସିବେ ନିଜ ଇଚ୍ଛାରେ । ଯିବେ ମଧ ସେମିତି ନିଜ ମର୍‌ଜିରେ । ହ୍ୟାପ୍ – ମାଇକିନିଆଟା ବି ସେମିତି । ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ପେୟ ସବୁ ଷୋଡ଼ଶୋପଚାରରେ ସଜାଇ ଦେବାକୁ ସଦା ପ୍ରସ୍ତୁତ । ଦିହକୁ ତ ଲାଗୁ ନାହିଁ । ଘର ଭିତର ଜଗିବାକୁ ଅଛି ବିଚରା ଖଲାସି ଦୁଃଖେଇ ସାହୁ । ବାହାର ଜଗିବାକୁ ସେ ନିଜେ – ଖାଲି ପାଟିରୁ ହୁକୁମଜାରି କଲେ ହେଲା ।

ଆଜି ସେମିତି ଆଦେଶ ହୋଇଛି । ମଣ୍ଟୁ ଭାଇ ମହାନଦୀର ଇଲିଶୀ ଖାଇଲେ ନାହିଁ । ଫେରିଲା ବେଳେ ଯେମିତି ହେଲେ ବଡ଼ ଦେଖି, ତେଲିଆ ଦେଖି ଦୁଇ ଚାରିଟା । ମାଛମାନେ ଯେମିତି ପଣ୍ଡୋଉଣୀଙ୍କ ଇଲାକାର ପ୍ରଜା । ତାଙ୍କ ଭୋଗରେ ଲାଗିବାକୁ ଅନେଇ ବସିଛନ୍ତି !

ପଣ୍ଡା ଚାରିଆଡ଼େ ଶିକାର ଅନ୍ୱେଷଣରେ ଆଖି ପକାଉଥିଲେ । ସାଇଟ୍ ଉପରେ ସବୁବେଳେ ଦୁଇ ଚାରିଜଣ ଉପସ୍ଥିତ ଥାଆନ୍ତି, ସାର୍‌ଙ୍କ ସେବାରେ ଲାଗି, ନିଜ ଜୀବନକୁ ଧନ୍ୟ କରିବାକୁ । ଦୁର୍ଭାଗ୍ୟ, ମାଛ ତ ମିଳିଗଲା – ମାତ୍ର ଶିକାର ମିଳିଲା ନାହିଁ । ମାଛ ପାଇଁ କଡ଼କଡ଼ିଆ ତିନି ଖଣ୍ଡ ନୋଟ୍ ତାଙ୍କୁ ନିଜ ପକେଟରୁ ଗଣିଦେବାକୁ ହେଲା ।

ଫେରିଲାବେଳେ ପଣ୍ଡା ଭାବି ଭାବି ଆସୁଥାଆନ୍ତି । ମାଛ ମିଳିଛି ତିନୋଟି । ଭାଗ ଛିଡୁନାହିଁ । ଭାଗ ସମାନ ସମାନ ହେବା କଥା । ନ ହେଲେ ଦଳେଇ ଖରାପ ଭାବିପାରନ୍ତି । କୁଣିଆ ପଲଙ୍କୁ ସମ୍ଭାଳିବାକୁ ଏଇ ତିନିଟା ମଧ ଯଥେଷ୍ଟ ହେବ ବୋଲି ସେ ଭାବୁନାହାନ୍ତି । ଦଳେଇଙ୍କୁ ଗୋଟାଏ ଦିଆଯାଉ । ଆଉ ପୁଣି ମାଛ ତ କିଣାଯାଇଛି ତାଙ୍କ ନିଜ ପଇସାରେ । ଦରକାର ପଡ଼ିଲେ ସେ ଦଳେଇଙ୍କୁ ସେଇକଥା ଜଣେଇଦେବେ । ଏଇଥିପାଇଁ ଘରର ଶାନ୍ତିକୁ ନଷ୍ଟ କରିପାରିବେ ନାହିଁ ।

•

ଗୋଟିଏ ମାଛ ଦୁଃଖା ହାତରେ ଦଳେଇଙ୍କ ରୋଷେଇ ଘରକୁ ଚାଲିଗଲା । ଦଳେଇଆଣୀଙ୍କର ସମ୍ବାଦ ସଂଗ୍ରହର ନେଟ୍‌ୱାର୍କ ଖୁବ୍ ଭଲ । ନିଜ ଘରେ ବସି ସେ କଲୋନିର କାହା ଘରେ କ'ଣ ହେଉଛି, ସବୁର ଟିକିନିଖି ବିବରଣୀ ସଂଗ୍ରହ କରିନିଅନ୍ତି । ମାଛ ବଣ୍ଟନର ଅସମପ୍ରକ୍ରିୟା ଖୁବ୍ ଶୀଘ୍ର ତାଙ୍କ ଦ୍ୱାରା ବାହିତ ହୋଇ ଦଳେଇଙ୍କ କାନରେ ଠକ୍ କରି ବାଜିଗଲା । କହିବା ବାହୁଲ୍ୟ ଯେ, ସମ୍ବାଦରେ ଦଳେଇଆଣୀଙ୍କର ନିଜସ୍ୱ ଟିପ୍‌ପଣୀ ଥିଲା ପ୍ରାୟ ଷାଠିଏ ଭାଗ ।

ଦଳେଇଙ୍କର ମନ ପିତା ହୋଇଗଲା – ଶଳା ଟ୍ରେଟର । ଚୁକ୍ତି ଭଙ୍ଗ କରିବା ପୂର୍ବରୁ ଥରେ ଚିନ୍ତା କଲା ନାହିଁ, କେଡ଼େ ବଡ଼ ସ୍ୱାର୍ଥକୁ ସେ ତା' ପାଇଁ ବଳି ଦେଇଛନ୍ତି । ଇଲାକାରୁ ଶାଗ, ମାଛ ଯାହା କିଛି ସଂଗ୍ରହ ହେଉଛି, ସନ୍ଧ୍ୟା ସମୟରେ ସେସବୁ ସମାନ ଦୁଇଭାଗରେ ବଣ୍ଟା ହେଉଛି ନା ନାହିଁ ? ଅଥଚ ଏଇ ଗୋଟାଏ ସାମାନ୍ୟ ମାଛ !... ଦଳେଇ ଘନ ଘନ ଦୀର୍ଘଶ୍ୱାସ ଛାଡ଼ିବାକୁ ଲାଗିଲେ । ନାଃ – ବିଶ୍ୱାସଘାତକକୁ ଗୋଟାଏ ଶିକ୍ଷା ଦେବାକୁ ହେବ... ।

ଅଫିସ୍‌ରେ ଦଳେଇ ଗମ୍ଭୀର ହୋଇ କହିଲେ, "ଏ କ'ଣ ପଣ୍ଡା, ଓଭରସିୟର୍‌ଙ୍କର ଦୁଇଟା, ଏସ୍.ଡ଼ି.ଓଙ୍କର ଗୋଟାଏ ?" ପଣ୍ଡା ବୁଝିପାରିଲେ, ଖବରଟା ଏ ଭିତରେ ଜଣାଜଣି ହୋଇଯାଇଛି । ଆଦୌ ହେବ ନାହିଁ, ଏଭଳି ଆଶା ସେ କରି ନଥିଲେ । ତେବେ ଅଫିସ୍‌ରେ ପାଦ ନ ଥୋଉଣୁ, ଯେ ତାଙ୍କୁ ଜେରାର ସମ୍ମୁଖୀନ ହେବାକୁ ପଡ଼ିବ, ଏତେଟା ସେ ଭାବି ନ ଥିଲେ ।

ପଣ୍ଡା ସତ୍ୟ–ନିବେଦନ କଲେ । ଘରେ ବହୁତ କୁଣିଆ । ତେଣୁ ନିଜ ପଇସାରେ କ୍ରୀତ ମାଛରୁ ଦୁଇଟା ତାଙ୍କୁ ରଖିବାକୁ ପଡ଼ିଛି । ଦଳେଇଭାଇ ଯେମିତି କିଛି ନ ଭାବନ୍ତି ।

ଦଳେଇ କିନ୍ତୁ ଭାବିଲେ । କହିଲେ – 'ଏଠି ମାଛ କଥା ପଡ଼ିନାହିଁ, ନୀତିର କଥା ପଡ଼ିଚି । ଆମର ଗୋଟାଏ ଚୁକ୍ତି ହୋଇଥିଲା ଆଜି ତମେ ତାକୁ ଭାଙ୍ଗିଲ । ବିଶ୍ୱାସ ଚାଲିଗଲା କି ନାଇଁ ?'

ପଣ୍ଡାଙ୍କର ଉତ୍ତର ଦେବାକୁ ଥିଲା । ଚୁକ୍ତିର ପରିସର ଯେ, ସ୍ୱୋପାର୍ଜନ ପର୍ଯ୍ୟନ୍ତ ବିସ୍ତୃତ ନୁହେଁ, ଏହା ସେ ତାଙ୍କୁ ବୁଝାଇ ପାରିଥାଆନ୍ତେ, ମାତ୍ର ସେ ନିରବ ରହିଲେ ।

ଦଳେଇ ଗମ୍ଭୀର ହୋଇଗଲେ ।

ସମ୍ପର୍କରେ ତିକ୍ତତା ଆସିଗଲା ।

ଏହା ପରର ଘଟଣା ସବୁ ଦ୍ରୁତଗତିରେ ଘଟିବାକୁ ଲାଗିଲା । ଦୁଇଦିନ ଛୁଟି ନେଇ ଦୁଃଖା ନିଜର ପରିବାରକୁ ଭେଟିବାକୁ ଗାଁକୁ ଯାଇଥିଲା । ଫେରିଲା ବେଳେ ଦେଖିଲା ଝରିପଡ଼ା ହାଟରେ ପରିବା ବଡ଼ ଶସ୍ତା ହୋଇଛି । ଦୁଃଖାର ବ୍ୟବସାୟୀ ବୁଦ୍ଧି ବଡ଼ ପ୍ରଖର । ପାଖରେ ଯେତେ ପଇସା ଥିଲା ସବୁ ଲଗେଇଦେଲା । ବଡ଼ ବଡ଼ ବସ୍ତାରେ ପରିବା ସବୁ ଭର୍ତ୍ତି କରି ଟ୍ରକ୍‌ରେ ଲଦି କଲୋନିରେ ପହଞ୍ଚିଗଲା । ଘଣ୍ଟା ଦୁଇ/ତିନି ବସିପଡ଼ିଲେ ଟଙ୍କା ତିନିଶ ପକେଟ୍‌କୁ ଚାଲିଆସିବ ।

ଦୁର୍ଭାଗ୍ୟ, ଦଳେଇବାବୁ ଜିପ୍ ଚଢ଼ି ଘରକୁ ଫେରୁଥିଲେ । ଛକ ମୁଣ୍ଡରେ ଦୁଃଖା ପରିବା ଦୋକାନ ମେଲାଇ କୁହାଟ ଛାଡୁଚି.... ହାଣ୍ଡିମିଠା କଖାରୁ, ନହୁଣିଆ ବାଇଗଣ... ଅ... । ଜିପ୍ ବନ୍ଦ ହେଲା.... ଦଳେଇ ଜିପ୍‌ରୁ ଓହ୍ଲାଇ ଦୁଃଖା ଆଡ଼େ ଅନାଇଲେ ।

ଦୁଃଖା ତାଙ୍କୁ ଗୋଟାଏ ସମକୋଣୀ ନମସ୍କାର ଛାଟିଦେଇ କହିଲା – 'ସାରେ, ମୋତେ ଖାଲି କହିଯାଆନ୍ତୁ, କ'ଣ କ'ଣ ଯିବ । ମୁଁ ଗଲାବେଳେ ଘରେ ପହଞ୍ଚେଇଦେବି ।'

ଦଳେଇ ତା' ଆଡ଼କୁ ଅନାଇଲେ । କହିଲେ – 'ତୁ ଏବେ ପରିବା ଦୋକାନ ଯୋଡ଼ିଲୁଣି ପରା ! ସରକାରଙ୍କଠୁ ଦରମା ପାଇବୁ, ଏଣେ ପରିବା ଦୋକାନରୁ ବି ଲାଭ... ଖୁବ୍ ଭଲ.... ତୋରି ତ ଜାଣି କଛେପୁଅ ବା–ଆ–ର...ରେ । ହଉ – ହଉ– କର–କର !

ଦୁଃଖାର ବିମୂଢ଼ ଦୃଷ୍ଟିକୁ ଆଞ୍ଜୁଳାଏ ନାଲି ଧୂଳିରେ ଅନ୍ଧ କରିଦେଇ ଜିପ୍ ଚାଲିଗଲା ।

ମୁହଁ ମୋଡ଼ିଦେଇ ଦୁଃଖା ତା' ନିଜ ଜାଗାକୁ ଚାଲିଗଲା ।

ପ୍ରତ୍ୟେକ ମାସ ଭଳି ସେଥର ମଧ୍ୟ ପଣ୍ଡା ପେବିଲ୍ ପ୍ରସ୍ତୁତ କରି ଦଳେଇଙ୍କ ଦସ୍ତଖତ ପାଇଁ ପଠାଇଦେଲେ । ଖୁବ୍ ଅଳ୍ପ ସମୟ ଭିତରେ ବିଲ୍ ଫେରିଆସିଲା । ସାଙ୍ଗରେ ଦଳେଇଙ୍କ ସ୍ୱହସ୍ତ ଲିଖିତ ନୋଟ୍ । ସରକାରୀ ସେବା ନିୟମ ଉଲ୍ଲଘଂନ କରିଥିବାରୁ ଖଲାସି ଦୁଃଖା ସାହୁର ପନ୍ଦର ଦିନର ଦରମା କଟାଯାଇ ନୂଆ ବିଲ୍ ପ୍ରସ୍ତୁତ କରାଯାଉ ।

ଯୁଦ୍ଧ ଆରମ୍ଭ ହୋଇଯାଇଥିଲା ।

ପଣ୍ଡା ବହୁବାର ଅନୁରୋଧ କଲେ, ''ଗରିବ ଲୋକ । ତା' ଦରମା କାଟିଲେ ସେ ଚଳିବ କେମିତି ?''

ଦଳେଇଙ୍କର ସବୁଥର ସେଇ ଗୋଟିଏ ଉତ୍ତର, ''ଦୁଃଖୀ ଡିସିପ୍ଲିନ୍ ଭାଙ୍ଗିଚି, ସରକାରୀ କାମ କରିନାହିଁ । ଦରମା କାଟ ବିରୋଧରେ ସେ ଉପରକୁ ଲେଖିପାରେ ।''

ମାସେ କାଳ ଆବେଦନ ନିବେଦନ ଭିତରେ ପଣ୍ଡା ନିଜ ଧୈର୍ଯ୍ୟ ଆଉ ସାହସର ଶେଷ ବିନ୍ଦୁରେ ପହଞ୍ଚି ଯାଇଥିଲେ । କ୍ରୋଧରେ ଥରି ଥରି କହିଲେ – ଦିସ୍ ଇଜ୍ ଟୁ ମିଚ୍ ।'

ବାରୁଦ ଭଳି ଫାଟି ପଡ଼ିଲେ ଦଳେଇ । ଖପ୍ କରି ଟେବୁଲ୍ ଉପରକୁ ଡେଇଁପଡ଼ି ଊର୍ଦ୍ଧ ବାହୁ ହୋଇ ଖେମଟା ନାଚ ନାଚିବାକୁ ଲାଗିଲେ । ପାଟିରୁ ଝରି ପଡୁଥାଏ...'ହ୍ୱାଟ୍, ମୁଁ ମିଚ୍ ? ଠିକ୍ ଅଛି । ଆଜିଠୁ ସରିଗଲା – ସବୁ ସମ୍ପର୍କ ଛିଡ଼ିଗଲା । ଆଜିଠୁ ତିନିଦିନ ଭିତରେ ମୁଁ ଯେବେ ତମକୁ ବଦଳି ନ କରିଚି, ତେବେ ମୁଁ ଖଣ୍ଡାୟତ ସନ୍ତାନ ନୁହେଁ... ।'

ଦଳେଇ ହାତ ହଲାଉ ହଲାଉ ଟେବୁଲ୍ ଉପରୁ ଡେଇଁ ପଡ଼ିଲେ । ସେଇଠୁ' କୁହାଟ ଛାଡ଼ି ଡାକିଲେ, 'ହୁରୁଦା – ଆବେ ହୃଦାନନ୍ଦ – ଜିପ୍ କାଢ଼, ସାଙ୍ଗେ ସାଙ୍ଗେ ଭୁବନେଶ୍ୱର ଯିବାକୁ ହେବ ।''

ଜିପ୍ ଛୁଟିଲା ଭୁବନେଶ୍ୱର, ମନ୍ତ୍ରୀ–ନିବାସ । ବାଟରେ ଦଳେଇ ଷ୍ଟ୍ରାଟେଜି ଠିକଣା କଲେ । ମନ୍ତ୍ରୀଟା ହ୍ୟାପ ବାହ୍ମଣ । ତାଙ୍କ କଥା ଶୁଣି ନ ପାରେ । ସତୁରି ହଜାର ଟଙ୍କା ଗଣି ନେଇ ତାଙ୍କୁ ଏଇ ପ୍ରୋଜେକ୍ଟରେ ପୋଷ୍ଟିଂ କରିଚି । ନାଃ – ତା' ପାଖକୁ ଯିବେ ନାହିଁ । ତା'ଠୁ ବରଂ ଉପମନ୍ତ୍ରୀଟା ଭଲ । ଜାତିପୁଅ, ଟୁର ଫୁର୍‌ରେ ବାହାରିଲେ ଯାହା ପାଇଲେ ସେଥିରେ ସନ୍ତୁଷ୍ଟ । ତାକୁ କୌଣସିମତେ ମଣେଇବାକୁ ପଡ଼ିବ ।

ଦଳେଇ ମନ୍ତ୍ରୀ ଗୋଡ଼ତଳେ ଲମ୍ବହୋଇ ପଡ଼ିଗଲେ । ଜାତିର ଇଜ୍ଜତ ଯେତେବେଳେ ଯିବାକୁ ବସିଚି, ସେତେବେଳେ ମନ୍ତ୍ରୀ – ମହୋଦୟ ଜାତିପୁଅ ହୋଇ ଯଦି ଏହାର ପ୍ରତିକାର ନ କରନ୍ତି, ତେବେ ସେ ଆଉ କାହା ପାଖକୁ ଯିବେ ?

ଜାତି କଥା ଶୁଣି ମନ୍ତ୍ରୀ ଚୁପ୍ ହୋଇ ବସିଲେ । ଧୈର୍ଯ୍ୟ ଧରି ସବୁ କଥା ଶୁଣିଲେ । ତା' ପରେ କହିଲେ, ''କିଛି ଦିନ ହେବ, ମଦନପୁର – ରାମପୁରର ଏସ୍. ଡି. ଓ. ଜଣେ ପୁରୁଖା ଓଭର୍‌ସିୟରଙ୍କୁ ପଠାଇବା ପାଇଁ ଲେଖାଲେଖି କରୁଛନ୍ତି ।

କନଷ୍ଟ୍ରକସନ୍ କାମ ଅଟକି ଯାଇଥିବାରୁ ଲୋକେ ବି ଉତ୍ୟକ୍ତ ହୋଇଅଛନ୍ତି । ଆପଣ ବରଂ ଚିଫ୍ ଇଞ୍ଜିନିୟର୍‌ଙ୍କୁ ଦେଖା କରନ୍ତୁ । ମୁଁ ଫୋନ୍ କରି ଦେଉଛି ।''

ଚିଫ୍‌ଇଞ୍ଜିନିୟର୍ ସବୁକଥା ଶୁଣିଲେ । ଜଣେ ଆଉ ଜଣକ ନାଁ'ରେ ଏଭଳି ଚୁଗୁଲି କରିବା – ଏ କଥା ତାଙ୍କ ପାଇଁ ନୂଆ ନ ଥିଲା । ତେବେ ସେ ଆରପଟର କଥା ନ ଶୁଣି କିଛି ନିଷ୍ପତ୍ତି ନେବେ ନାହିଁ । ପାଟିରେ ଜଣାଇଲେ, ଦେଖିବା ।

ଦଳେଇ ଆଉ କ'ଣ କରିବେ ? ଉଠ ଉଠ ହେଉଛନ୍ତି, ଏତିକିବେଳେ ଷ୍ଟେନୋ କହିଲେ, ''ସାର୍ ଡେପୁଟି ମିନିଷ୍ଟରଙ୍କ ଫୋନ୍ ।'' ଦଳେଇ ବସିପଡ଼ିଲେ । ଔଷଧ ଠିକ୍ କାଟୁ କରିଛି ।

ସନ୍ଧ୍ୟା ସୁଦ୍ଧା ହାତରେ ଅର୍ଡ଼ର ଧରି ଦଳେଇ ବିଜୟ ଗର୍ବରେ ପ୍ରୋଜେକ୍ଟକୁ ଫେରିଗଲେ ।

ବିଜୁଳି ବେଗରେ କଥାଟା କଲୋନୀ ସାରା ପ୍ରଚାରିତ ହୋଇଗଲା ।

ରାତିସାରା ପଣ୍ଡାଙ୍କୁ ନିଦ ହେଲା ନାହିଁ । ଦେଖ ଏ ବଦ୍‌ମାସ ଲୋକଟାକୁ ! କେଡ଼େ ଛୋଟକଥାଟା ପାଇଁ କ'ଣ କ'ଣ କରି ବୁଲୁଚି ! ଏଇଥିପାଇଁ ଏତେ ବର୍ଷ ହେଲା ସମ୍ପର୍କ ବଢ଼ାଇଥିଲା । କହି ବୁଲୁଥିଲା ଯେ, ଦଳେଇ ତା'ର ନିଜ ଭାଇ ! ଏମିତି ବେଳେ ଜଣାଯାଏ, କିଏ ପର ଆଉ କିଏ ଆପଣା । ଚାକିରି କ୍ଷେତ୍ରରେ କେହି କାହାରି ବନ୍ଧୁ ହୁଅନ୍ତି ନାହିଁ । ସ୍ୱାର୍ଥର ସୀମା ହିଁ ହେଉଛି ବନ୍ଧୁତାର ସୀମା । ରେଳଡ଼ବାରେ କାହୁଁ କୁଆଡୁ ଆସି ଯାତ୍ରୀମାନେ ପାଖାପାଖି ବସନ୍ତି । ଆଳାପ ଯୋଡ଼ନ୍ତି । ନିଜ ଗନ୍ତବ୍ୟ ସ୍ଥାନରେ ଓହ୍ଲାଇ ଯାଆନ୍ତି । ଚିରଦିନ ପାଇଁ ହଜିଯାଆନ୍ତି । ଚାକିରିରେ ବନ୍ଧୁତା ବି ରେଳଡବାର ବନ୍ଧୁତା । ଠିକ୍ ଅଛି । ଦଳେଇ ଛୁଞ୍ଚିର ସାଧ ଜିନିଷକୁ ନେଇ ଶାବଳରେ ଥୋଇଲା । ତାଙ୍କର ବି ମୁରବୀ ଅଛନ୍ତି । ଖୋଦ୍ ମନ୍ତ୍ରୀଙ୍କ ପୁଅ ହେଉଛି ତାଙ୍କ ସହପାଠୀ.... ଜାତିପୁଅ । ସେ ଦଳେଇକୁ ଦେଖିନେବେ । ଖାଲି ରାତିଟା ପାହିଯାଉ ।

ପଣ୍ଡା ଚାଲିଲେ ରାଜଧାନୀ । ସାଙ୍ଗରେ ଦୁଃଖା । ମନ୍ତ୍ରୀଙ୍କ କରୁଣା ଉଦ୍ରେକ କରିବା ପାଇଁ ଆଉ ଏକ ପାସ୍‌ପୋର୍ଟ । ଖଲାସି ଦୁଃଖା ସାମାନ୍ୟ ଖଲାସିଟିଏ, କାମ ଉପରେ କେବେ ନ ଥାଏ । ଯିଏ ଓଭରସିଅର୍ ଆସିଲା, ତାଙ୍କ କ୍ୱାର୍ଟର ସହିତ ସେ ଆଟାଚଡ୍ । ତା'ର ପ୍ରକୃତିକୁ ସେଇ କାମ ବି ବେଶ୍ ଆରେଇଗଲାଣି । ଚାକିରି କାଳରେ ଦୁଃଖା କେତେଟା ମନ୍ତ୍ରୀ ଅମଳ କରିସାରିଲାଣି । ଘରେ ବସି ମନ୍ତ୍ରୀ – ବାପୁଡ଼ାର

ଚାରିତ୍ରିକ ଗତି ଦୁର୍ଗତି ତାକୁ ବେଶ୍ ଜଣା । ସେଇ ମନେପକାଇ ଦେଲା – ସାରେ, ଆମ ମନ୍ତ୍ରୀ ତ – ଦୁଃଖୀର ହାତ ରାସ୍ତାକଡ଼ରେ ରଖାଯାଇଥିବା ଏକ ବିରାଟ ଭାକୁର ମାଛ ଆଡ଼େ ନିର୍ଦ୍ଦେଶ କରୁଥିଲା ।

ଏ ମାଛ ସୁଦୂର ଆନ୍ଧ୍ରର କୌଣସି ପୋଖରୀ ଅନ୍ଧାର କରି ଏଠି ଆସି ପହଞ୍ଚିନାହିଁ । ମନେହେଉଛି, ପାଖରୁ କୋଉଠି ଧରା ହୋଇଛି । ନାଲି ନାଲି ପାଟି ଯେମିତି ପଣ୍ଡାଙ୍କୁ ନିମନ୍ତ୍ରଣ କରୁଛି – ବିଳମ୍ବ କରନାହିଁ । ନ ହେଲେ ମୁଁ ଅନ୍ୟ ହାତ ହୋଇଯିବି  ପାଖରେ ଛ' ସାତ ଲୋକ, ନେବାକୁ ଇଚ୍ଛା – ମାତ୍ର ସାହସ ପାଉନାହିଁ ।

ପଣ୍ଡା ଖପ୍ କରି ମଟର ସାଇକେଲରୁ ଡେଇଁ ପଡ଼ିଲେ । ଗୋଟିଏ ମିନିଟ୍ ଭିତରେ ସୌଦା ପକ୍କା ହୋଇଥିଲା । ଦୁଃଖୀ ହାତରେ ଗୋଟିଏ ବୋଝ ବଢ଼ିଲା ।

ରାତିରେ ନିଜ ଡିନର୍ ଟେବୁଲରେ ଏତେ ବଡ଼ ଭାକୁର ମୁଣ୍ଡ ଦେଖି ମନ୍ତ୍ରୀ ନିଜ ପୁଅ ଆଡ଼କୁ ଅନାଇ ପଚାରିଲେ, ''କିରେ ନଟୁ, ଏଡ଼େ ବଡ଼ ମାଛ କିଏ ଆଣିଲା  ?''

ନଟୁ କହିଲା – ସେଇ ପଣ୍ଡା – ମୋ ସାଙ୍ଗରେ ପଢୁ ନ ଥିଲା ? ଏବେ ପ୍ରୋଜେକ୍ଟରେ ଓଭରସିଅର୍ ଅଛି – ସେଇ ।

ସୁଟ୍‌କରି ମଥା ଦହିକୁ ଶୋଷାଡ଼ି ନେଇ ମନ୍ତ୍ରୀ କହିଲେ – ସେଇ  ? ତା'ର କ'ଣ ମାଛ ପୋଖରୀ ଅଛି  ?

ନଟୁ ଟିକିଏ କାନ କୁଣ୍ଡାଇଲା । କହିଲା – ନାଇଁ ଯେ, ବାଟରେ ଆସୁ ଆସୁ ପାଇଗଲା । ଆପଣଙ୍କ ପାଇଁ ନେଇ ଆସିଲା.... ସେ ବଡ଼ ଅସୁବିଧାରେ ପଡ଼ିଯାଇଚି ବାପା ।

ମନ୍ତ୍ରୀ କହିଲେ – ଅସୁବିଧାଟା କ'ଣ  ? ସେ ଚାଲିଗଲାଣି ନା ଅଛି  ?

ପଣ୍ଡା ଯିବେ କୁଆଡ଼େ  ? କବାଟ କଣରୁ ବାହାରି ଆସି ପାଦଛୁଇଁ ନମସ୍କାର କଲେ । ପିତୃତୁଲ୍ୟ ଲୋକ ।

ମନ୍ତ୍ରୀ ପଚାରିଲେ, 'କିରେ  ?'

ପଣ୍ଡାବାବୁ ନିବେଦନ କଲେ । ଦୁଃଖୀ ପୂର୍ବ ଟ୍ରେନିଂ ମତେ ଆଖିରୁ ଲୁହ ଝରାଇ, ଛାତିର ଲୁଗାକୁ (ଏଇ ଅଂଶଟିକୁ ସେ ଆଦୌ ଖୋଲା ରଖିପାରେ ନାଇଁ) ଆଖିରେ

ମାଡ଼ି, କଣ୍ଠକୁ ବାଷ୍ପପୂର୍ଣ୍ଣ କରି ଚମତ୍କାର ଏକ ନାଟକୀୟ ପରିବେଶ ସୃଷ୍ଟି କରିଦେଲା ।

ମନ୍ତ୍ରୀଙ୍କର ହାତ ଚାଲିବା ପ୍ରାୟ ବନ୍ଦ ହୋଇ ଯାଇଥିଲା ।

ପଣ୍ଡା ଦେଖିଲେ ଏଇ ହେଉଛି ଠିକ୍ ସମୟ । ଲୁହା ଗରମ ଥିଲାବେଳେ ପାହାର ଚଢ଼ାଇବାକୁ ହେବ । ସେ କୋରାମିନ୍ ଚଢ଼ାଇ ଦେଲେ । 'ସାର୍, ବିନା ଦୋଷରେ ଡେପୁଟି ମିନିଷ୍ଟରଙ୍କୁ ଧରି ମୋର ବଦଳି କଳାହାଣ୍ଡି କରାଇଦେଲେ । ସରକାରୀ ଚାକିରି, ମୁଁ କୋଉ ବଦଳିକୁ ଡରିଛି ? ଆସିଲା ବେଳେ ଜିନିଷପତ୍ର ବନ୍ଧାବନ୍ଧି ଆରମ୍ଭ କରିବାକୁ ଘରେ କହି ଆସିଛି । ମତେ ତ ଯାହା କହୁଛନ୍ତି । ସେଥିରେ ଆପଣଙ୍କୁ ଯୋଡ଼ି..... ପଣ୍ଡା ଜାଣିଶୁଣି ଚୁପ୍ ମାରିଗଲେ ।

ନଟୁ ସାହସ ଯୋଗାଇଲା, କହିଲା – କହୁନୁ ।

ପଣ୍ଡା କହିଲେ – ଜିଭ ନୋଉଟୁ ନାହିଁ ସାର । କହିଲେ କୋଉ ମଧୁଆ ରଥ ତତେ ରଖିବ, ଦେଖିବି ! ମୋ କଥା ଛାଡ଼ନ୍ତୁ । ଖୋଦ୍ ମନ୍ତ୍ରୀ ମଧୁସୂଦନ ରଥଙ୍କୁ ଏତେ ବଡ଼ ଅପମାନ ! ଖଣ୍ଡାୟତ ପିଲା – ଚାରିବର୍ଣ୍ଣର ରାଜା, ବ୍ରାହ୍ମଣକୁ ଅପମାନ ଦେବ ? ମୋ ଛାତି ଫାଟିଯାଉଚି ସାର୍ ।

ମନ୍ତ୍ରୀ ସବୁ ଶୁଣୁଥିଲେ । ଅଭିମାନରେ ତାଙ୍କର ନାସାପୁଟ ଫୁଲି ଫୁଲି ଉଠୁଥିଲା । ଆଖି ବିଚର ରଙ୍ଗ ବଦଳାଇବାକୁ ଆରମ୍ଭ କରିଥିଲା । ସେ କହିଲେ – ଘନା ଦଳେଇ ଏଇ କଥା କହିଲା । ବାମନ ହେଇ ଚନ୍ଦ୍ରରେ କଳଙ୍କ ଲେପିବାକୁ ଚେଷ୍ଟା କଲା ? କୁଆଡ଼ିକ୍ୱାର ମୁଣ୍ଡି ଚଷା – ସିଏ ପୁଣି ବ୍ରାହ୍ମଣର ପଇତା ଉପରେ ହାତ ପକାଇଲା ?

ପଣ୍ଡା ତଳକୁ ମୁଣ୍ଡ ପୋତି ଦେଲେ । ତାଙ୍କର ଯାହା କରିବାର କଥା ସିଏ କରିସାରିଛନ୍ତି । ଏଣିକି କେବଳ ଫଳାଫଳକୁ ଅପେକ୍ଷା !

ମନ୍ତ୍ରୀ ଭର୍ତ୍ସନାଭରା ଆଖିରେ ପୁଅ ଆଡ଼କୁ ଅନାଇ କହିଲେ – ତୁ ଏ ସବୁ ଶୁଣି ବି ଚୁପ୍ ହୋଇ ବସିଚୁ ଟି ? ଆରେ ଏଇ ରାଜଧାନୀରେ ମନ୍ତ୍ରୀଙ୍କ ପୁଅ – ପୁତୁରା ଝିଅ–ଜୋଇଁ ମନ୍ତ୍ରୀଙ୍କ ନାଁ କହି ଲକ୍ଷ ଲକ୍ଷ ଟଙ୍କା ଲୁଟି ନେଉଛନ୍ତି । ମନ୍ତ୍ରୀଙ୍କ ଘର ମଣିଷ ରୋଷେଇଶାଳ ଛାଡ଼ି ଚିଫ୍ ମିନିଷ୍ଟର ହେଉଛି । ଆଉ ତୁ ! ଛାର ଗୋଟାଏ ସାଙ୍ଗକୁ ସାହାଯ୍ୟ କରିବାକୁ ତାକୁ ଆଣି ମୋ ପାଖରେ ଠିଆ କରାଉଚୁ ! ଛି... ଛି...

ନଟୁବାବୁ କଣେଇ କରି ପଣ୍ଡାଙ୍କ ଆଡ଼କୁ ଅନାଇଲେ । ପଥରମୂର୍ତ୍ତି ଭଳି ସେ ସେମିତି ଠିଆ ହୋଇଛନ୍ତି ।

ମନ୍ତ୍ରୀ ଗୋଟାଏ ବଡ଼ ଦୀର୍ଘଶ୍ୱାସ ପକାଇଲେ । ତା' ପରେ କହିଲେ – 'ଫୋନ୍ କର ପ୍ରାଇଭେଟ୍ ସେକ୍ରେଟାରୀକୁ । ଅଧଘଣ୍ଟା ଭିତରେ ସେ ଆସି ଡିକ୍ଟେସନ୍ ନେଉ । ଆଜି ରାତିରେ ଅର୍ଡ଼ର ବାହାରିବ । ପଣ୍ଡା ନୁହଁ, ଘନା ଦଳେଇ ଯିବ ମଦନପୁର – ରାମପୁର । ସେଠି ଟେଣ୍ଟରେ ରହି ସର୍ଭେ କରିବ । ଭାରି ଅର୍ଜେଣ୍ଟ କାମ – ଏଥିର ଅନ୍ୟଥା ହେବ ନାହିଁ ।

ପଣ୍ଡା ମୁଣ୍ଡ ଟେକି କରୁଣ କଣ୍ଠରେ କହିଲେ– ସାର୍, ଡେପୁଟି ମିନିଷ୍ଟର ଗୋଟାଏ ଅର୍ଡ଼ର ଦେଇଛନ୍ତି ।

ମନ୍ତ୍ରୀ କହିଲେ – ଆରେ ଛ୍ୟା ଛ୍ୟା – କେଳା ମହାପାତ୍ର ମନ୍ତ୍ରୀ । ତା'ର ପୁଣି ଗୋଟାଏ ଅର୍ଡ଼ର ! ଅର୍ଡ଼ର ଯେ ବାହାରିବ ବର୍ତ୍ତମାନ । ଇଏ ହେଲା ଖୋଦ୍ ମଧୁସୂଦନ ରଥଙ୍କର ବ୍ରହ୍ମାସ୍ତ୍ର । ଏଥିରେ ଆଉ ମେଣ୍ଟଣ ହେବାର ନାହିଁରେ ବାବା ।

ନଟୁ ଏହା ଭିତରେ ପ୍ରାଇଭେଟ୍ ସେକ୍ରେଟାରୀକୁ ଫୋନ୍ କରିବାକୁ ଚାଲିଯାଇଥିଲା । ଫେରିଆସି ଜଣାଇଲା – ରବିବାବୁ ଆସୁଛନ୍ତି ।

ଏଡ଼େ ବଡ଼ ଭାକୁର ମୁଣ୍ଡର ଚଉଠେ ବି ସରି ନାହିଁ । ମନ୍ତ୍ରୀ ହାତ ଚଳାଉ ଚଳାଉ କହିଲେ – ଏମାନେ ମଣିଷକୁ ଶାନ୍ତିରେ ମୁଠାଏ ଖାଇବାକୁ ବି ଦେବେ ନାହିଁ ।

ପଣ୍ଡା ଏବେ ଅପେକ୍ଷା କରିବେ । ନମ୍ବର ପକାଇ ହାତେ ହାତେ ଅର୍ଡ଼ର ଧରି ତାଙ୍କୁ ରାତି ରାତି ହେଡ୍‌କ୍ୱାର୍ଟରକୁ ଫେରିବାକୁ ପଡ଼ିବ । ସାଙ୍ଗରେ ଦୁଃଖା ଅଛି । ଯେତେ ରାତି ହେଲେ ବି ଚିନ୍ତା ନାହିଁ । କଲୋନିରେ ରାତାରାତି ଖବରଟାକୁ ପ୍ରଚାର କରାଇ ଦେବାକୁ ପଡ଼ିବ ।

ବିଚରା ଦଳେଇ ! ନିଶ୍ଚିନ୍ତରେ ବିଛଣାରେ ଶୋଇ କେତେ ସୁଖ ସ୍ୱପ୍ନ ଦେଖୁଥିବ । ଶୁଣିଲେ କ'ଣ କରିବ ? ସବୁ ସ୍ୱପ୍ନତ ଏମିତି ଭାଙ୍ଗିଯାଏ ! ବେଳେବେଳେ ନିଜେ ପଠାଇଥିବା ଅସ୍ତ୍ର ଯେ ବୁମେରାଂ ହୋଇ ଫେରିଆସି ନିଜକୁ ଦଂଶନ କରେ, ଏ କଥା କ'ଣ ଦଳେଇ ଜାଣି ନାହିଁ ?

ପନ୍ଦର ଦିନ ଗଲେ [illegible] ଦଳେଇର ଝିଅ ବାହାଘର । ମନ୍ତ୍ରୀ କ'ଣ ଆଉ ଶୁଣିବେ ? ଅନ୍ତତଃ ମାସକ ପାଇଁ...ମନ୍ତ୍ରୀ କହି ଦେଇଛନ୍ତି, ଆରେ ଏ ରାଜନୀତିରେ

ପଶିଲା ଦିନୁ ଗଣ୍ଡାଗଣ୍ଡା ଅଜଗର ସାପ ଦେଖିଲିଣି । ମଣିଷକୁ ଗିଳିଦେବା ପାଇଁ ସବୁବେଳେ ପାଟି ମେଲେଇ ବସିଛନ୍ତି । ହେଲେ ମଧୁସୂଦନ ରଥ ହେଉଛି – ନାଗବଂଶ... ଗୋଟାଏ ଚୋଟରେ ସବୁ ଶେଷ । ବୁଝିଲୁ ?

ରବିବାବୁ ଆସି ତାଙ୍କର କାମ ଆରମ୍ଭ କରିସାରିଥିଲେ । ପଣ୍ଡା ତଳକୁ ମୁହଁ ପୋତି ସେମିତି ବସି ରହିଥିଲେ । ଯେଉଁ ପରକୁ ସେ ଆପଣାର କରିପାରିଥିଲେ, ଆଜି କେତେ ସହଜରେ ତାକୁ ପୁଣି ପର କରିଦେଲେ । ତାଙ୍କର ମନ ବିଷଣ୍ଣ ହୋଇ ଯାଉଥିଲା ।

ଏହାରି ନାମ ତ ଜୀବନ !



# ଉଧାର-ବଦଳ

ଏଇମାତ୍ର ସକାଳ ହେଲା -

...ଆଶ୍ୱିନ ମାସର ଏକ ଶାନ୍ତ କିନ୍ତୁ ମଳିନ ଉଦାସ ସକାଳ । ପୂର୍ବ ଦିଗ୍‌ବଳୟରେ ରକ୍ତ ଆଉ କୃଷ୍ଣର ମିଳିତ ସହାବସ୍ଥାନ - ଏକ ରୂପଶ୍ରୀ ମଣ୍ଡିତ ଯୌବନବତୀ କୃଷ୍ଣଚୂଡ଼ାପରି । ଆକାଶରେ ମେଘ ଢାଙ୍କିଚି ।

ବେଲବରଣ ଷଷ୍ଠୀ ଆଉ ଦିନେ ରହିଲା - ପରବାସିଆ ପୁଅଟା ଏତେ ଦିନେ ଘରକୁ ଆସୁଛି । ରାଧାମଣିଙ୍କର ଗୋଡ଼ ତଳେ ଲାଗୁନାହିଁ । ଧୁଆ, ପୋଛା, ରଖା, ଥୁଆରେ ତାଙ୍କୁ ଆଉ ବେଳ ମିଳୁ ନାହିଁ । ଗତକାଲି ସେ ଚାରିଟା ଧାନଶୁଖା ହେଁସ ମସିଣା ଧୁଆଇ ଥିଲେ । ସେଗୁଡ଼ାକ ଭଲ କରି ଶୁଖିନାହିଁ । ଅଥଚ ଦେଖ, ଏ ମେଘର ଅଦୋଉତିକି.... ରାଧାମଣି ମନେ ମନେ ମେଘକୁ ଅଭିସମ୍ପାତ ଦେଉଥିଲେ ।

ଦୁର୍ଗାଷ୍ଟକ ବୋଲୁ ବୋଲୁ ସଦ୍ୟସ୍ନାତ ଗାମୁଛା ପରିହିତ ଗୋପମହାନ୍ତି ଏ ଦୂରରୁ ଏତେବେଳେ ଦେଖାଦେଲେ । ତାଙ୍କ ହାତରେ ମେଞ୍ଚାଏ କଞ୍ଚା ଘାସ ଧରା ରହିଥିଲା ।

ମେଘ ଢାଙ୍କିଛି ବୋଲି କ'ଣ ଆଉ ବେଳ ଅନେଇଁ ବସିଛି - କେଉଁ ଦେଶର କଥା ଇଏ ? ପରିଆ ଟୋକା ଏତେ ମଗରା ହୋଇଗଲାଣିଯେ, ଗୋରୁ ଦି'ଟା ବାନ୍ଧି ପାରିନାହିଁ ଏ ଯାଏଁ....

ମହାନ୍ତିଏ ହୁଙ୍କାର ଛାଡ଼ିଲେ... ପରିଆ...

ଗୁହାଳ ଘର ଭିତରୁ ଜବାବ୍ ଆସିଲା.... "ଦୁଧ ଦୁହୁଁଚି..."

ମହାନ୍ତିଏ ଗୁହାଳ ଘର ଆଡ଼କୁ ଖେଦି ଯାଉ ଯାଉ କହିଲେ - ବଡ଼ ମଗରା ହେଲୁଣି, ନାଇଁ ? ବେଳ ଆସି ଏତେ ହେଲାଣି...

ଗମ୍ଭୀର ଭାବରେ ପରିଆ ଜବାବ୍ ଦେଲା – କାହିଁ ଗୋଟାଏ ସକାଳଟାରୁ ବଡ଼ ବଡ଼ ହଉଛମ... ନେତ ହୁରୁଡୁଛି ।

ମହାନ୍ତି ଏ ନୀରବରେ ଦାନ୍ତ କଡ଼ ମଡ଼ କଲେ । ହ୍ୟାପ, ଦନେଇ ଦାସ – ସେଇ ଟୋକା ଖଣ୍ଡକ ଏମାନଙ୍କ ମୁହଁ ବଢ଼େଇ ଦଉଚି । କାଳ ତ ହେଲା ସେମିତି – ନ ହେଲେ ! ମହାନ୍ତିଏ ଚାଣକ୍ୟ ନୀତି ଆଉଡ଼ାଉ ଆଉଡ଼ାଉ ଦୁର୍ଜନ ସଂଶ୍ରବ ଦୂଷିତ ସ୍ଥାନ ତ୍ୟାଗ କଲେ ।

ଖରା ଟିକିଏ ହେବ କି ଆଉ ? ଧାନଗଛ ଗୁଡ଼ାକ କ୍ଷୀର ଢୋକୁଚି... ପଛରୁଆ କୋଉଠି କୋଉଠି ବା ଫୁଲ ଉଡ଼ୋଉଚି... ଏତିକି ବେଳକୁ ଏମିତି ବର୍ଷା ପବନ ଯଦି ଲାଗିରୁହେନା... ତା' କଥା ଛାଣ ସରିଲା । ଗୋପ ମହାନ୍ତି ଦାଣ୍ଡ ମେଲାରେ ପଡ଼ିଥିବା ଭଙ୍ଗା ଆରାମ ଖୁରୁସି ଉପରେ ଆଉଜି ବସି ଖଣ୍ଡେ ପୁରୁଣା ଖବର କାଗଜରେ ଆଖି ପକାଉଥିଲେ । ତାଙ୍କର ଚା' ପାନ ଇତି ମଧ୍ୟରେ ଶେଷ ହୋଇ ଯାଇଥିଲା ।

"ଗୋପଦାଦି ଘରେ ଅଛନା ?" ଦାଣ୍ଡ ଉପରୁ କାହାର ଘାଗଡ଼ା କଣ୍ଠସ୍ୱର ଶୁଣାଗଲା । ମହାନ୍ତିଏ ଉତ୍‌କର୍ଣ୍ଣ ହୋଇ କାନ ଡେରିଲେ, ଇଏତ ତଳସାଇ ନଟ – ଫଟକବିସିନୀ କଲିକତିଆ ... ହ୍ୟାପ ବାପଟାକୁ ପଚାରିଲା ନାହିଁ ଯେ, ତା' ଅବସ୍ଥା ବାରଣ୍ଡା ଦି' କଡ଼ା । ଖାଲି ହାଡ଼ ଦି' ଖଣ୍ଡ ଦୋହଲୁଚି ଯାହା - ହଳଦିଆ ପଡ଼ିଗଲାଣି ଗୋଟାପଣେ– କାଲି ତ ତାକୁ ଦେଖି ଆସିଥିଲି – ଶଳାଟି ଚାଲିଗଲା କି ଆଉ ?

"ଗୋପ ଦାଦି ନାହାନ୍ତି ନା କ'ଣ ମ ?" ନଟବରଙ୍କ ବ୍ୟାକୁଳ ସ୍ୱରରେ ପିତୃବିୟୋଗ – ଜନିତ ଶୋକର ଅଭାବ ବିଷୟରେ ନିଃସନ୍ଦେହ ହେବାପରେ ମହାନ୍ତିଙ୍କର ଉଦାତ୍ତ ଆହ୍ୱାନ ଶୁଣାଗଲା... "କିଏ ନଟ କିରେ ? ଆ, ଉପରକୁ ଉଠିଆସୁନୁ..."

ଏତେବେଳେକେ ନଟବର ଦେଖାପଡ଼ିଲେ । ତାଙ୍କର ପାତଳ ଚଉଡ଼ା – ଧଡ଼ିଆ ଫିରାସ୍‌ତିଙ୍ଗା ଧୋତି ତଳକୁ ଗାରଗାରିକା ଅଣ୍ଡରଓୟାର୍‌ର ଶୋଭା ଫୁଟି ଦିଶୁଥିଲା – ଦେହରେ ଡବଲ୍‌କଫ୍ ଗାରଗାରିକା ସାର୍ଟ ଉପରକୁ କଳା ଜହରକୋଟ୍ । ସବୁଠୁ ଦେଖିବା କଥା ତାଙ୍କର କେଶ ପରିପାଟୀ... ସତେ ଯେମିତି ନଟବରଙ୍କ ମୁଣ୍ଡ ଉପରେ କେତେଗୁଡ଼ିଏ ଛୋଟ ବଡ଼ ସବୁଜ ମୁଣ୍ଡିଆ ଠିଆ ହୋଇଛନ୍ତି !

ନଟବର କିଛି ଦିନ ନାଚ ପାର୍ଟିରେ ଥିଲେ ।

ପାହାଚ ଚଢୁ ଚଢୁ ନଟବର କହିଲେ –

କାମ ବଢ଼ିଲାଣି ତ ସବୁ ? ବେଳ କେତେ ହେଲାଣି ଜାଣିଚ ତ ? କଫ୍‌ଟେକି ନଟବର ନିଜର H.M.T ଘଣ୍ଟାକୁ ଅନାଇଁଲେ ।

ହ–ଅ... ଚା' ପାଣି ଟିକକର କଥା ତ । ସେସବୁ ସରିଲାଣି କେତେବେଳୁ – ମହାନ୍ତିଙ୍କର ନିର୍ଲିପ୍ତ ଉତ୍ତର ।

ଅଭି କେବେ ଆସୁଛି ? ତା'ର କ'ଣ ଛୁଟି ହୋଇ ନାହିଁ ? ନଟବର ପାରିବାରିକ କୁଶଳ ଜିଜ୍ଞାସା କରିବାରେ ଲାଗିଲେ ।

ମହାନ୍ତିଏ ସାବଧାନ ହେଲେ । ଏଇ କୁଶଳ ପ୍ରଶ୍ନ, ଅନ୍ତରଙ୍ଗ ହେବାର ଅନାବଶ୍ୟକ ଉତ୍ସୁକ ଉଦ୍ୟମ ଯେ କୌଣସି ଗୁରୁତର ବିଷୟର ପୂର୍ବାଭାସ ମାତ୍ର, ଏ ବିଷୟ ଧରିନେବା ନିମନ୍ତେ ତାଙ୍କ ଭଳି ବହୁଦର୍ଶୀ ଲୋକର ଆଦୌ ଅସୁବିଧା ହୋଇନଥିଲା ।

ତେଣୁ ସେ ଖାପ୍ ଛଡ଼ା ଭାବରେ ଜବାବ୍ ଦେଲେ... ଗାଁ ଭୂଇଁକୁ କିଏ ପଚାରୁଚି ଆଜିକାଲି ? ଡେଣା ଲାଗି ନ ଥିବା ଯାଏ ସିନା ବାପା ମା–ଗାଁ ।....

ନଟବର ଉଦାର ହେଲେ ।

ସାନ୍ତ୍ୱନା ଦେଇ କହିଲେ – ଯା' କହିଲ ଦାଦି । ଆଜିର ଶିକ୍ଷିତ ପିଲାଏ ଯଦି ଗାଁ ଆଡ଼କୁ ଆଡ଼ ଆଖିରେ ଅନାନ୍ତେ, ତା' ହେଲେ କ'ଣ ଏଇ ଟାଉଟର୍‌ମାନେ ଆଖିବୁଜା ଅତ୍ୟାଚାର ଚଳାଇ ପାରନ୍ତେ ନା ଦନେଇ ଦାସ ଏମିତି ଉଦ୍‌ବାର୍ଯ୍ୟ ହୁଅନ୍ତା ?

ମହାନ୍ତି ଏ ଅପେକ୍ଷା କଲେ, ଦନେଇ ଦାସ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଏକଥା ସତ – ତେବେ ଘଟଣାଟା କ'ଣ ନ ଜାଣି ତା' ବିଷୟରେ ହଠାତ୍ ଏକ ପ୍ରତିକୂଳ ମନ୍ତବ୍ୟ ଦେଇ ବସିବା ତାଙ୍କ ପରି ପୁରୁଖା ମାମ୍‌ଲତ୍‌କାର ପକ୍ଷରେ ଉଚିତ ହେବ ନାହିଁ ।

ତେଣୁ ସେ ବୌଦ୍ଧିକ ନିର୍ଲିପ୍ତତା ମଧ୍ୟରେ ନିଜର ଔତ୍ସୁକ୍ୟକୁ ଢାଙ୍କି ଦେଇ ପଚାରିଲେ – ''ଆଉ କିଛି ନୂଆ ଖବର ଅଛି ନା କ'ଣ ?''

ନଟବର କହିଲେ – ତମେ କ'ଣ ଶୁଣି ନ ଥିବ କି ? ସେ ଗୋଟାଏ ଜାଣିବା ଶୁଣିବା ଲୋକ – କୋଉ ବିବେକରେ ଗୋଟାଏ ତିରିଲା ଦେହରେ ହାତ...

ମହାନ୍ତିଏ ଚଞ୍ଚଳ ହୋଇ ପଡ଼ିଲେ, କହିଲେ – ଏକଦମ୍ ଫୌଜଦାରୀ ? ତା' ପୁଣି ଗୋଟାଏ ତିରିଲା ସାଙ୍ଗରେ ? ଘଟଣାଟା କ'ଣ କହିଲୁ ପୁଅ...

ନଟବର ଅଧୀର ହେଲେ । ବିରକ୍ତିବ୍ୟଞ୍ଜକ କଣ୍ଠରେ କହୁଥିଲେ – ଏଇ ଉଦାସିଆ କଥା ଶୁଣିଲେ ମୋ ' ହାଡ଼ ଚିଡ଼େ – ଏଣେ ଘର ବୁଡ଼ି ପାଣି ଆଣ୍ଠୁଏ ହେଲାଣି... ଆଉ ତମେ ନାକରେ ସୋରିଷତେଲ ଦେଇ ବସି ରହୁଛ !

ଅଗତ୍ୟା ମହାନ୍ତି ଏ ଦାର୍ଶନିକ ସୁଲଭ ନୈର୍ବ୍ୟକ୍ତିକ ଆବରଣ ଭିତରୁ କହିଲେ – ପରକଥାରେ ମୋର କ'ଣ ଥାଏ ରେ ନଟ – ବୟସ ହେଲା.... ଏଣିକି ଆଉ ଏସବୁ କ'ଣ ଶୋଭା ଦିଶିବ ?

ଗୋପ ମହାନ୍ତିଙ୍କର ଏଇ ଉଦାସୀନତା ହାଲି –ନେତା ନଟବରଙ୍କୁ ଭଲ ଲାଗିବା କଥା ନୁହେଁ । ସେ ଚାହାନ୍ତି ଉତ୍ତେଜନା, ନୂତନତା, ଆଉ ତା ସଙ୍ଗେ ସଙ୍ଗେ ହାତ ଚିକ୍କଣ କରିବାକୁ । ତାଙ୍କର ଇଚ୍ଛା ହେଉଥିଲା, ଗୋପ ମହାନ୍ତିଙ୍କୁ ଦୁଇଚାରିଟା କଡ଼ା କଥା କହିଦେଇ, ନିଜେ ଗୋଟାଏ କିଛି କରିପକାଇବାକୁ । ହ୍ୟାପ ବିରାଡ଼ି – ବୈଷ୍ଣବ. ଯା ମୁଚୁଳା ତା' ମୁଣ୍ଡ ତଳେ, ତା' ମୁଚୁଳା ଆଉ କାହା ମୁଣ୍ଡ ତଳେ ଦେବାର ବ୍ୟବସ୍ଥାରେ ରାତିଯାକ ପଛେ ନିଦ ହେଉ ନ ଥିବ । ଆଉ କଥା ଦେଖ – ସତେ ଯେମିତି ବିବେକାନନ୍ଦ ସ୍ୱୁଆମୀ !

ଅବସ୍ଥା ସଂଗୀନ୍ !

ନଟବରଙ୍କୁ ବୁଦ୍ଧିବାଟ ଦିଶୁଥିଲେ, ସକାଳଟାରୁ ବୁଢ଼ା ଗଧ ପାଖରେ କେଁ କଚର ହେବାକୁ ଆସି ନ ଥାନ୍ତେ । ସେ ଚାହାନ୍ତି ଉପରକୁ ଉଠିବାକୁ । ପ୍ରତିପତ୍ତି, କ୍ଷମତା, ଅଧିକାରର ଚମତ୍କାର ଖେଳ ଦେଖାଇ ୱାର୍ଡ଼ ମେହେମ୍ବର, ସରପଞ୍ଚ, ଏମେଲେ, ମନ୍ତ୍ରୀ... ଏମିତି ପାହାଚ ପାହାଚ ଉଠିଯିବାକୁ । ସେଥିପାଇଁ ହିଁ ଗୋପ ମହାନ୍ତିଙ୍କର କରଣିଆ ବୁଦ୍ଧି ତାଙ୍କର ଦରକାର । ମହାନ୍ତି ପୁଅକୁ ସିଡ଼ି କରି ନଟବର ଉଠିଯିବେ ଉପରୁ ଉପରକୁ ... ସେତିକି ହିଁ ତାଙ୍କର ଭୂମିକା....

ତା' ପରେ ଉପରୁ ଲାତ୍ ମାରି ସିଡ଼ିଟାକୁ ତଳକୁ ଫୋପାଡ଼ି ଦେବାର ଏକ ଗୋପନ ଯୋଜନା ମଧ୍ୟ ନଟବରଙ୍କର ରହିଛି ।

କଲିକତା ଛାଡ଼ି ଗାଁ ଭୂଇଁରେ ପକ୍କାପକ୍କି ରହିବା ଖାସ୍ ଏଇଥିପାଇଁ ସିନା !

କିନ୍ତୁ ବର୍ତ୍ତମାନ ?

ଉତ୍ତେଜିତ ହୋଇ ନଟବର କହୁଥିଲେ – ମାମଲା ହାତରୁ ବାହାରକୁ ଚାଲିଗଲେ, ସେତେବେଳକୁ କିନ୍ତୁ ମୋତେ ଦୋଷ ଦେବ ନାହିଁ । ଦାଦି, ତେମେ ବୁଝୁନା କେମିତି

ଯେ, ତିରିଲା ଲୋକ ଥାନାକୁ ଘୋଷଡ଼ା ହେଲେ ଗାଆଁକୁ ଲାଜ, ସାହିକୁ ଅପମାନ.... ତମେମାନେ ଏଡ଼େ ପୁରୁଖା ଲୋକ ଥାଉଁ ଥାଉଁ ଗାଁ ଭିତରେ ପୁଲିସି-ଦଫାଦାର ମେଳା ମେଳା ହେବେ - ଏଇଟା କ'ଣ ଭଲ ଦୁଶିବ ?

ଗୋପମହାନ୍ତି ନିଜର ବିଶାଳ ଉଦରଟିକୁ ସଂବାହନ କରୁ କରୁ ଈଶ୍ୱରଙ୍କ ନାମ ସ୍ମରଣ କଲେ । ନଟବରର ଅଜାଣତରେ ମାଛି ଉଡ଼ାଇବା ବାହାନାରେ ନାକପାଖକୁ ହାତ ନେଇ ନିଃଶ୍ୱାସ ବାରିଲେ । ତା'ପରେ ସନ୍ତୁଷ୍ଟ ହୋଇ କହିଲେ - କଥାଟା କ'ଣ କହିଲେ ସିନା ଜାଣିବି ?

- ମୁଁ କାଇଁକି, ଯାହାର କଥା ସିଏ ନିଜେ କହିବ । ନଟବର ଜବାବ୍ ଦେଇ ପିଣ୍ଡାତଳକୁ ଅନାଇଁ ଡାକିଲେ.... ଆଲୋ ଆସୁନୁ ! କହ, ଯାହା ଯାହା ହେଲା, କିଏ କିଏ ତତେ ବେଇଜ୍ଜତ କଲେ, ସବୁ ଟିକିନିଖି ଯାଏ କହିଯା - ତା' ପରେ ଆମେ ସବୁ ଅଛୁ ।

ନଟବର ସଗର୍ବ ନିଜର ସରୁନିଶ ହଳକ ଉପରେ ହାତ ବୁଲାଇ ଆଣି ପକେଟରୁ 'ଚାରମିନାର' ବାହାର କଲେ । ଦିଆସିଲି ଆଣିବାକୁ ପରିଆକୁ ଗୋଟାଏ ହାଙ୍କ ଦେଇ ନଟବର ହୁଙ୍କାର ଛାଡ଼ିଲେ- କିଲୋ ! ହୁଙ୍କାଟା ଭଳି ଠିଆ ହୋଇ ରହିଲୁ କ'ଣ ମ ? ମୁଁ ତମକୁ କହି ନ ଥିଲି ଗୋପଦାଦି, ଆମ ଗାଁର ଆଉ କିଛି ହବ ନାହିଁ । ଦିନ ଦିପହରରେ ଏଠି ତିରିଲା ଲୋକ ଯଦି ବେଇଜ୍ଜତ ହୁଏ, ଆଉ ସେହି ବଦ୍‌ମାସମାନେ ଛାତି ଫୁଲାଇ ଗାଁ ଦାଣ୍ଡରେ ବୁଲନ୍ତି, ତେବେ ଗାଁରେ ସମାଜ ଥାଇ କେତେ ନ ଥାଇ କେତେ ?

ଲାଲଧଡ଼ି ଥିବା 'ବଙ୍ଗଲକ୍ଷ୍ମୀମିଲ୍' ର ଆଡ଼-ମଇଳା ଖଣ୍ଡେ ଧଳା ଶାଢ଼ୀ ପିନ୍ଧି ସ୍ତ୍ରୀ ଲୋକଟି ଏମଧରେ କିନ୍ତୁ ସୁକୁ ସୁକୁ ହୋଇ କାନ୍ଦିବାକୁ ଆରମ୍ଭ କରିଥିଲା । ନଟବରଙ୍କର ଉଦ୍‌ବୋଧନ ତା' ହୃଦୟକୁ ସ୍ପର୍ଶ କଲା ନା କ'ଣ ?

ମହାନ୍ତିଏ ପଚାରିଲେ ଇଏ କିଏ ?

ନଟବର କହିଲେ, ଗୁଡ଼ିଆ ସାହିର ଘନା ସାହୁ ମାଇପ ସୁଲୀମଁ.... ତା ଘଇତାଟା ତ ପରବାସିଆ । ଘରକୁ ଏକୁଟିଆ ସିଏ, ଆଉ ଛବର୍ଷର ଝିଅ.....

ବାହାରଆଡୁ ଝଲକାଏ ଥଣ୍ଡା ପବନ ବହି ଆସିଲା । ମହାନ୍ତି ଏ ବିରଳକେଶ ମସ୍ତିକରେ ହାତ ବୁଲାଉ ବୁଲାଉ ବାହାରକୁ ଚାହିଁଲେ । ଘରଚଟିଆମାନେ ଦାଣ୍ଡ ଧୂଳିରେ

ସ୍ନାନ କରୁଥିବା ଆଉ ଗୋବରା ଚଢ଼େଇଙ୍କର ଥଣ୍ଟରେ କାଠିକୁଟା ଧରି ଉଡ଼ିଯିବାର ଦୃଶ୍ୟ ତାଙ୍କ ଆଖିରେ ପଡ଼ିଲା.... ସେଇଆଡ଼େ ଅନାଇଁ ସେ କହିଲେ... ବର୍ଷାଟା ପୁଣି ହବ ନା କ'ଣ.... ନଟ ! ଦାଣ୍ଡ କବାଟଟା ଆଉ ଯାଇ ଆଣିଲୁ ।

ନଟବର ଇଙ୍ଗିତ ବୁଝିଲେ ।

ଏତେ ବେଳେ ସ୍ୱଳ୍ପ ଅନ୍ଧକାର ପରିବେଶରେ ମହାନ୍ତିଏ ସୁଲୀଦେଈଙ୍କୁ ଭଲ କରି ଦେଖିବାର ସୁଯୋଗ ପାଇଲେ ।

ଆଲୋକରେ ସେ କେମିତି ଅସ୍ୱସ୍ତି ବୋଧ କରନ୍ତି । ଅନ୍ଧକାର ହିଁ ତାଙ୍କ ପାଇଁ ଭଲ ।

ସୁଲୋଚନା ପଇଁଚ, ବାଲା, ବଟଫଳ, ତାଇତ, ମଲିକଡ଼ି, ନାକଚଣା, ନୋଥ, ଟଙ୍କାମାଳ, ପାଉଁଜି, ପାହୁଡ଼, ଗୋଠର ଭାରରେ ଅବନତା ଏକ ବ୍ରୀଡ଼ାବତୀ କଙ୍କହାନ୍ତରିତା ପାଷାଣ ମୂର୍ତ୍ତି ତୁଲ୍ୟ ଉଭା ହୋଇଥିଲେ । ତାଙ୍କର ନାଲି ଚହ ଚହ ମୁହଁ ସାଙ୍ଗକୁ ମଧ୍ୟାଂଶ ଅସ୍ୱାଭାବିକ ଭାବରେ ସ୍ଫୀତ ଦେଖା ଯାଉଥିଲା ।

ନଟବର ଚାଲୁ-ପିଲା ଅଛି । ଏତେ ଅଳଙ୍କାର ଭାରାରେ ଅବନତା ଏଇ ଅଢ଼େଇ ମହଣୀ ଲାସ୍‌କୁ କି ଭଳି ନିଃଶବ୍ଦରେ ଆଣି ଦାଣ୍ଡ ପିଣ୍ଡା ତଳେ ଲୁଚାଇ ପାରିଲା, ଏଥି ସକାଶ ମନେ ମନେ ମହାନ୍ତିଏ ନଟବରଙ୍କୁ ତାରିଫ୍ କରୁଥିଲେ । ଦେହକର ମୋହର ମାଳକୁ ଲୋଲୁପ ଦୃଷ୍ଟିରେ ଲେହନ କରୁ କରୁ ମହାନ୍ତିଏ ଭାବୁଥିଲେ, ନାଃ... ଏ କାଳ ହେଲା ନିଆରା, ନ ହେଲେ ଯୋଉ ବନା ଗୁଡ଼ିଆ ଗଣ୍ଡାଏ ଖାଇବାକୁ ନ ପାଇ ବାର ଓଳି ଶୁଖିପିଣ୍ଡା ହେଉଥିଲା, ତା'ରି ପୁଅ ଘନା ଆଜି ମୁଠା ମୁଠା କଲକତି ପଇସା ଛାଣୁଚି, ଆଉ ତା' ମାଇପ ପୁଣି ସୁନା ରୂପାରେ ଛାଆଣି ହେଇଚି !

ନଟବର କହିଲେ.... କାଲି ବେଳ ରତରତ ହେଉଥାଏ । ସୁଲୀ ବାଡ଼ିଆଡ଼କୁ ଯାଉଥେଲା, ଝୁଅକୁ ଘର ଜଗାଇ । ତା' ବାରିକି ଯିବାକୁ ତ ଶାମା ବାଡ଼ି ଭିତରେ ଦେଇ ବାଟ । ଶାମା କୁଆଡ଼େ ଗୋଟାଏ ନୋଟା ବାଡ଼ି ଭିତରେ ଥୋଇ ଦେଉ ମୋହୁଁ ଥେଲା । ଖୋଜ୍ ଖୋଜ୍ ନୋଟା କାଇଁ ? ସକାଳୁ ଦେଖିଲା ବେଳକୁ ଶାମା ମା ବୁଢ଼ୀ ନୋଟା ପାଇଲା ସୁଲୀ ଘର ଅମାର ତଳୁ । ଆଉ ଏଇତିକରେ ତ ଦନେଇ ଦାସକୁ ସାଙ୍ଗରେ ଧରି ଶାମା ସୁଲୀ ଘର ଭିତରେ ପଶି ତା' ହାତକୁ ବାନ୍ଧି ପକେଇ ନଙ୍ଗଳକଣ୍ଟି ଧରା ହାତରେ ଠୋ ଠୋ ଚାପୁଡ଼ା ନାଦି ଦେଇଗଲା....

ଏତେବେଳେ ସୁଲୀ ଦେଈ ମୁହଁ ଖୋଲିଲେ । କଇଁ କଇଁ ହୋଇ କାନ୍ଦୁ କାନ୍ଦୁ କାଂସ୍ୟବିନିନ୍ଦିତ କଣ୍ଠରେ ସେ ମହାନ୍ତିଙ୍କ ଗୋଡ଼ ଧରିପକାଇ କହିବାକୁ ଲାଗିଲେ, ଆଖି ଫୁଟିଯିବ ସାଆନ୍ତ ! ତେମେ ମୋ ବାପଭଳି, ଯଦି ମୁଁ ମିଛ କହୁଥେବି ମୋ କୁଳ ବୁଡ଼ିଯିବ । ମୋ ପିଲା ମୁଣ୍ଡରେ ହାତ ରଖି କହୁଚି, ନୋଟା କଥା ମୁଁ କିଛି ଜାଣେ ନାହିଁ । ରଇ ଜଳାଏ, କାଠେଇ ଖିଆଏ, ବାଡ଼ି ପଡ଼ାଏ, ଝଗସର ହେଇ, ମୋ ନାଁରେ ମିଛେରେ କହୁଚନ୍ତି, ଆଉ ଯଦି ମାଲିଆ ବୋପା ଥାଆନ୍ତା, କୁଳବୁଡ଼ା ମୋ ଦିହରେ ହାତ ଦେବାକୁ ସାହସ କରି ଥାଆନ୍ତା ? ତା' ଛାତିରେ ଚଢ଼ି ଜିଭ ଓଟାରି ଆଣି ନ ଥାନ୍ତି ?

ଅପମାନିତା ସୁଲୀ ଦେଈଙ୍କର ଅଭିସମ୍ପାତର ବ୍ୟଞ୍ଜନାରେ ଉଭୟେ ନଟବର ଏବଂ ମହାନ୍ତିଏ ଉଲ୍ଲସିତ ହୋଇ ଉଠୁଥିଲେ ହେଁ, ମହାନ୍ତିଏ ସୁଲୀକୁ ଚୁପ୍ ରହିବାକୁ ଗୋଟାଏ ଧମକ୍ ଦେଇ କହୁଥିଲେ – କାଇଁ ଦେଖି ! କୋଉଠି ମାରିଚି ।

ସୁଲୀ ଦେଈଙ୍କ ଗାଲରେ ତଥାପି ପାଞ୍ଚ ଆଙ୍ଗୁଳିର କ୍ଷୀଣ ଚିହ୍ନ ରହିଥିଲା । ଜଣେ ଅଭିଜ୍ଞ ଡାକ୍ତର ଭଳି ମାଡ଼ ଚିହ୍ନକୁ ପରୀକ୍ଷା କରିସାରିବା ପରେ ସନ୍ତୁଷ୍ଟ ହୋଇ ମହାନ୍ତିଏ ଘୋଷଣା କଲେ ହୁଁ ଃ ! ଇଏ ଅଲବତ୍ ଫୌଜଦାରୀ । ତା' ସାଙ୍ଗରେ ଅନଧିକାର ପ୍ରବେଶ ଦଫା ବି ଲାଗୁ କରିବ ।

ମହାନ୍ତି ପୁଅଙ୍କ ଥାନା କଚେରୀ ବିଷୟକ ଜ୍ଞାନ ନଟବରକୁ ବାରମ୍ବାର ମୁଗ୍ଧ କରିଥାଏ । ତଥାପି ସେ ବିଷଣ୍ଣ ହୋଇ କହିଲେ ଆଉ ଫୌଜଦାରୀ ଜନାକୋରୀ ! ଦନେଇ● ଦାସ ଏତେବେଳକୁ ଥାନାରେ ରିପୋର୍ଟ ଲେଖାଉଥିବ–

ଗୋପ ମହାନ୍ତି ଉଦ୍ଦୀପ୍ତ ହେଲେ, କହିଲେ କେମତ୍ ! ସେଇ ଏକା ଦଶମାସିଆ, ତମେ ଗୁଡ଼ାକ ଛ' ମାସିଆ କିରେ ? ପୁଲିସ୍ ଆସି ଜନାନା ଘରେ ବିନା କାରଣରେ ପଶିଯିବ, ଆଉ ତେମେ ସବୁ ଅଣ୍ଡିରୀ ପୁଅ ଜଳ ଜଳ ହେଇ ଅନେଇଁ ଥବ ! ଧିକ୍ ତମ ଜନମ !

ନଟବରଙ୍କର ଉଦ୍ଦେଶ୍ୟ ସଫଳ ହେଲା, ଯେଉଁ ନିମନ୍ତେ ସେ ଅଦ୍ୟାବଧି ପଦ୍ମତୋଳା ଧରିଥିଲେ, ତା'ର ପ୍ରତିକ୍ରିୟା ଗୋପ ମହାନ୍ତିଙ୍କ ଅର୍ଦ୍ଧନିମିଳିତ ନେତ୍ର, କୁଞ୍ଚିତ ଲଲାଟ ଆଉ ଉତ୍ତେଜିତ ମୁଖମଣ୍ଡଳରେ ଦେଖିପାରି ନିଶ୍ଚିନ୍ତ ହେଲେ ।

ପ୍ରକୃତିସ୍ଥ ମହାନ୍ତିଏ ଏଥର କହିଲେ – ପୁଲିସ୍ ଫୁଲିସ କଥା ମିଛ । ଦନେଇ ଦାସ କାଲିକା ପିଲା – ମୁଁ ବଞ୍ଚି ଥାଉ ଥାଉ ସେ ମୋ ଝିଅକୁ ଥାନାକୁ ଘୋଷାଡ଼ି

ନେବ ? କସ୍ମିନ୍ କାଳେ ନୁହେଁ – ଆସୁ ପୁଲିସ୍ ! ତେବେ କଥା କ'ଣ କି, କିଛି ଖରଚ ପତ୍ରର ବ୍ୟାପାର....

ମହାନ୍ତିଙ୍କର ସ୍ୱର ନରମ ହୋଇ ଆସିଲା । କଥା କାଢ଼ି ନେଇ ନଟବର କହିଲେ – ସେ କଥା ହଜାର ବାର ସତ । ସୁଲୀ ବି କ'ଣ ଜାଣି ନେଇ ? ବାଘ ମୁହଁରୁ ଶିକାର ଛଡ଼ାଇ ଆଣିବା ଆଉ ପୁଲିସ୍ ମୁହଁରୁ ଆସାମୀ ଖସାଇ ଆଣିବା, ସମାନ କଥା । ତେବେ ସୁଲୀକୁ ଭଗବାନ୍ କୋଉ କଥାରେ ଊଣା କରିଛନ୍ତି ଯେ ? ଯାଉ ପାଞ୍ଚ ପଚାଶ୍ – ଆଗ ମାବ୍ ନା ଆଗ ଟଙ୍କା ?

ସୁଲୋଚନା ଉଠି ଠିଆ ହେଲେ । ଅଣ୍ଟାରେ ଖୋଷା ରହିଥିବା ଶାଢ଼ୀର କାନି ଖୋଲି ଦଶଖଣ୍ଡି ଦଶଟଙ୍କିଆ ନୋଟ୍ ସାବଧାନତାର ସହ ଗଣିଲେ । ତା'ପରେ ସେଗୁଡ଼ିକ ଗୋପ ମହାନ୍ତିଙ୍କ ପାଦତଳେ ରଖିଦେଇ ଉଚ୍ଛ୍ୱସିତ କ୍ରନ୍ଦନରେ ଭାଙ୍ଗି ପଡ଼ିଲେ...

ଗୋପ ମହାନ୍ତି ଟଙ୍କା ଗଣାଯିବା ସମୟରୁ ଆଡ଼ ଆଖିରେ ସିଆଡ଼େ ଅନାଇଁ ରହିଥିଲେ, ଯେମିତି ଦେଖୁଥିଲେ ନଟବର । ତା' ପରେ ଅନାଗ୍ରହ ଦେଖାଇ କହିଲେ – ଟଙ୍କା ! ପରେ ଦେଇଥିଲେ ବି ଚଳିଥାନ୍ତା ଯେ, ପୁଲିସ୍ ଆଗ ଆସୁ !

ନଟବର ସୁଲୋଚନାଙ୍କ ଦୂରଦର୍ଶିତାର ପ୍ରଶଂସାରେ ହଜାରବାର ଉଚ୍ଛ୍ୱସିତ ହୋଇ ଉଠିଲେ । ଟଙ୍କାର ପ୍ରୟୋଜନ ଯେକୌଣସି ମୁହୂର୍ତ୍ତରେ ହୋଇପାରେ । ଏଣୁ ତାକୁ ସାବଧାନରେ ରଖିବା ନିମନ୍ତେ ସୁଲୋଚନାଙ୍କ ତରଫରୁ ବିନୀତ ଅନୁରୋଧ ଜଣାଇଲେ । ବିଦାୟ ନେବା ପୂର୍ବରୁ ସଜଳ ନୟନା ସୁଲୋଚନା କହିଲେ, ତମକୁ ବାପ ବୋଲି ଡାକିଚି ସାଆନ୍ତେ ! ପାଦ ଛୁଇଁଚି – ମାଲିଆ ବାପ ଟଙ୍କାରୁ ଏତିକି ବୋଲି ଲୁଚାଇ ରଖିଥିଲି । ଟଙ୍କା ପଛେ ଯାଉ – ଯେମିତି ହେଲେ ଏ ବିପଦରୁ ରକ୍ଷା କର– ନ ହେଲେ ଭାସିଯିବି ଜାଣ...

ମହାନ୍ତିଏ ଅନେକ ଆଶ୍ୱାସନା ଦେଲେ । ନିଜ ବିଷୟରେ ଅନେକ ଉଚ୍ଛ୍ୱସିତ ଗୋପନ ବିଷୟ ସୁଲୋଚନାଙ୍କ ଆଗରେ ବ୍ୟକ୍ତ କଲେ । କେଡ଼େ କେଡ଼େ ଖୁବ୍ ମାମଲା ପ୍ରମାଣ ଅଭାବରୁ ଖଲାସ କରାଇ ଆଣିଥିବାର ନିର୍ଦ୍ଦିଷ୍ଟ ବିବରଣୀମାନ ଦେଇ ନଟବରଙ୍କୁ ସାକ୍ଷୀ ମାନିଲେ ।

ସୁଲୋଚନା ଆଶ୍ୱସ୍ତ ହୋଇ ପାହାଚ ଓହ୍ଲାଇଗଲେ । ନଟବର ନିଶ୍ଚିନ୍ତରେ ଚାରିଆଡ଼କୁ ଦେଖିନେଇ ଏକ ରହସ୍ୟମୟ ହସ ହସିଲେ । ତା' ପରେ ଗୋପ ମହାନ୍ତିଙ୍କୁ

କ୍ଷୁଣ୍ଣ ହୋଇ କହିଲେ, ଛାଇଁଲ ଦାଦି ! ଅସଲରେ ଘନା ମାଇପର ଟିକିଏ ହାତ–ଉଠାପଣ ରହିଚି – କୁଟା ଖଣ୍ଡେ ହେଲେ ବି ପର ଜିନିଷ ଚାହୁଁ ଚାହୁଁ ନେଇ ଘରେ ପୂରାଇବ...

କେଉଁ ଲୋକଟା ଏବେ ସାଧୁ ଯେ, ଏକା ଘନା ମାଇପର ଦୋଷ ! – ମହାନ୍ତିଙ୍କର ନିର୍ଲିପ୍ତ ଉତ୍ତର ।

ବେଳ ବଢ଼ିଯାଉଥିଲା । କଜଳ ବର୍ଣ୍ଣର ମେଘସବୁ ତଳକୁ ତଳକୁ ନଇଁ ଆସୁଥିଲେ ।

ସୁଲୁସୁଲିଆ ଶୀତଳ ପବନ ବହିଆସି ଦେହ ସିର୍‌ସିରେଇ ଉଠୁଥିଲା ।

ମହାନ୍ତିଏ ଖଡ଼ମ୍‌ମାଡ଼ି ଦାଣ୍ଡ ବାରଣ୍ଡାକୁ ଉଠି ଆସିଲେ । ଡାକମାରି କହିଲେ, ଅରେ ହେ ପରିଆ ! ସଇଲା ତୋର ?

ବାଡ଼ରୁ କାମୁଡ଼ା ଦିଆଯାଇଥିବା ଖଣ୍ଡେ ବତାକୁ ରଡ଼୍‌ରାଡ଼୍ ଭାଙ୍ଗୁ ଭାଙ୍ଗୁ ପରିଆ ଉତ୍ତର ଦେଲା.... ପଣନ୍ତୁ.. ବାଡ଼ଭାଙ୍ଗି ଯେତେବେଳେ ଗୋରୁ ଗାଈ ପଶିବେ ସେତେବେଳେ ଆଉ ମୋତେ ଦୋଷ ଦେବ ନାହିଁଟି....

ମହାନ୍ତିଏ ହାଁ ହାଁ ଚିତ୍କାର କରି ଉଠିଲେ । ଅର୍ଦ୍ଧ ମୁକୁଳିତ କେତୋଟି ଜହ୍ନିଫୁଲ ଆଡ଼କୁ ପରିଆର ଦୃଷ୍ଟି ଆକର୍ଷଣ କରୁ କରୁ କହିଲେ, ଫଳନ୍ତି ଗଛ କିଏ ଓପାଡ଼େ ? ହଇରେ ହେ....

ମୋତେ କହିଲେ ମୁଁ କ'ଣ କରିବି ଯେ ? ସାତ ଦିନ ହେଲା କହୁଚି ଚାଳ ହରିଲା... କାଠ ସରିଲା... କିଛି ଗୋଟାଏ ବ୍ୟବସ୍ଥା କର... ।

ଦାଣ୍ଡଟାରେ ଠିଆ ହୋଇ ଘରକଥା ଆଲୋଚନା କରିବା ନିମନ୍ତେ ମହାନ୍ତିଙ୍କୁ ଭଲ ଲାଗୁନଥିଲା । ପରିଆକୁ ଏଥି ନିମନ୍ତେ ବହୁତ ଥର ଭର୍ତ୍ସନା କରାଯାଇଛି ମଧ୍ୟ..., ଛୋଟ ଲୋକ ଗୁଡ଼ାଙ୍କର କୋଉକାଳେ ବୁଦ୍ଧି ହେଲାଣି ଯେ ? ମହାନ୍ତି ଏ ଅନୁଚ୍ଚ କଣ୍ଠରେ କହିଲେ – ତିନିଟା ଚାରିଟା ବେଳକୁ ମଥୁରି ସାହୁ ଶଗଡ଼ଟା ନେଇ ଝାଡ଼କୁ ଚାଲିଯିବୁ । ସଞ୍ଜେ ସଞ୍ଜେ ଫେରି ଆସିବୁ.... ବାକି କଥା ମୁଁ ବୁଝିବି... ।

ନଟବର ତଥାପି ଅପେକ୍ଷା କରି ରହିଥିଲେ । ମହାନ୍ତିଏ ଜାଣନ୍ତି – ସେ ଅପେକ୍ଷା କରିବେ ହିଁ କରିବେ । ପରିଶ୍ରମର ଫସଲ୍‌କୁ ଘରକୁ ନ ନେବାଯାଏଁ ତାଙ୍କର ସ୍ୱସ୍ତି କାହିଁ ?

ଶେଷ ମହାନ୍ତିଏ କହିଲେ – ତୁ ତେଣେ ଦେଖ୍ ନଟ । ଆଗରୁ ମୋତେ ଖବରଟା ଯେମିତି ମିଳେ ।

ଏ ସବୁ ନଟବର ଜାଣନ୍ତି । କିନ୍ତୁ....

ଅଗତ୍ୟା ମହାନ୍ତିଏ କହିଲେ ! ସେ ବେଳ ଆସୁ । କ'ଣ ଖର୍ଚ୍ଚ ପତ୍ର କରିବାକୁ ପଡୁଚି କିଏ ଜାଣେ !

ବାଧ ହୋଇ ମୁହଁ ଭୁର୍କୁଣ୍ଡା କରି ନଟବର ଉଠିଗଲେ । ଏତେବେଳକୁ ତୁଚ୍ଛ ଟଙ୍କା ପଇସା ବ୍ୟାପାରରେ ମନୋନିବେଶ କରିବାକୁ ମହାନ୍ତିଙ୍କୁ ସମୟ ହେଲା ।

ସାବଧାନରେ ଟଙ୍କାତକ ଗଣି ମହାନ୍ତିଏଁ ତାକୁ ଧରି ଭିତରକୁ ଉଠିଗଲେ ।

ବେଳ ମୁଣ୍ଡ ଉପରକୁ ଆସିଯିବ ପରା !

ସଭା ଗହ ଗହ ଡାକୁଥିଲା, ଥାନାଦାର ନିଜେ ଏକ ଚଉକି ଅଣାଇ ଶାମ ସାହୁ ପିଣ୍ଡା ଉପରେ ଜମାଇ ବସି ରହିଥିଲେ, ତାଙ୍କର ବାଘୁଆ ନିଶ ସାଙ୍ଗକୁ ହାଫ୍‌ପେଣ୍ଟର ବାରିତ ଶାସନ ନ ମାନି ବାହାରକୁ ଆତ୍ମପ୍ରକାଶ କରୁଥିବା ବର୍ତ୍ତୁଳ ଉଦରଟି ଏକ ଭୀତିପ୍ରଦ ଦୃଶ୍ୟ ସୃଷ୍ଟି କରିଥିଲା । ଅଦୂରରେ ସେ ଆଣିଥିବା ବାଇ-ସାଇକେଲ୍‌ଟି ନଡ଼ିଆ ଗଛକୁ ଆଉଯାଇ ରଖା ଯାଇଥିଲା ।

ଏକ ପାଖରେ ଠିଆ ହୋଇଥିଲେ ଦୁଇଟି ଠେଙ୍ଗୁଣୀଧରା କନେଷ୍ଟବଳ, ସେମାନଙ୍କ ପେଣ୍ଡାରେ ବ୍ୟାଣ୍ଡେଜ୍ ବନ୍ଧା ହେଲାଭଳି ନୀଳ ସାଲୁକନାର ପରସ୍ତ ପରସ୍ତ ଆବରଣ ଢାଙ୍କି ହୋଇ ରହିଥିଲେ ମଧ୍ୟ ପଦ ପାଦୁକାହୀନ ଥିଲା ।

ପ୍ରମାଣ ସାଇଜ୍‌ର ଏକ କାଚଗ୍ଲାସ୍‌ରେ ସୁଶୀତଳ କଅଁଳ ନାରିକେଳ ଜଳ ପାନ କରୁ କରୁ ଦାରୋଗାଏ ଜଣେ ଦାୟିତ୍ୱପୂର୍ଣ୍ଣ ଅଫିସର୍ ଭଳି ଜେରା କରୁଥିଲେ । ସବ୍‌ଜମିନ୍ ତ ଦେଖିଆସିଲି, ଆଚ୍ଛା ! ଯେଉଁଠୁ ତମର ତାଳ ଚୋରି ହୋଇଚାଲା, ସେଠୁ ସୁଲୀଦେଈର ଅମାର କେତେ ଫୁଟ୍ ଦୂର ହେବ ?

ଉପସ୍ଥିତ ଜନତା ଇଏ ତା' ମୁହଁକୁ, ସିଏ ତା' ମୁହଁକୁ ଅନାଇବାକୁ ଲାଗିଲେ । ସମସ୍ତଙ୍କ ମୁହଁରେ ସନ୍ଦେହ ଫୁଟି ଉଠିଲା ! ଇଏ ଚୋର ଧରିବେ ନା ଜମିମାପ କରିବେ ?

ଶାମ ସାହୁ କହିଲେ – ଜମି ଇଜମାଲୀ ନୁହେଁ ଦାରୋଗା ବାବୁ । ଆମ ନିଜ ଅଜାଙ୍କର ଅର୍ଜିଲା ସମ୍ପତ୍ତି ।

ଦାରୋଗାଏ ଭ୍ରୁକୁଞ୍ଚିତ କଲେ, ଜମି କଥା କିଏ ଏଠି ପଚାରୁଚି ? କହିଲେ, ଯେଉଁଠୁ ଚୋରି ହୋଇଚି, ଯେଉଁଠୁ ଚୋରି ଜିନିଷ ମିଳିଲା, ଚୋର ଯୋଉ ବାଟେ ଆସିଲା, ଯୋଉ ବାଟେ ଗଲା, ଘରର ନକ୍ସା ଏସବୁ ସରକାରୀ କାଗଜ ପତ୍ରରେ ରହିବ । ସୋରିଷଟାଏ ହେଉନା କାହିଁକି ଚୋରି ତ ! ଇବ୍‌କ୍ୱାରିରେ ଆସି ମୁଁ ତ ଆଉ ସରକାରୀ ନିୟମ ବାତିଲ୍ କରି ଦେଇପାରିବି ନାହିଁ ।

ଜନତାର ମୁହଁରେ ମୁଗ୍ଧ ବିସ୍ମୟ ଫୁଟିଉଠିଲା । ସତେ ବାବୁଙ୍କୁ କି ପରିଶ୍ରମ କରିବାକୁ ନ ହେଉଛି । ବିନା ଅମୀନ, ଉଗ୍ରେସରରେ ଘରବାଡ଼ିର ନକ୍ସା ବି ବାବୁ ଆଙ୍କି ଦେବେ ?

କେତେପ୍ରକାର ପାଠ ପଢ଼ିବାକୁ ନ ହୋଇଥିବ ଟି ତାଙ୍କୁ !

ଦାରୋଗା ବାବୁ ଜନତାର ନୀରବ ସ୍ତୁତିକୁ ମନେ ମନେ ଗ୍ରହଣ କରିନେଇ କହିଲେ – "ପୋଲିସ୍ ଚାକିରିଟି ଇଏ ।"

ଦନେଇ ଦାସେ ଦାରୋଗାଙ୍କର ଏକ ପାର୍ଶ୍ୱରେ ଦୀର୍ଘ ସମୟ ଧରି ଠିଆ ହୋଇ ରହିଥିଲେ । ଏତେବେଳେ ଚୁପ୍‌ଚାପ୍ ରହି କେବଳ ଠିଆ ହେଲେ ଗାଁ ଲୋକେ ତାଙ୍କୁ କ'ଣ ଭାବିବେ ?

ଦାରୋଗାଙ୍କ କାନ ପାଖରେ ନଇଁପଡ଼ି ସେ ଅନୁଚ୍ଚ ସ୍ୱରରେ କ'ଣ ବୁଝାଇବାକୁ ଲାଗିଲେ । ଦାରୋଗା ସମ୍ମତିସୂଚକ ମୁଣ୍ଡ ହଲାଇ ଗ୍ରାମରକ୍ଷୀଙ୍କ ଆଡ଼କୁ ଅନାଇ କହିଲେ – "ସୁଲୀ ଦେଈକୁ ଡାକି ଆଣ ।"

ଦନେଇ ଦାସ କହିଲେ – ଆହା ! ଏଇ ହାତ ଉଠା ପଣ ଯୋଗୁହିଁ ଘନସାଉର ଘର ମଣିଷଟା ଜାଣ ଦି' କୁଳରୁ ଗଲା, ଦୋଷ ପ୍ରମାଣ ହୋଇଗଲେ ଜିହଲଘର, କିଏ ଆଉ ଅଟକାଇ ପାରିବ ?

ଦାରୋଗା ଗମ୍ଭୀର ଭାବରେ ମୁଣ୍ଡ ହଲାଇଲେ । ଆଉ ପ୍ରମାଣ ଯେ ହୋଇଯିବ, ଏଥିରେ ପୁଣି, କଥା ରହିଲା କୋଉଠି ? ଚୋରୀମାଲ୍ ଯେତେବେଳେ ଖୋଦ୍ ଆସାମୀର କୋଠିତଳୁ ବାହାରିଲା, ଆଉ ବାକିଟା ରହିଲା କ'ଣ ? ଦନେଇ ଦାସଙ୍କର ବକ୍ତୃତା ତଥାପି ଚାଲିଥିଲା – 'ଆଃ କାହିଁକି ଗୋଟାଏ ପାଟିଟା କରୁଚ ମ ! ଇନ୍‌କୁଆରୀ ହେବ, ଷ୍ଟେଟ୍‌ମେଣ୍ଟ ଲେଖା ହେବ ସାକ୍ଷ ପ୍ରମାଣ ସବୁ ନିଆ ହେବ, ମାଲ୍ ବରାମଦ୍ ହେବ, ତେବେ ତ ଯାଇଁ କନ୍‌ଭିକ୍‌ସନ୍ ।" ଦାରୋଗାଙ୍କ ଧମକରେ ସାଫଲ୍ୟର ଆନନ୍ଦରେ ପାଣି ପଡ଼ିଥିବା ଚୂଡ଼ା ଭଳି ଫୁଲି ଉଠୁଥିବା ଦନେଇ ଦାସଙ୍କର ମୁହଁ ମୁହୂର୍ତ୍ତକ ମଧରେ ଭିଜା ମୁଢ଼ି ଭଳି ସେମେଟି ଗଲା ।

ଦାରୋଗାଙ୍କ ମୁହଁରୁ ଅନେକ ଅପରିଚିତ ଶବ୍ଦର ଫୁଲଝରି, ଜନତାକୁ ଭୟାତୁ କରି ପକାଇଲା । ମୁହୂର୍ତ୍ତକ ପାଇଁ ସମସ୍ତେ ଶଙ୍କିତ ହୋଇଉଠିଲେ । କିଏ ଜାଣେ କାହା କପାଳରେ କ'ଣ ଅଛି ?

କୂଳକୁ ଆସି ନାଆ ବୁଡ଼ିଲା ନା' କ'ଣ ? ଦନେଇ ଦାସେ ଶଙ୍କିତ ହୋଇଉଠିଲେ । ଅଭିମାନ କରି ନିଜେ ଖପରାରେ ଖାଇବାକୁ ସେ ମାମ୍‌ଲତ୍‌କାର ହୋଇନାହାନ୍ତି ।

କିଛି ସମୟ ପରେ ତେଣୁ ଦାରୋଗାଙ୍କ କାନ ପାଖରେ ତାଙ୍କୁ ପୁଣି ନଇଁ ପଡ଼ିଥିବାର ଦେଖାଗଲା ।

ଅପେକ୍ଷମାଣ ଜନତା କ୍ରମଶଃ ଅଧୀର ହୋଇ ପଡୁଥିଲେ । ତଥାପି ସୁଲୀଦେଈ ଆସରକୁ ପ୍ରବେଶ କରୁ ନଥିଲା । ଶାମସାହୁଙ୍କ ଆଡୁଆଳକୁ ଡାକି ନେଇ ଦନେଇ ଦାସ ଫୁସ୍‌ଫୁସ୍ କରି କହୁଥିଲେ– "ମାମଲା ବଡ଼ସଂଗୀନ ହୋଇଗଲା ତେମେ ଏବେ ଟିରିଲାଟାକୁ ଏମିତି ମାଇଲ କାହିଁକି ?"

ସାହୁଏ ଉତ୍ତର ଦେଲେ – ମୋର ତ ମୁଣ୍ଡକୁ ପିତ୍ତ ଚଢ଼ିଗଲା, ପକେଇଲି ଚାରିଚାପଡ଼ । ମୋର ଜିନିଷ ହକ ଚୋରିକଲା – ତାକୁ ଦି'ଟା ମାରିଲେ କ'ଣ ଭାସିଗଲା ସେଇଠୁ ?

ଦାସେ ବିରକ୍ତ ହେଲେ ...କି କଥା ଯେ ତମେ ପିଲାଙ୍କ ଭଳି କହୁଚ – ହଯୋ, ଚୋରକୁ ଯଦି ଧରି ତମେ ହାତେ ହାତେ ସାଧ କରି ବସିବ, ତେବେ ସରକାର ଲାଖୁ ଲାଖୁ ଟଙ୍କା ଖରଚ କରି ପୁଲିସ୍ ପୋଷୁଚି କାଇଁକି ? ବୁଝିଲ, ଚୋରକୁ ମାରିବା ଆଇନ୍‌ରେ ମନା !

ସାହୁ ପୁଅ ଚିନ୍ତିତ ହୋଇଉଠିଲେ । ଇଏତ ଭଲା ଫିସାଦ୍‌ରେ ପଡ଼ିଲେ ସିଏ । ଚୋର ବନ୍ଧା ହୋଇ ଥାନାକୁ ଯିବ, ଘନସାଉ ମାଇପ ହାତରେ ହାତକଡ଼ି ତାଙ୍କର ଏଯାବତ୍ ତୃଷିତ ପ୍ରାଣରେ ଅମୃତ ବିନ୍ଦୁ ସିଞ୍ଚନ କରିବ, ଇଏ କୁଆଡ଼େ ଗଲା – ଓଲଟି ସିଏ ନିଜେ ଏବେ ଫୌଦାରୀରେ ପଡ଼ିଲେଣି !

ଦନେଇ ଦାସେ ବେଲଉଣ୍ଡି ହାଙ୍କିଲେ – ଦାରୋଗା ତ ମହାଖପା । କେଶରପୁର ଡାକ୍ତର ଆଣି ସୁଲୀକୁ ମାଇନା କରାଇ ରିପୋର୍ଟ ଧରି ନଟିଆ ଏଇ ଆସିଲା ବୋଲି ଜାଣ !

ଶାମ ସାହୁଙ୍କ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । କାଲି ସଞ୍ଜବେଳେ ଘଟଣାର ଯେଉଁ କାଳ୍ପନିକ ଚିତ୍ରଟି ତାଙ୍କୁ ରୋମାଞ୍ଚିତ କରି ପକାଇଥିଲା, ବନ୍ଦିନୀ ସୁଲୀର ହାତକଡ଼ା ଆଜି ଯେମିତି ଝୁଲି ଝୁଲି ତାଙ୍କ ଆଡ଼କୁ ଆସୁଥିବାର ସେ ସ୍ପଷ୍ଟ ଦେଖି ପାରିଲେ । ଅସହାୟ ଶିଶୁ ମୁଖର କଳ୍ପନାରେ ତାଙ୍କର ଅନ୍ତରାତ୍ମା ଦୁହିଁ ହୋଇଗଲା । ଶାମ ସାହୁ ଦନେଇ ଦାସଙ୍କ ହାତକୁ ଧରି ପକାଇଲେ । ଥର ଥର କଣ୍ଠରେ କହିଲେ – ମୋତେ ଏଥିରୁ ଉଦ୍ଧର ଦାସେ !

ଦନେଇ ଦାସେ ନିର୍ଲିପ୍ତ ଭାବରେ କହୁଥିଲେ....

ସବୁ ଟଙ୍କାର ଖେଳରେ ଭାଇ । ''ପଇସା କ୍ୟା ନ କରେ କାମ୍ ?''

ସାହୁପୁଅ ଉସୁକ ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇଁଲେ । ଦନେଇ ନିଜର ପାଞ୍ଚ ଆଙ୍ଗୁଠି ଦେଖାଇ କହିଲେ – ଦାରୋଗା ହାଙ୍କୁଚି ପୁରା ପାଞ୍ଚ !

ଶାମସାହୁ ବିକଳରେ କହିଲେ, ଏତେ ଟଙ୍କା ମୁଁ କୋଉଠୁ ପାଇବି ଦାସେ ? ଆଠଦିନ ତଳେ ଝୋଟ ବିକିଚି ଟଙ୍କା ଦୁଇଶ ଖଣ୍ଡେ ପଡ଼ିଥିବ । ଧାନ କିଣିବାକୁ ରଖି ଦେଇଥିଲି, ଆଣି ଦେଉଚି, ସେଇଆକୁ ନେଇ ମୋତେ ବଞ୍ଚାଅ, ପିଲାଏ ପଛେ ଭୋକରେ ଗଡ଼ି ମରନ୍ତୁ ।

ସାବଧାନରେ ନୋଟ୍ ବିଡ଼ାଟିକୁ ନାହିତଳେ ଖୋସି ଦେଉ ଦେଉ ଦନେଇ ଦାସେ ସାବଧାନ କରିଗଲେ – ଟଙ୍କା ଗଲେ ପୁଣି ଟଙ୍କା ଆସିବ ସାହୁଏ । ମାନ ଥରେ ଗଲେ, ପୁଲିସ୍ ଥରେ ଛୁଇଁଲେ, ତାକୁ ପୁଣି ଫେରାଇ ଦେବ କିଏ ? ତେମେ କିଛି ଫିକର୍ କରନା – ଖବରଦାର୍ ! ଟଙ୍କା କଥା ଯେମିତି ପାଞ୍ଚ କାନ ନ ହୁଏ । ମୁଁ ଯାଏ ଦେଖେ ତେଣେ । ଶଶୁର ପୁଅ ଯେମିତି ଫଅଁ ଫଅଁ ହଉଚି ନା ଏତିକିରେ ରାଜି ହଉଚି କି ନାଇଁ କିଏ ଜାଣେ ?

ସୁଲୋଚନାଙ୍କୁ ପ୍ରଶ୍ନ–ବାଣରେ ଜର୍ଜରିତ କରି ପକାଇ, ଧମକ୍ ଚମକ୍ ଦେଖାଇ ମଧ ଦାରୋଗା ବାବୁ ତାଙ୍କଠୁ କୌଣସି ସ୍ୱୀକାରୋକ୍ତି ଆଦାୟ କରିପାରୁ ନ ଥିଲେ । କୋଠି ତଳୁ ନୋଟାଟିର ଉଦ୍ଧାର ସମ୍ପର୍କରେ କ୍ରୋଧାରୁଣ ବଦନା ବିପୁଳକାୟା ତାମ୍ବୁଳ ରସପ୍ରିୟା ସୁଲୋଚନା କିନ୍ତୁ ଏକ ଚମକ୍‌ପ୍ରଦ ଖବର କୋର୍ଟକୁ ଦେଲେ । ସେ କହୁଥିଲେ – ଉଣା ମଣିଛ କି ବାବୁ ଏ ବୁଢ଼ୀ କି ? ମୋ ଛାଇ ପଡ଼ିଲେ ତା' ନାହିଁ ତିଏଁ ପରା । ଆଜି ମାଛି ଅନ୍ଧାରରୁ ମୋ ପିଜୁଳି ଗଛ ମୂଳେ ବୁଲୁଥେଲା – ମୁଁ ଭାବିଲି ଅବା ବୁଢ଼ୀ ଲୋକ – ଦି' ଚାରିଟା ବାହୁଡ଼ି – ଅଇଁଠା ପିଜୁଳି ନଉଚି, କାହାରିକି ଆଉ କୋଠି ତଳ ଦୁଶିଲା ନାଇଁ – ବୁଢ଼ୀ ଠିକ୍ ରଖି ଦେଲା ଦେରେ ଚଟ୍‌କରି ବାହାର କରି ଆଣିଲା !

ଗୃହାଙ୍ଗନରୁ ଅନ୍ୟ ଏକ ଗଗନଭେଦୀ ଚିତ୍କାର ଶୁଣାଗଲା । ଜଳାକବାଟି ପାଖ ତକ୍ତପୋଷ ଉପରେ 'ବୁଢ଼ୀ' ଅର୍ଥାତ୍ ଶାମବୋଉ ତାମ୍ବୁଳ ରସର ଅମୃତୋପମରସ ଆସ୍ୱାଦନ କରୁ କରୁ ସ୍ୱଚକ୍ଷୁରେ ସୁଲୀଦେଇଙ୍କର ନିଗ୍ରହ ଦର୍ଶନ କରି ପୁଲକିତ ହେଉଥିଲେ ।

ତାଙ୍କୁ ଏଇ ଅପବାଦ ? ଅସହ୍ୟ....

ବୟସ କିଛିଟା ତାଙ୍କୁ ହୋଇଛି ସତ, ମାତ୍ର ଏଭଳି ପରିସ୍ଥିତିରେ ଚୁପ୍ ଚାପ୍ ପଡ଼ିରହିବା ଭଳି ଅଥର୍ବ ତ ସେ ଆଦୌ ନୁହନ୍ତି । ସମସ୍ତଙ୍କର ସ୍ୱର ଡୁବାଇ ଦେଇ ତାଙ୍କର ସ୍ୱର ଶୁଣାଯାଉଥିଲା ; ଆଲୋ ପୁଅ – ଘଇତା ମୁଣ୍ଡ ଖାଇ ! ଆଲୋ ରାଣ୍ଡ.... ଆଲୋ....

କୋର୍ଟ ପ୍ରାଙ୍ଗଣ ଅଚିରେ ସମର ପ୍ରାଙ୍ଗଣରେ ପରିଣତ ହେବା ଆଶଙ୍କାରେ ଦାରୋଗା ବାବୁ ଧମକାଇଲେ – ଚୋପ୍ ! ଏ ତ ଆଚ୍ଛା ଝାମେଲା ଲଗେଇଲେ ସ୍ତ୍ରୀଲୋକ ଦି'ଟା । ନବଘନ ! ସେମାନଙ୍କୁ ଚୁପ୍ କରାତ !

ଆଜ୍ଞା ମାତ୍ରେ ଠେଙ୍ଗେଣୀଧରା କନେଷ୍ଟବଳ ଭିତରୁ ଜଣେ ଧାଇଁ ଯାଇ ଶାମବୋଉଙ୍କୁ କହିଲା – ଚୁପ୍, ଚୁପ୍ କର ! ବାବୁ ରାଗିଗଲେଣି ।

ଶାମବୋଉ ସେତେବେଳେ ସପ୍ତମରେ । କାଳିସୀ ଲାଗିଲା ଭଳି ବିସ୍ତୃତ ଅଙ୍ଗନର ଚତୁର୍ଦ୍ଦିଗ ଧାଇଁ ବୁଲୁଥାଆନ୍ତି । କନେଷ୍ଟ ବଳର ଆଦେଶ ଏତେ ସହଜରେ ମାନିଯିବେ ? କନେଷ୍ଟବଳ ଆଡ଼କୁ ତୀବ୍ର ଗତିରେ କ୍ଷେପି ଆସୁ ଆସୁ ବୁଢ଼ୀ ତା'ର ମା'ଙ୍କୁ ଉଦ୍ଦେଶ୍ୟ କରି ଅତି ଏକ ଅଶ୍ଳୀଳ କ୍ରିୟାପଦ ବ୍ୟବହାର କରି ଭର୍ତ୍ସନା କଲେ । ଶେଷରେ ସୁଲୋଚନାଙ୍କ କଅଁଳ ମୁହଁ ସହ ଦାରୋଗାଙ୍କର ଏକ ଗୋପନ ସମ୍ପର୍କର ବିବରଣୀ ମଧ ତାଙ୍କ ତୁଣ୍ଡରୁ ବାହାରି ବିଚରା କନେଷ୍ଟ ବଳକୁ ହତଚକିତ କରି ପକାଇଲା ।

ଭାଗ୍ୟକୁ ଘର ଭିତର କଥା ! ଦାରୋଗାବାବୁଙ୍କ କାନରେ ପଡ଼ିଗଲେ, ଚାକିରି ଚାଲିଯିବ । ବିକଳରେ କନେଷ୍ଟବଳ ବୁଢ଼ୀଙ୍କ ଗୋଡ଼ହାତ ଧରିବାକୁ ଲାଗିଲା ।

ଦନେଇ ଦାସେ ଦାରୋଗାଙ୍କ ଇଜ୍‌ଲାସ୍‌ରେ ଜଣେ ସାକ୍ଷୀଙ୍କୁ ଜେରା କରାଉ ଥିଲେ– କହୁନୁ ! ଉପରେ ଧର୍ମ, ତଳେ ଧରିତ୍ରୀ– ସତ କଥା କହିଦେରେ ବାବୁ ! ସୁଲୀ ଯେତେବେଳେ ନୋଟା ଧରି ବାହାରି ଆସିଲା, ତୁ ସେତେବେଳେ କୁଆଡ଼େ ଯାଇଥିଲୁ ?

ସାକ୍ଷୀ ବନାରଣାଙ୍କର ସାମାନ୍ୟ ପାଟି ଲାଗେ – କଥା ଚାଲିଛି ତ ଚାଲିଛି... ଥରେ ରହିଗଲେ, ଘଷରା ରେକର୍ଡ଼ରେ ପିନ୍ ଅଟକିଗଲା ପରି ଶେଷ ବର୍ଣ୍ଣଟି ବାରମ୍ବାର ଉଚ୍ଚାରିତ ହେଉଥାଏ ।

ଦେହସାରା ହୋଇଥିବା ପାଣିଯାଦୁକୁ ରାମ୍ପୁ ରାମ୍ପୁ ସେ କହିଲେ– କେତେ ଫଟେଇ ହଉଚ ମ ! ଥରେ ତ କହିଲି, ସୁଲୀ ଚୋରନେଖା ନୋଟାଟା ବାଁ ହାତରେ ଧରି ଏଣିକି ତେଣିକି ତରଙ୍ଗ ତରଙ୍ଗ ହୋଇ ଅନାଇଁ ଅନାଇଁ ଘର ଭିତରକୁ ପ...ପ...ପ...

''ହଇରେ ହେ ବାଡ଼ିପଡ଼ା'' କହି ନିଜ ପକ୍ଷ ସମର୍ଥନରେ ବାହାରି ଆସୁଥିବା ସୁଲୀ ଦେଇ କିନ୍ତୁ ଦାରୋଗାଙ୍କ ଧମକରେ ଚୁପ୍ ହୋଇଗଲେ ।

ଏଭଳି ଏକ ଉତ୍ତେଜନାପୂର୍ଣ୍ଣ ପରିସ୍ଥିତିରେ ଗୋପମାହାନ୍ତି କିମ୍ବା ନଟବରରେ ଅନୁପସ୍ଥିତି କିନ୍ତୁ ଦନେଇ ଦାସଙ୍କୁ ଉଦ୍‌ଫୁଲ୍ଲ କରୁ ନ ଥିଲା । ସେ ଦୁଷ୍ଚିନ୍ତାଗ୍ରସ୍ତ ହୋଇପଡୁଥିଲେ ମଧ ବାରମ୍ବାର ନିଜ ମନକୁ ସାନ୍ତ୍ୱନା ଦେଉଥିଲେ ।

ସୁଲୋଚନା ଦେଈଙ୍କର ମନୋବଳ ଏଥର ଭାଙ୍ଗି ଭାଙ୍ଗି ଆସୁଥିଲା । ତାଙ୍କର ସନ୍ଧାନୀ ଦୃଷ୍ଟି ବିକଳ ଭାବରେ ଉପସ୍ଥିତ ଜନତା ଉପରେ ବାରମ୍ବାର ଘୂରି ଆସୁଥିଲା ।

ଦାରୋଗା ବାବୁ କୌଣସି ଏକ ନିଷ୍ପତ୍ତିରେ ପହଞ୍ଚିପାରୁ ନ ଥିଲେ । ଥାନାରେ ଥଣ୍ଡା ମସ୍ତିଷ୍କରେ ବସି ନ ଭାବିଲେ, ଏଇ ହୋ ହୋ, ଘୋଘୋ ଭିତରେ କିଛି କରାଯାଇପାରିବ ନାହିଁ । କନେଷ୍ଟବଲଙ୍କୁ ସମ୍ବୋଧନ କରି କହିଲେ, ବରାମଦୀ ମାଲ୍ ଆଉ ଆସାମୀ ସୁଲୋଚନା ଦେଈଙ୍କୁ ଧରି ତମେ ଦୁହେଁ ଥାନାକୁ ଆସ । ସେଇଠି ମୁଁ ଏ କେସ୍ ଫଇସଲା କରିବି ।

ବଜ୍ର ଖସି ପଡ଼ିଲା ଯେମିତି !

ଶାମସାହୁ ନିଜର ଦୁଇଶହ ଟଙ୍କାର ବେଦନା ଭୁଲିଯାଇ ଉଲ୍ଲସିତ ହୋଇ ଉଠୁଥିଲେ । ସୁଲୋଚନା ଏବଂ ତାଙ୍କର ଶିଶୁକନ୍ୟାର ରୋଦନ ଧ୍ୱନି ଆଉ ଉପସ୍ଥିତ ଜନତାର କଳ କୋଳାହଳରେ ଗ୍ରାମ୍ୟ ପଥ ଯେତେବେଳେ ମୁଖରିତ.... ଚରମ ମୁହୂର୍ତ୍ତରେ ଦେଖା ଦେଲେ ଗୋପମହାନ୍ତି । ଧୀର ମନ୍ଥର ପଦକ୍ଷେପରେ ଖଡ଼ମର ଖଟା ଖଟ୍ ଶବ୍ଦରେ ଗ୍ରାମ ପଥକୁ ଶବ୍ଦାୟିତ କରି, ସୁଲୋଚନାଙ୍କ ମନରେ ଆଶାର ଅସୁମାରି ଫୁଲ ଫୁଟାଇ ଗୋପମାହାନ୍ତି ବିଚାରସ୍ଥଳୀ ଆଡ଼କୁ ଆଗେଇ ଆସିଲେ ।

ତାଙ୍କ ମୁଣ୍ଡ ଉପରେ ଛତା ଟେକି ଧରି ଗଳ୍ପ କରି କରି ଆସୁଥିଲେ ନଟବର ।

ବଡ଼ ଆଶ୍ଚର୍ଯ୍ୟରେ ଜନତାକୁ ସମ୍ବୋଧନ କରି ମହାନ୍ତିଏ କହୁଥିଲେ – ଏଠି ସବୁ କ'ଣ ହଉଚି କି ? ଦାରୋଗା ପୁଲିସ୍, କଥା କ'ଣ ?

ନଟବରଙ୍କ ଜିଜ୍ଞାସୁ ଦୃଷ୍ଟି ଜନତା ଉପରେ ଘୂରି ବୁଲୁଥିଲା ।

ବନାରଣା କହୁଥିଲେ – ବାବୁ, ତମେ କ'ଣ ଗାଆଁ...ରେ ନ... ନ... ନ....

ଦନେଇ ଦାସେ ଉତ୍ଫୁଲ୍ଲିତ ବଦନରେ ଗୋପ ମହାନ୍ତିଙ୍କୁ ବିଚାର ମଞ୍ଚକୁ ସ୍ୱାଗତ ଜଣାଉ ଜଣାଉ କହିଲେ – ମୁଁ ତ ଏଇନେ ତମ ପାଖକୁ ଲୋକ ପଠଉ ଥେଲି ଗୋପଭାଇ । ବିଚାରୀ ଘନା ମାଇପଟା କାଇଲି କାମଟାଏ କରି ପକାଇଲା । କ'ଣ କରିବା ? ଆପଣା ଭାଇଟାତ, ଶାମ ସାହୁକୁ କେତେ ବୁଝେଇଲି – ସିଏ କ'ଣ ମାନିଲା । ସକାଳୁ ଯାଇଁ ରିପୋର୍ଟ ଲେଖେଇ ଆସିଲା । ଦାରୋଗା ବାବୁ ତ ସୁଲୀକୁ ଥାନାକୁ ଘୋଷାଡ଼ିଲେଣି... ଆହା ଛୋଟ ପିଲାଟା ତା'ର....

ଦନେଇ ଦାସଙ୍କ କଣ୍ଠର ଅଜସ୍ର କାରୁଣ୍ୟ ସମଗ୍ର ଜନତା ମଧ୍ୟରେ ସଂକ୍ରମିତ ହୋଇଗଲା । ହିଂସା, ଦ୍ୱେଷ, ଈର୍ଷା, ଅସୂୟା ଭୁଲି ମୁହୂର୍ତ୍ତକ ପାଇଁ ଜନତାଙ୍କ ନୟନ ଅଶ୍ରୁସଜଳ, ଦୃଷ୍ଟି ଅଧୋମୁଖୀ ହୋଇଉଠିଲା ।

-"ଚୋରି ?" ଗୋପ ମହାନ୍ତି ଆଶ୍ଚର୍ଯ୍ୟ ହୋଇ ସୁଲୀ ଆଡ଼େ ଅନାଇଁଲେ । ତା' ପରେ ସେ ଠୋ ଠୋ ହୋଇ ହସିବାକୁ ଲାଗିଲେ ।

ଦାରୋଗାଙ୍କ ସମେତ ଉପସ୍ଥିତ ଜନତା ଏଭଳି କି ନଟବର ମଧ୍ୟ ମହାନ୍ତି ପୁଅଙ୍କର ଉଦ୍ଭଟ ଆଚରଣରେ ସ୍ତବ୍ଧ ହୋଇଗଲେ ।

ନଟବର ଅଗତ୍ୟା ଡାକିଲେ – ଦାଦି ! ଗୋପଦାଦି !

ମହାନ୍ତିଏ କହୁଥିଲେ – ହଇରେ ନଟ, ଇଏ କି କଥା ଶୁଣିଲି ଆଜି ? କାଲି ମୁହଁ ସଞ୍ଜବେଳେ କାଳୀକୁତୀଟା ନୋଟାଟାଏ ମୁହଁରେ କାମୁଡ଼ି ଧରି ଘନସାହୁ ଅଗଣା ଆଡ଼କୁ ଗଲା, ତୁ ଆଉ ମୁଁ ପରା ସେତେବେଳେ ଭାଗତଘରକୁ ଯାଉଥିଲେ । ତତେ ମୁଁ କହିନେଇଁ, ଶାମସାହୁର ଦୁଧଦୁହାଁ ନୋଟା ମୁହଁରେ କାମୁଡ଼ି କୁକୁରଟା କୁଆଡ଼େ ଯାଉଛି ବୋଲି ?

ନଟବର ମୁହୂର୍ତ୍ତକ ମଧ୍ୟରେ ସବୁକଥା ବୁଝିଗଲେ । ତାଙ୍କ ମୁହଁକୁ ରକ୍ତଫେରି ଆସିଲା । ବଡ଼ ପାଟିରେ ସମସ୍ତଙ୍କୁ ଶୁଣାଇଲା ଭଳି ସେ କହୁଥିଲେ ଘନ ସାହୁର ଧାନ କୋଠିତଳେ ପାଞ୍ଚୁଟା କୋଦା କୋଦା ଛୁଆ କରିଛି କାଳୀ କୁତୀଟା – ମାଳିଆ ପରା ଆମ ଘରେ ଗୋଟିଏ ଦେଇ ଆସିବ ବୋଲି ପିଲାମାନଙ୍କୁ କହି ଆସିଚି ଯେ, ପିଲାମାନେ ସବୁଦିନେ ନାଚୁଛନ୍ତି, ଦୁଧବାସନା ପାଇ କୁକୁରଟା ନୋଟାଟାକୁ ନେଇ ଧାନ କୋଠି ତଳେ ଭର୍ତ୍ତିକଲା । ବୁଢ଼ାଟିଏ ହେଲଣି ଶାମସାହୁ, ନଖରେ ଛିଣ୍ଡିବା କଥାକୁ ଛୁରି କଟୁରି ଲଗାଇଲା୍ କିବା କଥା ଇଏ ! ଏଇ କଥାକୁ ଥାନା ପୁଲିସ୍ ଏତେ କଥା ?

ଘଟଣାର ଅଦ୍‌ଭୂତ ମୋଡ଼ ଉପସ୍ଥିତ ଜନତାଦାରୋଗା ବାବୁ, ଏଭଳି କି ସ୍ୱୟଂ ଦନେଇ ଦାସଙ୍କୁ ମଧ୍ୟ ସ୍ତବ୍ଧ କରି ପକାଇଲା ।

ବିଚାର ଶେଷ ହୋଇ ଯାଇଥିଲା ।

ରାତ୍ରିର ନିସ୍ତବ୍ଧତାରେ ଝିଙ୍କାରୀର ଏକକ ବିରାମହୀନ ଝିଁ ଝିଁ ଶବ୍ଦ ସାଙ୍ଗକୁ ବୁଲା କୁକୁରମାନଙ୍କର ଚିତ୍କାର କି ଭଳି ଭୌତିକ ଶୁଣାଯାଉଥିଲା ।

ଫରେଷ୍ଟ ଗାର୍ଡ୍‌ବାବୁ ନିଜର ଦୁଇ ଚାରିଜଣ ସାଙ୍ଗପାଙ୍ଗକୁ ନେଇ ଗ୍ରାମର ପ୍ରବେଶ ପଥକୁ ଜଗି କାହାକୁ ଅପେକ୍ଷା କଲାଭଳି ଠିଆ ରହି ବାରମ୍ବାର ହାଇଦର ଅଲ୍ଲୀ ବିଡ଼ି ଫୁଙ୍କୁଥିଲେ, ଆଉ ଅଧୈର୍ଯ୍ୟ ହୋଇ ବାରମ୍ବାର ରାସ୍ତା କଡ଼କୁ ଅନାଉଥିଲେ ।

ଆଦ୍ୟ ଆଷାଢ଼ର ପ୍ରଥମ ବାରିପାତରେ କର୍ଦ୍ଦମାକ୍ତ ଗ୍ରାମପଥ ତଥାପି ଶୁଷ୍କ ହୋଇ ନ ଥିଲା । ବେଙ୍ଗମାନଙ୍କର ଉଚ୍ଛ୍ୱସିତ କୋରସ୍ ସାଙ୍ଗକୁ ମଶା କାମୁଡ଼ାରେ ବିରକ୍ତ ହୋଇ ଗାର୍ଡ଼ବାବୁ ପଟାପଟ୍ ଚାପୁଡ଼ା ପିଟି ଗ୍ରାମ୍ୟ ପରିବେଶ ପ୍ରତି ନିଜର ଅପ୍ରୀତି ଜ୍ଞାପନ କରୁଥିଲେ ।

ମାଗୁଣି ବାରିକ କହୁଥିଲେ ଯାହା କହନା ସେଠି ପୁଅ, ଫରେଷ୍ଟର ବାବୁ ଗାଁରେ ରହିବାଦିନୁ ନାଲ – ଭାଜିଟିକିଏ ପାଟିରେ ବାଜୁଛି....

ସେଠି ପୁଅ ନିଚ୍ଛିଦ୍ର ଅନ୍ଧକାର ମଧ୍ୟରେ ବି ନିର୍ଷର୍ମା ବସି ରହି ନଥିଲେ, ଠକ୍ ଠକ୍ କରି ପିମ୍ପୋଇ ଗୁଆକାତିରେ ଗୁଆ ଭାଙ୍ଗୁ ଭାଙ୍ଗୁ କହୁଥିଲେ– ଏ କଥା ଆଉ ପଚାରିବାକୁ ?

ଦୁଇ ବନ୍ଧୁଙ୍କର ସୋଚ୍ଚାର ପ୍ରଶଂସା ନୀରବରେ ଗ୍ରହଣ କରିସାରିବା ପରେ ଫରେଷ୍ଟର ବାବୁ ସରକାରୀ ମହଲ୍‌ରେ ତାଙ୍କର ସୀମାହୀନ ପ୍ରତିପତ୍ତି, ଅଚିରେ ବଡ଼ସାହେବ ହୋଇ ତାଙ୍କର ସ୍ଥାନାନ୍ତର ଗମନ ପ୍ରଭୃତି ସମ୍ବାଦ ଗୋଟିକ ପରେ ଗୋଟିଏ ବିମୁଗ୍ଧ ଭକ୍ତମଣ୍ଡଳୀ ଭିତରକୁ ଅବହେଳାରେ ଫିଙ୍ଗି ଦେଉଥିଲେ, ଆଉ କ୍ଷୁଦ୍ର ଜନତାର ହୃଦୟ ଦୁଃଖରେ ଭାଙ୍ଗି ପଡୁଥିବାର ଜଣା ଯାଉଥିଲା ।

ବିରକ୍ତିକର ! ଘୋର ଦାୟିତ୍ୱହୀନତାର ପରିଚାୟକ !

ପରିଆ ଟୋକା ସାଢ଼େ ତିନିଘଣ୍ଟା ବେଳୁ ଶଗଡ଼ ନେଇ ଲଟାକୁ ଯିବାର ଗୋପନ ସମ୍ବାଦ ଦନେଇଦାସଙ୍କ ଲୋକ ଠାରୁ ପାଇବା ପରଠାରୁ ଏକ ପ୍ରାପ୍ତି ଆଶାରେ ଫରେଷ୍ଟର ବାବୁ ସନ୍ଧ୍ୟା ପରଠାରୁ ଘାଟ ଜଗି ବସିଛନ୍ତି ।

ଅଥଚ ପରିଆ ? ତାକୁ କ'ଣ ବାଘ ଖାଇଗଲା ।

ଅବଶେଷରେ ଦୀର୍ଘ ବିରକ୍ତିକର ପ୍ରତୀକ୍ଷା, ଭୀତିଜନକ ଆଶଙ୍କା, ଆଉ ଘୋର ନୈରାଶ୍ୟର ଅବସାନ ଘଟାଇ ଦୂରରୁ ବଳଦଗାଡ଼ିର ହୃଦୟ ଉଲ୍ଲାସକାରୀ କେଁ କଟର ଶବ୍ଦ ଶୁଣାଗଲା ।

ନିଶ୍ଚୟ ପରିଆ ! ବାପଧନ, ଏତେଦିନେ ଫାନ୍ଦେ ପଡ଼ିଚ ଧରା ! ଏଥର ଆଉ କୋଉ ବୋପାଟି ପିଠିରେ ପଡ଼ିବ ପଡୁ !

ମାଗୁଣି ବାରିକେ ଉଲ୍ଲସିତ ହୋଇ ଡେଇଁପଡ଼ିଲେ ।

ଗାଡ଼ି ପାଖକୁ ଆସିଲା ।

ସେଠି – ପୁଅ ଯଥାସମ୍ଭବ ଆଫିସିକ ଗାମ୍ଭିର୍ଯ୍ୟ ଫୁଟାଇ ଦାୟିତ୍ୱପୂର୍ଣ୍ଣ ଗଳାରେ ହାଙ୍କଦେଲେ – କିଏ, ଏତେ ରାତିରେ କିଏ ଯାଉଚ ହୋ ?

ଗାଡ଼ିଆଡୁ ମଧ୍ୟରାତ୍ରିର ମୃତ୍ୟୁତୁହୀନ ନୀରବତା ଛଡ଼ା ଜୀବନର ଅନ୍ୟ କୌଣସି ଲକ୍ଷଣ ଦେଖାଯାଉ ନଥିଲା ।

ମାଗୁଣି ବାରିକ ଦୁଇପାହୁଣ୍ଡ ଆଗକୁ ଖେପିଯାଇ ଗର୍ଜନ କଲେ, ହଇରେ ହେ ମଗରା – କିଏ ବା ତୁ ? ପଚାରିଲେ ନବାବ୍ ପୁଅର ଜବାବ୍ ନାହିଁ ।

ତଥାପି ଅଥର୍ବଯାନରେ ଆଧ୍ୟାତ୍ମିକ ପ୍ରଶାନ୍ତି ।

ଅସହ୍ୟ ! ଘୋର ଅସହ୍ୟ ! ଫରେଷ୍ଟର ବାବୁଙ୍କ ପଦମର୍ଯ୍ୟାଦାଜନିତ ସରକାରୀ ରକ୍ତ ଟଗ୍‌ମଗ୍ ହୋଇ ଫୁଟିବାକୁ ଲାଗିଲା । ତେଣୁ ଓଡ଼ିଆ ଛାଡ଼ି ଏକେବାରେ ହିନ୍ଦୀ ଧରି ସେ ଯୁଦ୍ଧ–ଡାକରା ଦେଲେ – କୌନ୍ ହେ ବେ ଶାଲା ? ଭୋଷ୍‌ଡ଼ିକା ବଚ୍ଚା....

ଗାଡ଼ିରେ ପରିଆ ହିଁ ଥିଲା । ଗ୍ରାମ୍ୟ ରାଜନୀତିର ସମସ୍ତ ଗୋପନୀୟତା ତାକୁ ଅଜଣା ନୁହେଁ, ସେ ପୁଣି ଖୋଦ୍ ଗୋପମହାନ୍ତିଙ୍କ ତାଲିମ୍ ଦିଆ, ଏଇଆକୁ ଡରିଯିବ, ଏତେ ପତଳାକଲିଜା ତା'ର ନୁହେଁ ।

ତଥାପି କଥାଟା ସରକାରୀ ଲଗା । ତେଣୁ ଏହି ସ୍ଥାନଛାଡ଼ି ଅନ୍ଧକାର ମଧ୍ୟରେ ଗୋପ ମାହାନ୍ତିଙ୍କୁ ସମ୍ବାଦଟା ଦେବା ପାଇଁ ଧାଇଁ ଯିବା ଉଚିତ ହେବକି ନାହିଁ ସ୍ଥିର କରି ପାରୁ ନ ଥିଲା ।

ଏତିକିବେଳେ ଫରେଷ୍ଟର ବାବୁଙ୍କ ଖୋଲ୍‌ଟି ବୋଲିଟେ ତା'ର ମୁଣ୍ଡ ଚରମ ହୋଇଗଲା । ତୁ– ଘୁଷୁଡ଼ି ! ତୋ ବୋପା ଘୁଷୁଡ଼ି ! ମେତେ କ'ଣ ଦେରେ ପାଉଲୁ କିରେ ? ଏହାପରେ ପରେଶଚନ୍ଦ୍ର ଯେଉଁ ଗ୍ରାମ୍ୟ ବିଶେଷଣଟି ପ୍ରୟୋଗ କଲେ ସାଧୁ ଭାଷାରେ ଭଗିନୀ – ଉପଗତ ବ୍ୟକ୍ତିଙ୍କୁ ହିଁ ତାହା ବୁଝାଇଥାଏ ।

ମାଗୁଣି ଉଦାର ହେଲେ, କିଏ ପରିକିରେ ? ଏତେ ରାତିରେ କୁଆଡୁ ଆଉଲୁ ବା ? ମହାନ୍ତି ଘର ଧାନ କୁଟିବାକୁ ନେଇଥେଲୁ କି ?

ସାମାନ୍ୟ ଜଣେ ଗ୍ରାମ୍ୟ ଭୃତ୍ୟଠାରୁ ଏଇଭଳି ଭାଷାରେ ଭର୍ତ୍ସିତ ହେବାପରେ ଫରେଷ୍ଟର ବାବୁଙ୍କ ମୁଣ୍ଡ ଠିକ୍ ରହିବା ସମ୍ଭବପର ନୁହେଁ ।

ସେ ତତ୍‌କ୍ଷଣାତ୍ ପରିଆକୁ ଗାଡ଼ିରୁ ଘୋଷାଡ଼ି ଆଣି ଗର୍ଜ୍ଜନ କରିବାକୁ ଲାଗିଲେ – ଶଳା ଚୋର ! ସରକାରୀ ଜଂଗଲରୁ କାଠ ଚୋରିକରି ପୁଣି ମୁହଁ ଟାଣ ଦେଖାଉଚି ! ତୋତେ ସବଂଶେ ନ ବନ୍ଧେଇଲେ ମୁଁ ଗୋଟାଏ....

ବୁଝାଯାଉ ଥିଲା ଅଭିଧାନ ବର୍ହିଭୂତ ଶବ୍ଦ ପ୍ରୟୋଗରେ ଏଡ଼େ ବଡ଼ ସମ୍ଭ୍ରାନ୍ତ ଫରେଷ୍ଟ ଅଫିସର୍ ମଧ୍ୟ ଦବି ଯିବେ ନାହିଁ ।

ଆଇଁଷର ସୁଗନ୍ଧରେ ବିରାଡ଼ି ଧାଇଁ ଆସିଲା ପରି ଅନ୍ଧକାର ଗର୍ଭରୁ ହଠାତ୍ ଆତ୍ମପ୍ରକାଶ କଲେ ଦନାଇ ଦାସ ।

ପରିସ୍ଥିତିକୁ ବୁଝି ନେବାକୁ ତାଙ୍କ ଭଳି ଲୋକଙ୍କୁ ବେଶି ସମୟ ଲାଗିଲା ନାହିଁ । ମହାନ୍ତି ପୁଅଙ୍କ ଚୁଟିକୁ ନିଜ ହାତ ମୁଠାରେ ପାଇ ଦନେଇଙ୍କ ଭଳି ଲୋକ ନିଜର ଉଲ୍ଲାସକୁ ଚାପି ରଖିପାରିଲେ ନାହିଁ ।

ହେଲା ବା ଚାକର ! କାନ ଟାଣିଲେ ମୁଣ୍ଡ ତା'ର ଆପେ ଆପେ ଆସିବ ନାଇଁ କି ? ଏଥର କୋଉ ସୋଇଁ ଘର ବାଟେ ଯିବ ପୁଅ ?

ଗମ୍ଭୀର ଭାବେ ପରିଆ ପାଖକୁ ଯାଇ ଦନେଇ କହୁଥିଲେ – କଥାଟା ବଡ଼ ନାକରା ହୋଇଗଲା ପୁଅ । ସରକାରୀ ମାମଲା.... ତୁ ଏମିତି ଘୁଅଖିଆ କାମ କରୁଥେଲୁ କାଇଁକି ?

ସେଠି – ପୁଅ ଜବାବ୍ ଦେଲେ–ତା'ର କି ଦୋଷ ? ଗୋପିଆ ତାକୁ ଜବରାଣରେ ପଠେଇ ଦେଇ ନ ଥବ କି ?

ପରିଆ ନୀରବ ।

ଦନେଇ କହୁଥିଲେ–ଆଉ ଚୁପ୍ ହୋଇ ରହିଲେ ହବ କ'ଣ ? ଗୋପ ଭାଇକୁ ଖବର ଦେ–ସିଏ ଆସି ଯାହା ହେବାର କରନ୍ତୁ ପଛେ ।

ପରିଆ ତଥାପି କିଛି କହୁ ନାହିଁ ।

ଦନେଇ ତାକୁ ସାମାନ୍ୟ ଆଡୁଆଳକୁ ଡାକିନେଲେ । ଫୁସ୍ ଫୁସ୍ କରି କହୁଥିଲେ – ଫରେଷ୍ଟର ଲାଗିଲାଣି, ତତେ ଜିହ୍ଲ ନ ଦେଇ ଛାଡ଼ିବ ? ପର ବଳେଇ ମୁଣ୍ଡକୁ ନେବାକୁ ତୋର କି ବିଶ୍ ? ତୁ ସିଧା ସିଧା ସତ କଥାଟା କହି ଦଉନୁ।

ପରିଆ କହିଲା – ମହାନ୍ତିଏ ମତେ ପଠେଇ ନାହାନ୍ତି ।

ଦନେଇ ଦାସ ଖୁକ୍ ଖୁକ୍ କରି ହସିଲେ । କହିଲେ, ତା' ହେଲେ ତ ତୋ ଭଳି ନିମକସଚ୍ଚା ଚାକରର ବିପଦ ଆହୁରି ବଢ଼ିଲାରେ ପୁଅ, ବାଘ ଧରିଲେ ଯାହା ସରକାର ଧରିଲେ ତାହା....

ପରିଆ ଚିନ୍ତାକଲା । ମହାନ୍ତି ପୁଅଙ୍କୁ ଏଇ ସାମାନ୍ୟ ଘଟଣାରେ ଜଡ଼ାଇ ତାଙ୍କର ମାନସମ୍ମାନ ମାଟିରେ ମିଶେଇ ଦେବାକୁ ତା'ର ମାୟା ହେଉଥିଲା । ଯେତେହେଲେ ତାଙ୍କରି ଦାନା ଖାଉଚି ତ ! କ'ଣ ବା କରି ପକେଇବେ ଏମାନେ ? କୁକୁର ଆଡ଼କୁ ହାଡ଼ ଖଣ୍ଡେ ପକେଇଦେଲେ ଯଥେଷ୍ଟ ।

ପରେଶ ଚନ୍ଦ୍ର ଦନେଇଙ୍କୁ ସେ ବିଷୟରେ ହିଁ ଇଙ୍ଗିତ ଦେଲେ । ଦନେଇ କହିଲେ ବଡ଼ ଅଡୁଆରେ ପକେଇଲୁ ତୁ । ନାହିଁ ନାହିଁ ଯଦି ମୋତେ ଧରି ପକାଇଲା ତ କଥା ସଇଲା । ଯେତେହେଲେ ତୁ ଗାଁ ପୁଅ, ତୋତେ ତ ଆଉ ଫୋପାଡ଼ି ଦେଇପାରିବି ନାହିଁ । ଯାହା ହେବାର ହେଉ ପଛକେ....

ଏହାପରେ ଏକ ଉଚ୍ଚଦ୍ୱିପାକ୍ଷିକ ଆଲୋଚନାରେ ଯୋଗ ଦେବାକୁ ଦନେଇ ଆହୁରି ଆଡୁଆଳକୁ ଛୁଟିଲେ । ଏପଟ ସେପଟ, ସେପଟ ଏପଟ ଦୁଇଚାରି ଥର ହେବା ପରେ ଦନେଇ ଉଭୟ ପକ୍ଷକୁ ଏକ ଗ୍ରହଣୀୟ ରାଜିନାମାରେ ପହଞ୍ଚେଇ ଦେଲେ ।

ଅନ୍ଧକାର ଭିତରେ କିଛି ନୂଆ ନୋଟର ହାତବଦଳ ମାଧ୍ୟମରେ ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇଗଲା ।

ପଟ୍ଟପତନ ହେଲା ।

ସେଇ ରାତିରେ ଗୋପ ମହାନ୍ତିଙ୍କୁ ନିଦରୁ ଉଠେଇ ଦନେଇ ଦାସେ କହୁଥିଲେ - ଖାଲି ମୋରି ଖାତିର୍‌ରେ! ବୁଝିଲ ଗୋପଭାଇ । ନ ହେଲେ ଫରେଷ୍ଟର ବାବୁ ଯେମିତି ପାଚି ନାଲ୍ ହୋଇ ଯାଇଥେଲା ନା, ପରିଆର କଥା ତ ସରିଥିଲା । ତା' ସହିତ ତମେ ବି କୋଟକୁ ଘୋଷରା ହୋଇଥାଆନ୍ତ...

ଗୋପ ମହାନ୍ତି କିନ୍ତୁ ଆକାଶରୁ ପଡୁଥିଲେ । ତୁ କ'ଣ କହୁଚୁ ଜନାର୍ଦ୍ଦନ ! ମୁଁ ପଠେଇଥିଲି କାଠ ପେଇଁ ପରିଆକୁ ? ଏଇକଥା ସିଏ କହିଲା ?

ଦନେଇ ମନେ ମନେ ହସି କହିଲେ - କହିଲା ଆଉ କୋଉଠୁ ?

ଗୋପମହାନ୍ତି କହୁଥିଲେ - ଭଉଣୀ ଘରକୁ ଯିବ ବୋଲି କହି ଦିନ ତିନଟା ବେଳୁ ଏଠୁ ଗଲାଣି ।

ଦେବୀ ଦେଖିବାକୁ  ଭଉଣୀ ଆସିବ, କହିବାରୁ ମଥୁରି ସାହୁ ଘର ଶଗଡ଼ଟା ବି ଅଣେଇ ଦେଲି । ସିଏ ଏବେ ଏଇଆ କରୁଚି  !! ଭଗବାନ ହେ....

ଦନେଇ କହିଲେ– ତମର କଥା ସରିଯାଇ ଥିଲା ଗୋପଭାଇ  ! ଦଇବ ଦୁର୍ବଳକୁ ମୁଁ ସେଠି ପହଞ୍ଚିଯିବାରୁ ଫଳେପୁଷେ ସନ୍ତୁଷ୍ଟ କରି ଘଟଣାର ଫଏସଲା କଲି ।

ଦନେଇ ପାଞ୍ଚ ଆଙ୍ଗୁଠି ମୂଳରୁ ଭାଙ୍ଗି ଗୋପ ମହାନ୍ତିଙ୍କୁ ଦେଖାଇଲେ ।

ମହାନ୍ତିଏ ବଡ଼ ସନ୍ତୁଷ୍ଟ ହେଲେ  । ଦନେଇଙ୍କର ଲୋକୋପକାର ପ୍ରବୃତ୍ତିର ହଜାର ଗଣ୍ଡା ପ୍ରଶଂସା କଲେ  । ମଗରା ପରିଆ ଜେଲ୍ ଯାଇଥିଲେ ଭଲ ହୋଇଥାଆନ୍ତା ବୋଲି ନିଜସ୍ୱ ମନ୍ତବ୍ୟ ଦେଇ ଘଟଣା ସହ ନିଜର ସମ୍ପର୍କକୁ ବିନୟର ସହ ଅସ୍ୱୀକାର କରିଗଲେ  ।

ବିଦାୟ ନେବା ପୂର୍ବରୁ ଦନେଇ ଦାସେ, ଏଣିକି ସାବଧାନ ହୋଇ ରହିବାକୁ ଗୋପବାବୁଙ୍କୁ ବିନୀତ ଅନୁରୋଧ ଜଣାଇଗଲେ  ।

ଗୋପ ମହାନ୍ତି ନୀରବରେ କିଛିକ୍ଷଣ ପାଇଁ ବସି ରହିଲେ  । ତାଙ୍କର ଦାନ୍ତ କଡ଼ମଡ଼ କରି ଉଠିଲା – ଶୁଣାଗଲା, ଆଚ୍ଛା  !

ଗ୍ରାମର ପଥରେ ସର୍ବଜନ ସମକ୍ଷରେ ଶାମ ସାହୁ ଦନେଇ ଦାସଙ୍କ ବେକରେ ଗାମୁଛା ପକେଇ ଚିତ୍କାର କରୁଥିଲେ, ଶଳା ଘରଭଙ୍ଗା ଟାଉଟର  ! ମୃଦଙ୍ଗର ଦି'ପଟରେ ହାତ ପକେଇ ନୀଳା ଲଗେଇଚୁ ନା  ? ବାହାର କରୁଚି ତୋ ନେତାଗିରୀ... ପକା ମୋ ଟଙ୍କା...

ଗୋପ ମହାନ୍ତି ଖଡ଼ମ୍‌ର ଖଟାଖଟ୍ ଶବ୍ଦରେ ଗ୍ରାମ ପଥ ମୁଖରିତ କରି କରି ଆସର ଆଡ଼କୁ ଆସୁଥିବାର ଦେଖାପଡ଼ିଲେ  ।

ଆଜିଠାରୁ ଦଶହରା ଉତ୍ସବର ଆରମ୍ଭ । ବର୍ଷକେ ଥରେ ମାଆ ପୁନର୍ବାର ନିଜର ସନ୍ତାନମାନଙ୍କୁ ଦେଖିବା ନିମନ୍ତେ ଆସୁଛନ୍ତି  ।



# ବାସାଂସି ଜୀର୍ଣ୍ଣାନି

"ଦାଁଡ଼ାଓ ପାନ୍ଥ ହେଥାଏ ଖାନିକ୍, ରାଖିଓ ନୟନ ସମାଧିପରେ । ଜଗତ ଯାହାରେ ଚିନିଲାନି, ତାରେ ମୃତ୍ୟୁ ବରିଲା ଆପନ କରେ–"

ଉପରୋକ୍ତ ଉଦ୍ଧୃତି ସହ ଦେଶର ବିଖ୍ୟାତ ଦୈନିକ ସମ୍ବାଦ ଛାପିଥିଲେ....

"ଆମ୍ଭେମାନେ ବଡ଼ ଦୁଃଖର ସହିତ ଜଣାଉଛୁ ଯେ, ଗତ ତା ୩।୫।୬୯, ରାତି ସାଢ଼େ ଦୁଇଟାରେ ଦେଶର ଜଣେ ବିଶିଷ୍ଟ ବ୍ୟକ୍ତି ଶ୍ରୀଯୁକ୍ତ ସର୍ବଦମନ ମହାନ୍ତିଙ୍କର ପରଲୋକ ହୋଇଯାଇଛି । ଶ୍ରୀ ମହାନ୍ତି ଜଣେ ବିଚକ୍ଷଣ ଶାସକ ରୂପେ ଏହି ଅନୁନ୍ନତ ଦେଶର ଭୂସଂସ୍କାର ଆରମ୍ଭ କରିଥିଲେ। ବିଭିନ୍ନ ପରିସ୍ଥିତିରେ ଆମ୍ଭେମାନେ ଶ୍ରୀଯୁକ୍ତ ମହାନ୍ତିଙ୍କର ସଂସ୍ପର୍ଶରେ ଆସିଛୁ ଏବଂ ତାଙ୍କର ବିଭିନ୍ନ ସଦ୍‌ଗୁଣର ପରିଚୟ ପାଇଛୁ । ଜଣେ ସୁବକ୍ତାଭାବରେ ତାଙ୍କର ନାମ ଥିଲା । ଶ୍ରୀ ମହାନ୍ତି ଥିଲେ ଜଣେ ସୁଲେଖକ

ଶ୍ରୀଯୁକ୍ତ ମହାନ୍ତି ବିପତ୍ନୀକ ଥିଲେ – ଆମ୍ଭେମାନେ ସ୍ୱର୍ଗୀୟ ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ତାଙ୍କର ଶୋକସନ୍ତପ୍ତ ପରିବାରକୁ ଗଭୀର ସହାନୁଭୂତି ଜଣାଉଛୁ –"

××× ତାଙ୍କର ବିୟୋଗରେ ଦେଶ ଜଣେ ଅଭିଜ୍ଞ ଶାସକ, ସୁବକ୍ତା ଏବଂ ସୁସାହିତ୍ୟିକଙ୍କୁ ହରାଇଲା–

ସେ ଏକ ଶାନ୍ତ ବିଷଣ୍ଣ ସାୟାହ୍ନ... ଶୂନ୍ୟମନରେ ଆକାଶକୁ ଅନାଇ ପୋର୍ଟିକୋର ଗାର୍ଡ଼େନ୍ ଚେୟାରରେ ବସିରହିଥିଲି ମୁଁ – ଆଗରେ ଟିପୟରେ ଅଧା ଖିଆ ଚା କପ୍ – ବୈଶାଖ ଦିନାନ୍ତର କମନୀୟତା ମଧ୍ୟାହ୍ନର ଭୀଷଣତାରେ ପରିଣତ ହୋଇଥିଲା – ଶ୍ରୀଯୁକ୍ତ ମହାନ୍ତିଙ୍କର ଲମ୍ବା ଲମ୍ବା ମୂର୍ତ୍ତି ବିଭିନ୍ନ ଆକାରରେ, ବିଭିନ୍ନ ଭଙ୍ଗୀରେ ମୋ ଚାରିପଟେ ଘୂରି ବୁଲୁଥିଲେ... ହାତର ସିଗାରେଟ୍ ଜଳିଯାଉଥିଲା...

ଜଳୁଥିଲା ସେଇ ବୈଶାଖର ଦୀର୍ଘ ବିଳମ୍ବିତ ସାୟାହ୍ନର ଆକାଶ.... ରକ୍ତପଳାଶର ସମସ୍ତ ନିର୍ଯ୍ୟାସ ନେଇ ହୋରି ଖେଳୁଥିଲା ପଶ୍ଚିମ ଦିଗନ୍ତ....

ଅନେକ ଦିନରୁ ଶ୍ରୀଯୁକ୍ତ ମହାନ୍ତିଙ୍କର କୌଣସି ଖବର ମୁଁ ପାଉ ନ ଥିଲି - ବର୍ଷରେ ସାତଖଣ୍ଡ ଚିଠି ସେ ମୋତେ ନିୟମିତ ଲେଖୁଥିଲେ - ପ୍ରତି ଦୁଇମାସରେ ଖଣ୍ଡେ ଲେଖାଏଁ ଏବଂ ମୋର ଜନ୍ମ ଦିନରେ ଆଉ ଖଣ୍ଡେ...

ତାଙ୍କ ସହ ପରିଚିତ ହେବା ପରଠାରୁ କେବେହେଲେ ଏହାର ବ୍ୟତିକ୍ରମ ହୋଇନାହିଁ - ଅଥଚ ଏ ମାସରେ ତାଙ୍କର ଚିଠି ଆସିବା ସମୟ ଅତିକ୍ରାନ୍ତ ହୋଇ ଯାଇଥିଲା - ଭାବୁଥିଲି କାର୍ଯ୍ୟବ୍ୟସ୍ତ ଥିବେ - ସମୟ ପାଇଲେ ନିଶ୍ଚୟ ଖବର ଦେବେ ।

ସେଇ ଖବର ଆଜି ଆସିଛି - ଏକେବାରେ ଚରମ ଖବର - ହୁଏତ ଦେଶବାସୀ ତାଙ୍କୁ ଭୁଲିଯିବେ - ହୁଏତ ଏ ଦେଶର ତରୁଣ ପ୍ରଥମ କେତେବର୍ଷ ତାଙ୍କର ଶ୍ରାଦ୍ଧ ବାସରରେ ଦୈନିକ ପତ୍ରିକାରେ ପ୍ରକାଶିତ ପାଂଶୁଳ ଛବି ଉପରେ ମୋଟା ଗେଣ୍ଡୁଫୁଲର ମାଳ ଚଢ଼ାଇ, ଆଗରେ ଧୂପଝୁଣା ଜାଳି, ତାଙ୍କର ଥିବା ନ ଥିବା ସଦ୍‌ଗୁଣ କୀର୍ତ୍ତନ କରିବେ-

ସେ କେବଳ ବର୍ଷରେ ଦିନେ-

ତାପରେ ସମସ୍ତେ ତାଙ୍କୁ ଭୁଲିଯିବେ...

ଭୁଲିଯିବା ଉଚିତ - କୋଟି କୋଟି ମଣିଷଙ୍କ ଭିତରୁ ଶ୍ରୀଯୁକ୍ତ ମହାନ୍ତି ବି ତ ଜଣେ ସାଧାରଣ ମଣିଷ - ସେ କିଛି ଗାନ୍ଧୀ, ଗୋପବନ୍ଧୁ ନ ଥିଲେ ଯେ, ଜାତି ତାଙ୍କୁ ଯୁଗ ଯୁଗ ଧରି ମନେ ରଖିବ, ପୂଜା କରିବ ବା ନିତାନ୍ତ ପକ୍ଷେ ଏଇ ଧର୍ମନିରପେକ୍ଷ ରାଷ୍ଟ୍ରର କୌଣସି ଏକ ନିର୍ଜନ ପ୍ରାନ୍ତରେ, ଗୋଟିଏ ଆଶ୍ରମ ସ୍ଥାପନ କରି ଏକ ଦୀର୍ଘ (ନୀତିଦୀର୍ଘ ମଧ୍ୟ ହୋଇପାରେ) ଦାଢ଼ି ରଖି ଖଡ଼ମ ମାଡ଼ି କେବଳ ସାତ୍ତ୍ୱିକ ଭାବର ଛଳନା କରି, ଯଦି ସେ ଭଜନ ପୂଜନର ସୁଆଙ୍ଗ ରଚି ଥାଆନ୍ତେ, ତେବେ ମଧ୍ୟ ତାଙ୍କର ସେଇ ନଧର ଚେହେରାର ବିଭିନ୍ନ ଭଙ୍ଗୀର ଫଟୋ ଘରେ ଘରେ ପୂଜା ପାଉଥାଆନ୍ତା....

ମାତ୍ର ହତଭାଗ୍ୟ ସେତକ ମଧ୍ୟ କରିଯାଇ ପାରିନାହାନ୍ତି - କିଏ ବା ତାଙ୍କୁ କାହିଁକି ମନେରଖିବ ?

ତେବେ ସେ କ'ଣ ସତରେ ସାଧାରଣ ଥିଲେ ? ଅସାଧାରଣତ୍ୱର କୌଣସି ଲକ୍ଷଣ ତାଙ୍କଠାରେ ନ ଥିଲା ?

ଆସନ୍ନ ସନ୍ଧ୍ୟାର ନିସ୍ତୁମ ନୀରବତାକୁ ପକ୍ଷଚାଳନାର କ୍ଷୀଣ ଶବ୍ଦରେ ଭଗ୍ନ କରି କରି ଉଡ଼ିଚାଲିଥିଲା ଏକ ନିଃସଙ୍ଗ ବଳାକା... ସମ୍ପୂର୍ଣ୍ଣ ଏକାକୀ...ଗତି ଧୀର ମନ୍ଥର...

ଘୋର ରକ୍ତ ବର୍ଣ୍ଣର ପୃଷ୍ଠଭୂମିକାରେ ତାର ଶ୍ୱେତ ଶୁଭ୍ରବପୁ ଦେଖାଯାଉଥିଲା ମୋଞ୍ଚାଏ ପିଞ୍ଜା ତୁଳାଭଳି....

ସେଦିନ ମଧ ଠିକ୍ ଏଇମିତି ଏକ ଉଦାସ ସନ୍ଧ୍ୟାରେ ଶ୍ରୀଯୁକ୍ତ ମହାନ୍ତି ଆଉ ମୁଁ ଏକ ଅନାମଧେୟ ପ୍ରଦେଶର ତତୋଽଧିକ ଏକ ଅନାମଧେୟ ଗିରିନଦୀ ପୁଳିନରେ ବୁଲୁଥିଲୁ–

ମୋତେ ଅନାଇ ଶ୍ରୀଯୁକ୍ତ ମହାନ୍ତି କହୁଥିଲେ, ''କିନ୍ତୁ ମୁଁ ତୁ ତୁମଠୁ ଏହା ଆଶା କରି ନ ଥିଲି ଦାସ, ବିଂଶ ଶତାବ୍ଦୀର ୟଙ୍ଗମ୍ୟାନ ତୁମେ bogus ଉପନିଷଦୀୟ ଧାରଣା ନେଇ ଜୀବନର ସବୁଠୁ ରଙ୍ଗୀନ ମୁହୂର୍ତ୍ତଗୁଡ଼ିକ ଅପଚୟ କରିଯିବ, ଏଭଳି ନିର୍ବୋଧତା ଅନ୍ତତଃ ତୁମଠାରେ ଶୋଭା ପାଏ ନାହିଁ – ଖାଅ, ପିଅ – ନାଚ – ଗାଅ– ଫୁର୍ତ୍ତିକର – ଆଜିର ଏ ରାତି ପୁଣି ଫେରିବ ନାହି My boy...

ମୁଁ ପ୍ରତିବାଦ ଜଣାଇ କହୁଥିଲି, ... ''କିନ୍ତୁ ସାର୍, .... ହଠାତ୍ ଆକାଶର ଏକ ପ୍ରାନ୍ତକୁ ନିର୍ଦ୍ଦେଶ କରି ମି. ମହାନ୍ତି କହୁଥିଲେ ଦେଖୁଛ ଦାସ, ଏ ନିର୍ବୋଧ ପ୍ରାଣୀକୁ । ବିଶ୍ୱ ସଂସାରରେ ଏତେ ଆନନ୍ଦ, ଏତେ ବିଳାସ ! ଏତେ ପ୍ରାଚୁର୍ଯ୍ୟ – ସେଥିରେ କିନା ଏଇ ବୋକାଟା ଏପରି ଏକ ମଧୁର ସନ୍ଧ୍ୟାରେ ଏକା ଏକା ଘୂରି ବୁଲୁଛି... ।

ଶ୍ରୀଯୁକ୍ତ ମହାନ୍ତିଙ୍କର ନିର୍ଦ୍ଦେଶାନୁଯାୟୀ ମୁଁ ଆକାଶର ସେଇ ପ୍ରାନ୍ତକୁ ଅନାଇଥିଲି – ଯେଉଁଠି କି ଏକ ନିଃସଙ୍ଗ ବଳାକା ପକ୍ଷ ବିସ୍ତାର କରି ଦିଗ୍‌ବଳୟ ଆଡ଼େ ଉଡ଼ି ଚାଲିଥିଲା ।

ଉତ୍ତେଜିତ ହୋଇ ଶ୍ରୀଯୁକ୍ତ ମହାନ୍ତି ପୁଣି କହୁଥିଲେ– ''ଏଭଳି ନିର୍ବୋଧର ବଞ୍ଚି ରହିବାର କୌଣସି ଅଧିକାର ନାହିଁ – ତାର ମରିଯିବା ବରଂ ଭଲ...ମୁଁ ତାକୁ ମାରିଦେବି...''

ମୁଁ କିଛି ପ୍ରତିବାଦ ଜଣାଇବା ପୂର୍ବରୁହିଁ ଶ୍ରୀଯୁକ୍ତ ମହାନ୍ତି ତାଙ୍କ ହାତରେ ଥିବା ଶକ୍ତିଶାଳୀ ୩୬୬ (୯.୩ ମିଲିମିଟର) ବନ୍ଧୁକରେ ଲକ୍ଷ୍ୟ ସ୍ଥିର କରି ନିଶାଣ ଦାଗି ସାରିଥିଲେ....

ବୈଶାଖର ସେଇ ନିର୍ଜନ ସନ୍ଧ୍ୟା ଏକ ନିଃସଙ୍ଗ ପ୍ରାଣୀର ଆର୍ତ୍ତ ଚିତ୍କାରରେ ମୁଖରିତ ହୋଇଉଠିଥିଲା...

ଭିଜିଯାଇଥିଲା ସେଇ ଅନାମଧେୟ ଗିରିନଦୀର କେତେମୁଠା ବାଲୁକା ନିରୀହ ପ୍ରାଣୀର ବୁକୁର ଶୋଣିତ ଧାରାରେ...

ଅସହାୟ ପ୍ରାଣୀଟା ତଥାପି ଯନ୍ତ୍ରଣାରେ ଛଟପଟ ହେଉଥିଲା...

ଉତ୍ତେଜନାରେ ଶ୍ରୀଯୁକ୍ତ ମହାନ୍ତିଙ୍କର ଶରୀର ଠକ୍ ଠକ୍ ହୋଇ କମ୍ପୁଥିଲା... ସମସ୍ତ ରକ୍ତ ଆସି ମୁହଁରେ ଠୁଳ ହୋଇଥିଲା...

ଏଥର ଏକ ତୃପ୍ତିର ନିଶ୍ୱାସ ନେଇ ସେ କହୁଥିଲେ, ଦେଖିଲ ଦାସ ମୋର ଟିପ୍ କେମିତି ଆକ୍ୟୁରେଟ ! ଆରେ ଇଣ୍ଟର ନ୍ୟାସନ୍ୟାଲ ରାଇଫଲ କମ୍ପିଟିସନ୍‌ରେ ଏତେ ଏତେ ଟ୍ରଫି କ'ଣ ମିଛରେ ଜିତିଛି !

ବେଦନାପ୍ଲୁତ କଣ୍ଠରେ ମୁଁ ତାଙ୍କୁ କହୁଥିଲି – କିନ୍ତୁ ସାର୍ ! ଏ ନିରୀହ ପକ୍ଷୀଟାକୁ ହତ୍ୟା କରି ଆପଣଙ୍କର ଲାଭ କ'ଣ ?

ଗମ୍ଭୀର କଣ୍ଠରେ ମୋତେ ବାଧା ଦେଇ ଶ୍ରୀଯୁକ୍ତ ମହାନ୍ତି କହୁଥିଲେ, – "ତମର ସେଇ ନଟୁଚୋରୀ ଭାଷାର ନାକକାନ୍ଦଣା ପ୍ରଥମେ ବନ୍ଦ କର ତ ! ନିରୀହ ପକ୍ଷୀ ହତ୍ୟା ! କିଏ ନିରୀହ ଏ ଯୁଗରେ । ଏତେ ଯେ ବିରାଟ ବିରାଟ ଯୁଦ୍ଧ ହେଉଛି । ସେଥିରେ ଯେଉଁମାନେ ପ୍ରାଣ ଦେଉଛନ୍ତି, ସେମାନେ ତେବେ ସମସ୍ତେ ୩୦୨ ଦଫାର ଆସାମୀ ! My boy, ଯୁଦ୍ଧମାନେ ହେଲା ବଞ୍ଚିରହିବାର, ତିଷ୍ଠି ରହିବାର ଆକୂତି – ଆଉ ଅନ୍ୟକୁ ହତ୍ୟା ନ କଲେ ମଣିଷର ସ୍ଥିତି ନାହିଁ – ପ୍ରତିଷ୍ଠା ନାହିଁ – ତେଣୁ ହତ୍ୟା ମାନେ ହିଁ ବନ୍ଧୁହତ୍ୟା – ଭ୍ରାତୃହତ୍ୟା – ଏସବୁ ଦେଖି ସୁଦ୍ଧା ତମେ କଥା କଥାକେ ଲାଭ କ୍ଷତିର ପ୍ରଶ୍ନ ଉଠାଇଲେ ଚଳିବ କେମିତି ?

ମୁଁ କ୍ଷୀଣ କଣ୍ଠରେ କହୁଥିଲି – ଯୁଦ୍ଧ ଅପେକ୍ଷା ଶାନ୍ତିର ପ୍ରୟୋଜନ ଦେଶ ପକ୍ଷରେ ଅତି ବେଶୀ – ନିରୁପଦ୍ରବ, ନିର୍ଦ୍ୱନ୍ଦ୍ୱ ଜୀବନର ପ୍ରୟୋଜନ, ଯେ ମଣିଷ ଜୀବନରେ ଅତି ଅଧିକ – ଏକଥା କ'ଣ ଆପଣ ଜାଣି ନାହାନ୍ତି ? ସାମାନ୍ୟ ଶାନ୍ତି – ଟିକିଏ ନିର୍ଜନତା....

ଉଚ୍ଚ କଣ୍ଠରେ ହସୁ ହସୁ ଶ୍ରୀଯୁକ୍ତ ମହାନ୍ତି କହୁଥିଲେ, ଶୁଣିବାକୁ ବେଶ୍ ଲାଗୁଛି କିନ୍ତୁ... ବୈରାଗ୍ୟ, ନିର୍ଜନତା – ଦ୍ୱନ୍ଦ୍ୱହୀନ ଜୀବନ, ଧ୍ୟାନମଗ୍ନ ଦିନ – ଏ ସବୁ କେବଳ ସାହିତ୍ୟରେ ହିଁ ଶୋଭାପାଏ – ମୋ ଆଦର୍ଶ ସମ୍ପୂର୍ଣ୍ଣ ଅଲଗା – ଦର୍ଶନ ସ୍ୱତନ୍ତ୍ର – ମୁଁ ଚାହେ ଉଦ୍ଭିଦର ଜୀବନ – ମୋର ସାର୍ଥକତା କାର୍ଯ୍ୟରେ – ସଂଗ୍ରାମରେ...

ଶ୍ରୀଯୁକ୍ତ ମହାନ୍ତି କହୁଥିଲେ – ତମେ ଏ ପର୍ଯ୍ୟନ୍ତ ଜୀବନ ଆରମ୍ଭ କରିନାହିଁ ଦାସ୍ । ତେଣୁ ନିଃସଙ୍ଗତାର ବେଦନା – ଦୁଃଖ ତମେ ବୁଝି ପାରିବ ନାହିଁ – ଏଭଳି ଜୀବନ ଅପେକ୍ଷା ମରଣ ଯେ ସତେ ସତେ ଶ୍ୟାମତୁଲ୍ୟ ବରେଣ୍ୟ, ଏଥିରେ ତମର ଏବେ ସନ୍ଦେହ ଥାଇପାରେ । ମାତ୍ର ପରିସ୍ଥିତିରେ ପଡ଼ିଲେ (ଆନ୍ତରିକଭାବେ କାମନା କରୁଛି ତମକୁ ସେଭଳି ପରିସ୍ଥିତିର ସମ୍ମୁଖୀନ ହେବାକୁ ନ ହେଉ) ତମେ ମୋ କଥାର ଯଥାର୍ଥତା ବୁଝିପାରିବ – ମୁଁ ଅନ୍ୟର ନିଃସଙ୍ଗତା ଦେଖିପାରେ ନାହିଁ – ଦୟା ହୁଏ, କରୁଣା ହୁଏ, ମୁଁ ଜାଣେ ଏସବୁ sentimentlity ତଥାପି ମୁଁ ତାକୁ ଦୂର କରିବାକୁ ଚେଷ୍ଟା କରେ – ଏଇ ନିରୀହ ପ୍ରାଣୀର ବ୍ୟଥା ତମେ ବୁଝିନାହିଁ – ବୁଝିଛି ମୁଁ – ତେଣୁ...

ଶ୍ରୀଯୁକ୍ତ ମହାନ୍ତିଙ୍କର ଗଳା ଭାରି ଭାରି ଶୁଣା ଯାଉଥିଲା....

ତାଙ୍କ ସହ ମୋର ଘନିଷ୍ଠ ପରିଚୟ ହୋଇଥିଲା ଏକ ମର୍ମନ୍ତୁଦ ମୁହୂର୍ତ୍ତରେ...

ଶ୍ରୀମତୀ ମହାନ୍ତିଙ୍କର ମୃତ୍ୟୁ ହୋଇଥିଲା – ଛୋଟ ଛୋଟ ପାଞ୍ଚଟି ପିଲା – ଅସହାୟ କରୁଣ ମୁଖରି ଚିତାକୁ ଘେରି ଠିଆ ହୋଇଥିଲେ – ସେମାନଙ୍କ ଆଖିରୁ ତଥାପି ଲୋତକଧାରା ବହି ଚାଲିଥିଲା...

ଚିତାର ଅଳ୍ପ ଦୂରରେ ଠିଆ ହୋଇଥିଲେ, ନିଃସଙ୍ଗତାର ପ୍ରତୀକ ରୂପେ ଶ୍ରୀଯୁକ୍ତ ମହାନ୍ତି । ମୋର ଉପରବାଲା ହିସାବରେ ମୁଁ ତାଙ୍କ ଦୁଃଖରେ ସହାନୁଭୂତି ଜଣାଇବାକୁ ଶ୍ମଶାନ ପର୍ଯ୍ୟନ୍ତ ଯାଇଥିଲି....

ପିଲାମାନଙ୍କର ଅସହାୟ ଅବସ୍ଥା ଦେଖି ମୋର ଚକ୍ଷୁ ଆପେ ଆପେ ଆର୍ଦ୍ର ହୋଇ ଉଠିଥିଲା –

ଅଳ୍ପଦିନ ପୂର୍ବେ ମୋର ମାତୃବିୟୋଗ ହୋଇଥିଲା... ଏଇ ପିଲାମାନଙ୍କ ଭିତରେ ମୁଁ ମୋର ସେଇ ବେଦନାକୁ ନୂତନ ଭାବରେ ଅନୁଭବ କରୁଥିଲି –

ଶ୍ରୀଯୁକ୍ତ ମହାନ୍ତି ଫିସ୍ ଫିସ୍ କଣ୍ଠରେ ମୋତେ କହୁଥିଲେ, Do you know Das, ମରିବାର ପୂର୍ବ ମୁହୂର୍ତ୍ତରେ ସେ ମୋତେ କ'ଣ କହିଗଲା ? She told me – ତମେ ମୋତେ ମାରିଦେଲ – ମାରି ପକାଇଲ – ବଞ୍ଚିବାକୁ ଦେଲ ନାହିଁ – Is it true ? 'ମୁଁ ତାକୁ ମାରି ଦେଲି ? But why କି କ୍ଷତି ମୋର ସେ କରୁଥିଲା ? ବଞ୍ଚିଥିବା ପର୍ଯ୍ୟନ୍ତ ପଦେ କଡ଼ା କଥା କହି ନାହିଁ – ଅଥଚ ଆଖି ବୁଜିବାର ପୂର୍ବ

ମୁହୂର୍ତ୍ତରେ ଏତେ ବଡ଼ ଅଭିଯୋଗ ସେ କରିଗଲା ? କରି ପାରିଲା ? କିମିତି ? କାହିଁକି ?

ଶ୍ରୀଯୁକ୍ତ ମହାନ୍ତି ଉଦ୍‌ଭ୍ରାନ୍ତଭାବରେ ନିଜର ରୁକ୍ଷ କେଶକୁ ଟାଣିଓଟାରି ପକାଉଥିଲେ । ମୁଁ କରୁଣ ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇ ରହିଥିଲି....

ଅପରାହ୍ନର ଆକାଶରେ ଉଡୁଥିଲା ଯୋଡ଼ିଏ ଗୁଡ଼ି । ଗୋଟିଏ ନାଲି – ଅପରଟି ବିଲ୍‌କୁଲ୍ ଧଳା – ଦୀର୍ଘ ପୁଚ୍ଛ ଦୁଇଟି ସର୍ପାୟିତ ସୃଜନଲୀଳାରେ ମୋଡ଼ି ହେଉଥିଲା, ଫିଟୁଥିଲା – ପୁଣି ମୋଡ଼ି ହେଉଥିଲା ...

ସେଇଆଡ଼େ ଲକ୍ଷ୍ୟ ରଖି ଶ୍ରୀଯୁକ୍ତ ମହାନ୍ତି ଗୁଣୁ ଗୁଣୁ କଣ୍ଠରେ କହୁଥିଲେ, ‘‘ବଞ୍ଚିବାକୁ ଯାହାର ଏତେ ଆଗ୍ରହ, ଯାହା ମନରେ ଅସରନ୍ତି କାମନାର ପ୍ରବାହ ତାର ହିଁ କି ନା ଶେଷରେ ଏଇ ପରିଣତି । ଅଥଚ ମୁଁ ତକେବେ ବଞ୍ଚିବାକୁ ଚାହିଁ ନାହିଁ... କାହିଁ ମୋର ତ ମୃତ୍ୟୁ ହେଉନାହିଁ... ବିଚିତ୍ର ଦୁନିଆଁ...

ଶ୍ରୀଯୁକ୍ତ ମହାନ୍ତି ହସୁଥିଲେ.... ଅତି ବିଷଣ୍ଣ ସର୍ବହରାର ହସ...

ମୋର ମନେ ପଡୁଥିଲା... ମୋର ମା’ର ମଧ ଏମିତି ଅସରନ୍ତି କାମନା ଥିଲା... ପୁଅକୁ ଯୋଗ୍ୟ ଦେଖିବ... ବୋହୂ ଦେଖିବ... ନାତି ନାତୁଣୀଙ୍କ ମେଳରେ ଦୀର୍ଘ ଅଳସ ମଧ୍ୟାହ୍ନ କଟାଇବ.... ନିଜର କରି ଛୋଟ ଗୋଟିଏ ଘର ତୋଳିବ.... କାହିଁ କିଛି ଦେଖି ପାରିଲା ନାହିଁ ତ !

ତାର କାମନାର ଫୁଲ ସେଇ ପୁଅ ମୁଁ ଅଛି – ବୋହୂ ନାହିଁ । ହୁଏତ ଆସିବ – ନାତି ନାତୁଣୀ ଆସିବେ – ଘର ହେବ.... କ’ଣ ହେବ ସେ ଘର, ଯେଉଁ ଘରେ ମା’ ନ ଥିବ ?

ମୁଁ ତ ଘର ଚାହୁଁ ନ ଥିଲି... ଯେ ଚାହୁଁଥିଲା ... ସେ କୁଆଡ଼େ ଗଲା....

ଗୁଡ଼ି ଦୁଇଟି ଆହୁରି ଉଠି ଯାଇଥିଲା.... ସୂତ୍ରଧରମାନେ ହୁଏ ତ ଲମ୍ବା ସୂତା ଛାଡ଼ି ଦେଇଛନ୍ତି ।

ଶ୍ରୀଯୁକ୍ତ ମହାନ୍ତି ମୋ କାନ୍ଧରେ ହାତ ରଖି କହୁଥିଲେ, Don't be sentimental, My boy । ମତେ ଦେଖ, ମୁଁ କେମିତି ଠିଆ ହୋଇଛି – ସବୁ ଦେଖୁଛି, ତତ୍ତ୍ୱାବଧାନ କରୁଛି... ହସୁଛି...ନ ହେଲେ ଏ ଛୋଟ ପିଲାଗୁଡ଼ାକୁ ଦେଖିବ କିଏ ?

ଶ୍ରୀମତୀ ମହାନ୍ତିଙ୍କର ଚିତାରେ ଅଗ୍ନିସଂଯୋଗ କରାଯାଇଥିଲା... ଷୋଳବର୍ଷର ବଡ଼ ପୁଅ ମା ମୁଖରେ ମୁଖାଗ୍ନି ଦେଇ, ନିଜର ଶେଷ କର୍ତ୍ତବ୍ୟ କରୁଥିଲା... ଆହା ! ଫୁଲପରି ପିଲାଗୁଡ଼ାକ ।

ଚିତାର ମୋଡ଼ି ମୋଡ଼ି ହୋଇ ଉଠୁଥିବା ଧୂଆଁ ଆଡ଼କୁ ଲକ୍ଷ୍ୟ ରଖି ଶ୍ରୀ ମହାନ୍ତି ସ୍ୱଗତ କଣ୍ଠରେ କହୁଥିଲେ, ଆଃ ! ବଞ୍ଚିବାର କି ଅଦମ୍ୟ ଆଗ୍ରହ ଥିଲା ସ୍ତ୍ରୀ ଲୋକଟାର ! ଶେଷ ମୁହୂର୍ତ୍ତରେ ବି କହୁଥିଲା... ମୋତେ ବଞ୍ଚାଅ... ମୁଁ ମଣିଷ ଭିତରେ ବଞ୍ଚିବାକୁ ଚାହେଁ– ମୋର କାମନା ଅନେକ – କିଛି ଗୋଟିଏ ବି ପୂରଣ ହୋଇନାହିଁ – ଲୀନାର ବର ଯୋଗାଡ଼ ହୋଇନାହିଁ, ସବୁର ପାଠପଢ଼ା ସରିନାହିଁ ମୁଁ ନ ଥିଲେ ଏସବୁ ଦେଖିବ କିଏ ? ମୋତେ ବଞ୍ଚାଅ ଗୋ – ବଞ୍ଚିବାକୁ ମୋର ଭାରି ସାଧ । କାହିଁ ବଞ୍ଚିପାରିଲା ନାହିଁ ତ ! ଅଥଚ ମୁଁ କ'ଣ ଚେଷ୍ଟା କରିନାହିଁ ? Then I am a murderer ମୁଁ ହତ୍ୟାକାରୀ ! ମୁଁ ମାରିଦେଲି ତାକୁ ! ଦେଖୁଛ ଦାସ ଚିତା ଭିତରେ ଠିଆହୋଇ, ମୋ ଆଡ଼କୁ କିପରି ଭୀଷଣ ଦୃଷ୍ଟିରେ ଚାହୁଁଛି ।

ଶ୍ରୀଯୁକ୍ତ ମହାନ୍ତି ଚିତ୍କାର କରି ଉଠୁଥିଲେ... ଦେଖ, ଦେଖ ଦାସ ଧଳା ଗୁଡ଼ିଟା କେମିତି କଟିଗଲା... ଶୂନ୍ୟରେ ଭାସି ଯାଉଛି... ଆହା କି ଅସହାୟ ଭାବଟା ! ସେ ତାର ମୂଳ ସୂତାକୁ ଧରିବାକୁ ଚେଷ୍ଟା କରୁଛି । ପାରିବ ନାହିଁ – କେବେହେଲେ ପାରିବ ନାହିଁ ।

ତାର ଯେ ଛିଣ୍ଡିବାର ଯୋଗ, ମରିଯିବାର ଯୋଗ – ନାଲି ଗୁଡ଼ିଟାହିଁ ତାର ସର୍ବନାଶର କାରଣ । ମୁଁ ତାକୁ ଦେଖିନେବି – I will punish him, ମହାମାନ୍ୟ ସରକାରଙ୍କ ଅମଳରେ ଏପରି ଅତ୍ୟାଚାର କରିବାର କୌଣସି ଅଧିକାର ତାର ନାହିଁ ।

ଶ୍ରୀଯୁକ୍ତ ମହାନ୍ତି ପାଗଳ ଭାବରେ ଧାଇଁ ଯାଉଥିଲେ । ମୁଁ ତାଙ୍କୁ କୌଣସିମତେ ସମ୍ଭାଳି ରଖି ଫେରି ଆସୁଥିଲି ।

ଗୁଡ଼ିଟା ପାଲଛିଣ୍ଡା ନୌକାଭଳି ଭାସି ଯାଉଥିଲା ତଳକୁ – ତଳକୁ – କେତେ ତଳକୁ !

× × × ଶ୍ରୀଯୁକ୍ତ ମହାନ୍ତି ଭ୍ରୁକୁଟି କୁଟିଳ ନେତ୍ରରେ ମୋ ଆଡ଼କୁ ଅନାଇ ପଚାରୁଥିଲେ–ତମେ କ'ଣ ମୋତେ ଜେରା କରିବାକୁ ଆସିଛ, ଦାସ ? ମୁଁ ଯଦି ତମର କୌଣସି ପ୍ରଶ୍ନର ଉତ୍ତର ନ ଦିଏ ?

ଦ୍ୱିଧାଜଡ଼ିତ କଣ୍ଠରେ ମୁଁ ତାଙ୍କୁ କହୁଥିଲି – ଉତ୍ତର ଆପଣଙ୍କୁ ଦେବାକୁ ହିଁ ହେବ – ଆପଣ କେବଳ ଉପରିସ୍ଥ ହାକିମ ନୁହନ୍ତି, ମୋର ଗୁରୁଜନ ମଧ୍ୟ... ଆପଣଙ୍କ ପ୍ରତ୍ୟେକ କାମ ପାଇଁ ଆପଣଙ୍କ ଆମୃଛ ଭଳି ମୋତେ ମଧ୍ୟ ବାହାରେ ଜବାବ୍ ଦେବାକୁ ପଡ଼େ, ଏ କଥା କ'ଣ ଆପଣ ଜାଣି ନାହାନ୍ତି ?

ଜାଣିନି କାହିଁକି, ସେଇ ଶ୍ମଶାନ ଦିନର ଘଟଣାଠାରୁ ଶ୍ରୀଯୁକ୍ତ ମହାନ୍ତି ମୋତେ ସୁନଜରରେ ଦେଖିବାକୁ ଆରମ୍ଭ କରିଥିଲେ । ବାରମ୍ବାର ମୋତେ ତାଙ୍କ କକ୍ଷକୁ ଡାକୁଥିଲେ, ଉପଦେଶ ଦେଉଥିଲେ, କାମ ଶିଖାଉଥିଲେ ।

ଏଣେ ବାହାରେ ତାଙ୍କ ନାଁରେ ବହୁତ ଦୁର୍ନାମ ଶୁଣିବାକୁ ମିଳୁଥିଲା । ଶନିବାର ଅପରାହ୍ନରୁ ସେ ଅଫିସରୁ ଉଭେଇ ଯାଉଥିଲେ, ଫେରି ଆସିବାକୁ ପୁଣି ସେଇ ସୋମବାର ।

ମଝିରେ ଦୁଇଦିନ ସେ କୁଆଡ଼େ ଯାଉଥିଲେ, କ'ଣ କରୁଥିଲେ, ଏସବୁ ନେଇ ମୋର ଆଗ୍ରହ ନ ଥିଲା ।

ତେବେ ଅନ୍ୟମାନେ ଏ ଦିଗରେ ବେଶ୍ ଉତ୍ସାହୀ ଥିଲେ – ଶ୍ରୀଯୁକ୍ତ ମହାନ୍ତିଙ୍କ ନାମରେ ବେଶ୍ ରସାଳ କାଳ୍ପନିକ କାହାଣୀମାନ ଶୁଣିବାକୁ ମିଳୁଥିଲା ।

ସେ ନିଜେ ମଧ୍ୟ ପରିବର୍ତ୍ତିତ ହୋଇ ଯାଉଥିଲେ – ସନ୍ତାନମାନଙ୍କ ପ୍ରତି ଦୃଷ୍ଟି ଦେଉ ନ ଥିଲେ, ତା' ଛଡ଼ା ବାଚନଭଙ୍ଗୀରେ ଫ୍ରୟେଡ଼ିୟ ଚିନ୍ତାଧାରା ବେଶ୍ ପ୍ରକାଶିତ ହେଉଥିଲା ।

ଅଫିସରେ ମଧ୍ୟ ନିଜର ନିମ୍ନସ୍ଥ କର୍ମଚାରୀମାନଙ୍କ ସଙ୍ଗେ ବେଶ୍ ବାତ୍ସ୍ୟାୟନୀ ଭାଷାରେ ଗଡ଼ ଗଡ଼ କଥା କହି ଯାଉଥିଲେ ।

ବିପଦ ହୋଇଥିଲା ମୋର । ଛୋଟ ଛୋଟ ପିଲାଗୁଡ଼ାକ ସଦାବେଳେ ମୁହଁ ଶୁଖାଇ ବୁଲୁଥିଲେ । ଯତ୍ନର ପ୍ରଶ୍ନ ତ ନ ଥିଲା – ନିୟମିତ ଆହାର ମୁଠାଏ ବି ଜୁଟିବାରେ ସମସ୍ୟା ଦେଖା ଦେଇଥିଲା ।

ବାରମ୍ବାର ଯାଉଥିଲି – ସେମାନଙ୍କ କଥା ବୁଝୁଥିଲି – ପାରୁ ପର୍ଯ୍ୟନ୍ତ ସାନ୍ତ୍ୱନା ଦେଉଥିଲି – ସେମାନେ ମଧ୍ୟ ମୋ ଉପରେ ନିର୍ଭର କରିବାକୁ ଶିଖୁଥିଲେ ।

ଅଭ୍ୟସ୍ତ ଭାବରେ ସେଦିନ ଶ୍ରୀଯୁକ୍ତ ମହାନ୍ତି ମୋତେ ଡାକି କହିଲେ, If you don't mind Das, ଏ ଦୁଇ ଦିନ ତମେ ମୋ ଘରେ ରହିବ ମୁଁ ବାହାରକୁ ଯିବି ।

ନିଜକୁ ଆଉ ସମ୍ଭାଳି ପାରି ନ ଥିଲି – କଟୁ କଣ୍ଠରେ ତାଙ୍କୁ କହୁଥିଲି – ସେ ଆପଣ ନ କହିଥିଲେ ମଧ୍ୟ ମୁଁ ବୁଝନ୍ତି – କିନ୍ତୁ କୁଆଡ଼େ ଯାହାନ୍ତି ଆପଣ ? ଦୁଧଖିଆ ମାତୃହୀନ ଛୁଆଗୁଡ଼ାଙ୍କୁ ଛାଡ଼ି ଦେଇ ବାହାରେ ଏତେ କି କାମ ଆପଣଙ୍କର ? ଆପଣଙ୍କ ଯୋଗେ ଯେ ମୁଁ ବାହାରେ ମୁଣ୍ଡ ଟେକି ଚାଲି ପାରୁନାହିଁ ।

ଶ୍ରୀଯୁକ୍ତ ମହାନ୍ତି ଗମ୍ଭୀର ହୋଇଗଲେ ।

ତାପରେ ମ୍ଳାନ ହସି ସେ ମୋତେ କହିଲେ – ତମର ଧାରଣା, ମୁଁ ଗୋଟାଏ ଖୁବ୍ ହୃଦୟହୀନ ମଣିଷ, ଏଇଆ ନାଁ ?

ମୁଁ କହୁଥିଲି – ସେ କଥା ଆପଣ ମୋ ମୁହଁରୁ ନ ଶୁଣିଲେ ବା ।

ଶ୍ରୀଯୁକ୍ତ ମହାନ୍ତି କହୁଥିଲେ, No – ତୁମକୁ କହିବାକୁ ହେବ – I don't care what others say about me But you / ତୁମକୁ ମୁଁ ବହୁତ ସ୍ୱାଧୀନତା ଦେଇଛି – ଅନେକ ଦିନରୁ ତମେ ମୋତେ ଦେଖୁଛ – ମୋ ବିଷୟରେ ତମର ଧାରଣା କ'ଣ, ତମକୁ କହିବାକୁ ହେବ – Tell me frankly.

ମୁଁ କହୁଥିଲି – ଲୋକେ ଯେ କେବଳ ଆପଣଙ୍କ ନାଁରେ ମିଛ କଥା କହୁଛନ୍ତି, ତା ମୁଁ ବିଶ୍ୱାସ କରିନାହିଁ ।

ଶ୍ରୀଯୁକ୍ତ ମହାନ୍ତିଙ୍କ ମୁହଁ କରୁଣ ହୋଇ ଉଠୁଥିଲା – ଅଜ୍ଞାତରେ ତାଙ୍କ ମୁହଁ ଉପରେ ଏତେ କଟୁକଥା କହି ମୋର ମଧ୍ୟ ଅନୁତାପ ଆସୁଥିଲା । ତେବେ ଦୀର୍ଘଦିନର ବିରକ୍ତିକୁ ମୁଁ ଆଉ କୌଣସି ମତେ ରୋକି ପାରି ନ ଥିଲି ।

କିଛିକ୍ଷଣ ନୀରବ ରହିବା ପରେ ଶ୍ରୀଯୁକ୍ତ ମହାନ୍ତି କହୁଥିଲେ, "ମୋର ଦୃଢ଼ଧାରଣା ଥିଲା ଦାସ, କେହି ନ ବୁଝିଲେ, ତମେ ମୋତେ ଅନ୍ତତଃ ବୁଝିବ ! କେହି ନ ଜାଣିଲେ, ତମେ ଅନ୍ତତଃ ଜାଣିବ – ସୁଖରେ ନୁହେଁ ଦୁଃଖରେ – କେବଳ ଅତି ଅସହ୍ୟ ଦୁଃଖରେ ନୁପୂର ଭଳି ପାଦେ ପାଦେ ବାଜି ଚାଲିଛି – ହଜାର ହଜାର ମରଣର ବିଭୀଷିକା ପ୍ରତ୍ୟକ୍ଷ କରୁଛି । ତଥାପି କାହିଁ ମୋର ଈପ୍‌ସିତ !

ଶ୍ରୀଯୁକ୍ତ ମହାନ୍ତି କହୁଥିଲେ – ଆଚ୍ଛା ଦାସ ତମର ବୟସ ତ ଅଳ୍ପ – କେବଳ ଜଣକର ଜବାବ୍‌ବନ୍ଦୀ ଶୁଣି ରାୟ ଦେବାର ଦୁଃସାହସ ଯଦି କର, ତେବେ ସେଇଟା ଅନ୍ୟ ପକ୍ଷପ୍ରତି ଖୁବ୍ ଅନ୍ୟାୟ ହେବ ନାହିଁ କି ? ମନେ ରଖିବ – ପାପ ପୁଣ୍ୟର ସ୍ୱରୂପ ତମେ କ'ଣ ବୁଝ ? ମଣିଷ ହୋଇ କେଉଁ ସାହସରେ ମଣିଷକୁ ବୁଝିଛ ବୋଲି

ଗର୍ବ କରୁଛ ? ମୁଁ ହୁଏତ ନିଷ୍ପାପ ନୁହେଁ – ତମ ଆଖିରେ – ହେଲେ ଏକଥା ମଧ ମୁଁ କହିପାରେ ଯେ, ସ୍ରଷ୍ଟା ସୃଷ୍ଟି ନିମନ୍ତେ ଆଧାର ଖୋଜି ବୁଲିବା ବା ଏକ ଆଧାର ପରିବର୍ତ୍ତେ ଅନ୍ୟ ଆଧାର ଗ୍ରହଣ କରିବାକୁ ଯଦି ତମର ତଥାକଥିତ ସମାଜ ପାପ ବୋଲି କୁହେ, ତେବେ ପୂର୍ଣ୍ୟର ସ୍ୱରୂପ କ'ଣ ମୁଁ ଜାଣେ ନାହିଁ –

ମୁଁ ସ୍ତବ୍ଧ ଭାବରେ ବସି ରହିଥିଲି – ଶ୍ରୀଯୁକ୍ତ ମହାନ୍ତିଙ୍କ ଚରିତ୍ରର ଏକ ଅନୁଦ୍‌ଘାଟିତ ଦିଗ ମୋ ଆଗରେ ଉନ୍ମୁକ୍ତ ହେଉଥିଲା –

ଶ୍ରୀଯୁକ୍ତ ମହାନ୍ତି କହୁଥିଲେ – ଏ ଜୀବନ ତମକୁ ଦିଆଯାଇଛି, ଅପଚୟ କରିବାକୁ ନୁହେଁ – ଯଥାର୍ଥ ଭାବରେ ତାର ସଦୁପଯୋଗ କରିବା ନିମନ୍ତେ.... ବଞ୍ଚିବା ଭଳି ବଞ୍ଚିବା ନିମନ୍ତେ । ହା –ହୁତାଶ କରି, କପାଳରେ କରତାଡ଼ନ କରି ଶେଷ ହୋଇଯିବାକୁ ନୁହେଁ । ଜାଣ ତ, 'Life is but a walking shadow' – ଏଇଠି ଅଛି – ଏଇଠି ନାହିଁ – ଯେଉଁ କେତେଦିନ ଏଠି ଅଛ, ଟିକିଏ ଆନନ୍ଦ କରିନିଅ ନା... ସାହିତ୍ୟ କୁହ, ସମାଜ କୁହ, ଧର୍ମନୀତି କୁହ, ରାଜନୀତି କୁହ ସବୁଠି ସେଇ ଚାର୍ବାକୀୟ ଦର୍ଶନ ପ୍ରତିଫଳିତ – ''ଯାବତ୍ ଜୀବେତ୍ ସୁଖଂ ଜୀବେତ୍'' – ସେଇ ସୁଖର ଅନ୍ୱେଷଣରେ ମୁଁ ଯଦି ସପ୍ତାହର କେଇଟି ମୁହୂର୍ତ୍ତ ଏକାନ୍ତ ଭାବରେ କଟାଏ, ତାହାହେଲେ କ'ଣ ମୁଁ ଖୁବ୍ ପାପ କରିଛି ବୋଲି ତମେ କହିବ ?

ସୁଯୋଗ ପାଇ ମୁଁ ଏତିକିବେଳେ କହିଲି... ''ପାପଟା ଗୋଟାଏ Elastic ପଦାର୍ଥ ନୁହେଁ ଯେ ଯେଝା ସୁବିଧା ଅନୁସାରେ ତାକୁ ଅର୍ଥ କରି ହେବ । ଯାହା ଖରାପ, ତା ସମସ୍ତଙ୍କ ପାଇଁ ଖରାପ ।

ହିଂସ୍ରଭାବରେ ଗର୍ଜିଉଠି ଶ୍ରୀଯୁକ୍ତ ମହାନ୍ତି କହୁଥିଲେ, Damn your ଖରାପ, ପାପ ବିଷୟରେ ସମସ୍ତଙ୍କର Theory ମୋର ଶୁଣିବାର ଧୈର୍ଯ୍ୟ ନାହିଁ, ସମୟ ମଧ ନାହିଁ – ତମେ ଶୁଣିବ – ଶୁଣିବ ତମେ କୁଆଡ଼େ ମୁଁ ଯାଏଁ ? I hate that wretched lady – ଏକଦା ମୋର ସ୍ତ୍ରୀ ବୋଲି କଥିତା – ସେଇ ଭଦ୍ରମହିଳା – ଘରେ ପଶିବା ମାତ୍ରେ ମୋ ଉପରେ ହୁକୁମ ଜାରି କରିବାକୁ ଆରମ୍ଭ କରୁଛି – ଟୁଲୁ ଘୁମେଇ ପଡ଼ିଛି – ତାକୁ ଉଠାଅ – ଲୀନା ଖାଇନାହିଁ – ତାକୁ ଖାଇବାକୁ ଦିଅ... ମୀନାକୁ ଜ୍ୱର ଡାକ୍ତର ପାଖକୁ ଯାଅ । ହଜାର ହଜାର ହୁକୁମ – ମୁଁ ତାର କ୍ରୀତଦାସ ? ବଞ୍ଚିଥିବା ବେଳେ ପଦେ ହୁଁ କହି ନାହିଁ – ଆଜି ସବୁଠୁଁ ନିରାପଦ ସ୍ଥାନରେ ବସିରହି ମୋ ଉପରେ ହାକିମୀ ଜାରି,କରିବ । ଆଉ ମୁଁ ବଶମ୍ବଦ ଭଳି ତାକୁ ପାଳନ କରିଚାଲିବି ? ଏକଥା

କେବେ ହୋଇ ପାରେନା I hate her - I hate her children – ମୋର ସେମାନଙ୍କ ସଙ୍ଗେ କିଛି ସମ୍ପର୍କ ନାହିଁ – ମୋର ଘର ନାହିଁ – ବନ୍ଧୁ ନାହିଁ – କେହି ନାହିଁ....

ଶ୍ରୀଯୁକ୍ତ ମହାନ୍ତି ଠକ୍ ଠକ୍ କରି କମ୍ପୁଥିଲେ – ତାଙ୍କର ଗମ୍ ଗମ୍ ଗମ୍ଭୀର ଗଳାରେ ଅଫିସ ରୁମ୍ କମ୍ପୁଥିଲା । ତଥାପି ସେ କହି ଚାଲିଥିଲେ... ସହରର ରାସ୍ତା, ଗଳି କନ୍ଦି, ସିନେମା ପାର୍କ, ରେସ୍ତୁରାଁ ଚାରିଆଡ଼େ ବୁଲିଛି – ମ୍ୟାଟିନି, ଫାଷ୍ଟ ସୋ, ସେକେଣ୍ଡ ସୋ ସବୁ ଦେଖିଛି – ମଦ ପିଇଛି – ଅସ୍ଥାନ କୁସ୍ଥାନକୁ ଯାଇଛି – ତଥାପି ମୁହୂର୍ତ୍ତେ ମଧ୍ୟ ତ ତା କବଳରୁ ମୁକ୍ତି ପାଇନାହିଁ । ଆଖି ବୁଜିଲେ ଶୁଣିବାକୁ ପାଉଛି – ମୋ ଘର, ମୋ ପିଲା... ବୁଝି ଖବରଦାର ! ମୁଁ କ'ଣ କରିବି ଦାସ ?

ବଡ଼ ଅସହାୟ କରୁଣ ଦୃଷ୍ଟିରେ ଶ୍ରୀଯୁକ୍ତ ମହାନ୍ତି ମୋ ଆଡ଼କୁ ଅନାଇ ରହିଥିଲେ – ତାଙ୍କର ଆଖି ବର୍ଷଣୋନ୍ମୁଖ ଆକାଶ ଭଳି ଥମ୍ ଥମ୍ କରୁଥିଲା, ତଥାପି ସେଥିରୁ ପାଣି ଝରୁ ନ ଥିଲା...

ତାଙ୍କର ପାଷାଣ କଠିନ ମନ ତଳେ ପୁଷ୍ପ କୋମଳ ଆହୁରି ଏକ ମନର ସନ୍ଧାନ ପାଇ ବିସ୍ମିତ ଦୃଷ୍ଟିରେ ମୁଁ ତାଙ୍କ ଆଡ଼େ ଅନାଇ ରହିଥିଲି....

(ତାଙ୍କର ପାଷାଣକଠିନ ମନ ତଳେ ପୁଷ୍ପ କୋମଳ ଆହୁରି ଏକ ମନର ସନ୍ଧାନ ପାଇ ବିସ୍ମିତ ଦୃଷ୍ଟିରେ ମୁଁ ତାଙ୍କ ଆଡ଼େ ଅନାଇ ରହିଥିଲି..)

ସଦର ମହକୁମାକୁ ବଦଳି ହୋଇ ଆସିବା ପରେ ମଧ୍ୟ ଶ୍ରୀଯୁକ୍ତ ମହାନ୍ତିଙ୍କ ସହ ମୋର ସମ୍ପର୍କ ଛିନ୍ନ ହୋଇ ନ ଥିଲା – ଚିଠିପତ୍ର ତ ଥିଲା – ଏହା ଛଡ଼ା କାର୍ଯ୍ୟ ଉପଲକ୍ଷେ ସେ ଆସିବା ପୂର୍ବରୁ ମୋତେ ଦେଖା କରିବାକୁ ଖବର ଦେଇ ରଖୁଥିଲେ–

ବଡ଼ ସହରକୁ ଆସି ମୋର ନିଃସଙ୍ଗତା ଆହୁରି ବଢ଼ି ଯାଇଥିଲା – ଶ୍ରୀଯୁକ୍ତ ମହାନ୍ତିଙ୍କର ମୋତେ ଆଧୁନିକ ଜୀବନ ସହିତ ମିଶାଇ ଦେବା ନିମନ୍ତେ ଶତ ପ୍ରଚେଷ୍ଟା ବିଫଳ ହୋଇଥିଲା – ଅନ୍ତତଃ Lion's Club ର ଜଣେ ଉତ୍ସାହୀ Lion ଭାବରେ ମୋତେ ନ ଦେଖି ତାଙ୍କର ଅନୁଶୋଚନାର ସୀମା ନ ଥିଲା –''

ତେଣୁ ସେ ଚେଷ୍ଟା ଛାଡ଼ି ଦେଇଥିଲେ –

ମୋର ଜନ୍ମଦିନର ଖବର ସେ କେଉଁଠୁ ସଂଗ୍ରହ କରିଥିଲେ, ମୋତେ ଜଣା ନାହିଁ – ତେବେ ପାଖରେ ଥିଲେ, ନିଜେ ଆସି ମୋତେ ସଙ୍ଖୁଳି ଯିବା କିମ୍ବା ଦୂରରେ ଥିଲେ ଡାକ ମାର୍ଫତରେ ତାଙ୍କର ଆଶୀର୍ବାଦ ପଠାଇବାକୁ ସେ କଦାଚିତ୍ ଭୁଲୁ ନଥିଲେ ।

ସେଦିନ ଆସି ମୋତେ କହିଲେ "ଜାଣ ଦାସ, ମୋର ଅବସର ଆସନ୍ନ । ଆଉ ଠିକ୍ ୩ ମାସ ୧୫ ଦିନ ପରେ ମୁଁ ସରକାରଙ୍କଠୁଁ ବିଦାୟ ନେବି ।"

ମୁଁ ପ୍ରଶ୍ନ କରୁଥିଲି – "ତାପରେ ଆପଣ କ'ଣ କରିବେ ସାର – ?"

ଗମ୍ଭୀର ଭାବରେ ପାଇପ୍‌ରୁ ଧୂଆଁ ଛାଡ଼ୁ ଛାଡ଼ୁ ସେ କହିଲେ, "ସେ ଏକ ଗୁରୁତର ପ୍ରଶ୍ନ – ତେବେ ତମେ ଯଦି ଭାବୁଥାଅ ଯେ, ଚାକିରୀ ଛାଡ଼ି ଦେଇ, ମୁଁ ଗେରୁଆ ଲୁଗା ପିନ୍ଧି ବାନପ୍ରସ୍ଥ ଅବଲମ୍ବନ କରିବି, ତେବେ ତମେ ନିତାନ୍ତ ନିରାଶ ହେବ । ସେଭଳି ବଦଖିଆଲ ମୋର ନାହିଁ – "ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନୟ" – ମନକୁ ଶୁଖୁଆ ହାଣ୍ଡିରେ ଥୋଇ ମିଛଟାରେ ଚିତା ତିଳକ କାଟି ମୁଁ ନିଜକୁ ନିଜେ ଠକି ପାରିବି ନାହିଁ – ତା ଠିକ୍ – ତେବେ କିଛି ଗୋଟାଏ ପୁଣି କରିବାକୁ ପଡ଼ିବ ତ ।"

ମୁଁ ପୁଣି କହିଲି – "ତେବେ ଟୁଲୁ (ତାଙ୍କ ବଡ଼ ପୁଅ) ପାଖରେ ରହନ୍ତୁ ନା–"

ନାସିକା କୁଞ୍ଚନ କରି ଶ୍ରୀଯୁକ୍ତ ମହାନ୍ତି କହିଲେ, ସେଇଟା ପୁଣି ଏକଦମ୍ ତା' ମା ପରି ନାକକାନ୍ଦୁରା – ବୟସ ହେଲା – ଏତେ ବଡ଼ ଚାକିରୀ କରୁଛି – ମୋତେ ଦେଖିବା ମାତ୍ରେ ବାହୁନି ବସିବ । ଛି, ଛି, କିଛି କାମର ନୁହେଁ...

ପିତୃଭକ୍ତ ପୁତ୍ର ପ୍ରତି ସେ ନିଜର ଅପ୍ରୀତି ପ୍ରକାଶ କରୁଥିଲେ ।

ଶ୍ରୀଯୁକ୍ତ ମହାନ୍ତି ଉପରକୁ ଅନାଇ କହୁଥିଲେ ଟୁଲୁ କେବଳ ନୁହେଁ – ଲୀନା, ମିଲୁ, ଶୀଲୁ, ଯାହା ପାଖରେ ମୁଁ ରୁହେନା କାହିଁକି ସମସ୍ତେ ଖୁସି ହେବେ – ଆଶ୍ରୟ ପାଇଁ ମୁଁ ଚିନ୍ତିତ ନୁହେଁ – ତମ ପାଖରେ ଠିଆ ହେଲେ ତମେ କ'ଣ ମୋତେ ତଡ଼ି ଦେବ ? ତା' ନୁହେଁ – ମୋର ସମସ୍ୟା ଅନ୍ୟ ଜାଗାରେ... ଦୀର୍ଘଦିନ ଗୋଟାଏ ଅଭ୍ୟାସରେ ପଡ଼ିଯାଇ, ଏବେ ସମୟ କଟିବ କେମିତି ?

ମୁଁ ତାଙ୍କୁ ଉତ୍ସାହିତ କରି କହୁଥିଲି, କାହିଁ, ଲେଖାଲେଖି କରିବାକୁ ସମୟ ମୋତେ ମିଳୁ ନାହିଁ ବୋଲି ତ ଏତେ ଆକ୍ଷେପ କରୁଥିଲେ – ଆପଣଙ୍କ ଲେଖାକୁ ତ ଲୋକେ ଗ୍ରହଣ କରିନେଲେଣି । ସେଇ କାମଟାରେ ଯଦି ଆପଣ ପୂରାପୂରି ଲାଗି ପଡ଼ନ୍ତେ, ତେବେ....

ବାଧା ଦେଇ ଶ୍ରୀଯୁକ୍ତ ମହାନ୍ତି କହୁଥିଲେ, Right, କାମଟା ଆଡ଼କୁ ଦିନେ ତମେ ମତେ ଠେଲି ଦେଇଥିଲ – ଏବେ ମୁଁ ତାକୁ ଛାଡ଼ି ପାରୁନାହିଁ । ମୁଁ ଅବଶ୍ୟ

ତମର ପରାମର୍ଶ ବିଷୟରେ ଚିନ୍ତା କରିବି, ତେବେ ଯଦି ତା' ଗ୍ରହଣ କରେ, ତେବେ ନିତାନ୍ତ ନିଜ ସ୍ୱାର୍ଥର ଖାତିରରେ – ତଥାକଥିତ ଯଶଃ ପ୍ରତିଷ୍ଠା ମୋର କାମ୍ୟ ନୁହେଁ ବୋଲି ତମେ ଧରିନେଇପାର । ଆଉ ମୁଁ ପୁଣି ଥରେ ତମକୁ ମନେପକାଇଦେଉଛି ଯେ, ମୁଁ ଯାହା ହୁଏନା କାହିଁକି, ନିଜ ସଙ୍ଗରେ କେବେହେଲେ ଛଳନା କରିବି ନାହିଁ–

ଆଚ୍ଛା ବିଦାୟ.... ଶ୍ରୀଯୁକ୍ତ ମହାନ୍ତି ଠକ୍ ଠକ୍ ଶବ୍ଦ କରି ଫେରି ଯାଇଥିଲେ ।

ପ୍ରିୟ ପାଠକ ! ଶ୍ରୀଯୁକ୍ତ ମହାନ୍ତିଙ୍କର କାହାଣୀ ହୁଏତ ଏଇଠି ଶେଷ -- କାରଣ ଏହାପରେ ତାଙ୍କ ସହିତ ମୋର ଆଉ ଦେଖା ହୋଇନାହିଁ ।

ଅବଶ୍ୟ ଚିଠି ମାଧ୍ୟମରେ ତାଙ୍କର ଅବସର ଗ୍ରହଣ ଏବଂ ଗାଁରେ ନିରୁପଦ୍ରବ ଜୀବନଯାପନର ସମ୍ବାଦ ମୁଁ ପାଇଥିଲି ।

ଶେଷରେ ଦୁଇମାସ ଗତ ହୋଇଯିବାପରେ ମଧ୍ୟ, ତାଙ୍କର ସମ୍ବାଦ ମିଳିଲା ନାହିଁ – ଏକେବାରେ ମିଳିଲା ଶେଷ ସମ୍ବାଦ – ସମ୍ବାଦପତ୍ର ମାଧ୍ୟମରେ ।

ତା' ହେଲେ ଶ୍ରୀଯୁକ୍ତ ମହାନ୍ତି ମୋତେ ଭୁଲିଗଲେ – ଶେଷ ମୁହୂର୍ତ୍ତରେ ମଧ୍ୟ ମୋତେ ସମ୍ବାଦ ଦେଲେ ନାହିଁ ।

ତାହାହିଁ ହୋଇଥିଲେ ମୁଁ କିଞ୍ଚିତ୍ ଖୁସି ହୋଇ ଥାଆନ୍ତି, ତାଙ୍କ ସହିତ ମୋର ସମ୍ପର୍କ ବା କ'ଣ ଥିଲା ? – ମାତ୍ର ତା ନୁହେଁ । ମୃତ୍ୟୁର ଦିନକ ପରେ ରେଜିଷ୍ଟାର୍ଡ୍ ଡାକ ମାର୍ଫତରେ ତାଙ୍କର ଶେଷ ଚିଠି ମୋ ନିକଟରେ ପହଞ୍ଚିଥିଲା – ଗତାନୁଗତିକତା ଶୂନ୍ୟ ରୀତିରେ ଶ୍ରୀଯୁକ୍ତ ମହାନ୍ତି ଲେଖିଥିଲେ–

ଦାସ, ମୁଁ ଜାଣେ, ଚିଠି ନ ପାଇ ତମେ ଚିନ୍ତିତ ହୋଇ ପଡ଼ିଥିବ । କିଛିଦିନ ହେଲା ଦେହଟା କିଛି ଭଲ ନାହିଁ, ତେଣୁ ଦୈନନ୍ଦିନ କାର୍ଯ୍ୟକ୍ରମରେ କିଛିଟା ବିଶୃଙ୍ଖଳା ଦେଖା ଦେଇଛି ।

ଦାସ, ମୁଁ ଭାବୁଛି ମୋର ଦିନ ଶେଷ ହୋଇଆସିଲା – ଆଉ ହୁଏତ ତମମାନଙ୍କ ସଙ୍ଗରେ ଦେଖା ହେବ ନାହିଁ – ସେଥିପାଇଁ ମୋର ଅନୁଶୋଚନା ନାହିଁ – ମୁଁ ତ କହିବାକୁ ଗଲେ ପ୍ରସ୍ତୁତ ହୋଇ ରହିଛି – That wretched lady ପ୍ରତ୍ୟେକ ଦିନ ରାତିରେ ମୋ ବିଛଣା ଚାରିପାଖ ଘୂରି ବୁଲୁଛି, ମୁଁ ମଧ୍ୟ ତାକୁ Bow କରି କହୁଛି, Well, I am prepared.

କିନ୍ତୁ ସେ ଯେ କିଛି କହୁନାହିଁ – ହସିଦେଇ ଚାଲି ଯାଉଛି ।

ମୁଁ ଖୁବ୍ ଖୁସି ଯେ, ମୋତେ କାହାରି ଆଶ୍ରୟ ନେବାକୁ ପଡ଼ିନାହିଁ– ତା ପୂର୍ବରୁ ହିଁ ମୋତେ ଚାଲିଯିବାକୁ ପଡୁଛି ।

ହତାଶା, ରିକ୍ତତା, ଦୁଃଖ ପରିପୂର୍ଣ୍ଣ ସଂସାରରେ ଏଇଟା ମୋର ଗୋଟାଏ ଖୁବ୍ ବଡ଼ gain ବୋଲି ତମେ ଭାବୁ ନାହଁ କି ?

Well, ସଂସାରରୁ କ'ଣ ପାଇଲି, କ'ଣ ନ ପାଇଲି, ଏ ବିଷୟରେ ଆଲୋଚନା କରିବାକୁ ମୁଁ ଏ ଚିଠି ଲେଖୁନାହିଁ – କିଞ୍ଚିତ୍ ବୈଷୟିକ ପ୍ରୟୋଜନ ହିଁ ମୋର ଏ ପତ୍ରର ଉଦ୍ଦେଶ୍ୟ ।

ମୋର ବଂଶଧରଗୁଡ଼ାକ ତ ଅଧିକାଂଶ ନାକ–କାନ୍ଦୁରା । ତାଙ୍କୁ ଏତେ ବଡ଼ ଗୁରୁତର ବିଷୟର ଭାର ଦେଲେ ହୁଏ ତ ମୋର ଉଦ୍ଦେଶ୍ୟ ପୂରଣ ହୋଇପାରିବ ନାହିଁ ।

ଏଥିସହ ମୋର ଉଇଲ ପଠାଇ ଦେଲି, ଚମକି ପଡ଼ ନାହିଁ – ଯାହା ଯେମିତି ଏଥିରେ ଲେଖାଯାଇଛି, ତା' ସମ୍ପୂର୍ଣ୍ଣ ସଜ୍ଞାନରେ ମୁଁ ଲେଖି ଯାଇଛି ।

ସଞ୍ଚିତ ନଗଦ ଅର୍ଥ ମୋର ବଂଶଧରମାନେ ପାଇ ପାରିବେ ନାହିଁ – ସେଥିରେ ତାଙ୍କର ଦାବୀ ନାହିଁ – ତା' ଛଡ଼ା ସେମାନେ ସମସ୍ତେ ପ୍ରତିଷ୍ଠିତ – ଏଇ ସାମାନ୍ୟ ଟଙ୍କାର କାମନା କରିବେ କାହିଁକି ? ପୈତୃକ ଘରବାଡ଼ି, ଜମାଜମି ସବୁ ସେମାନଙ୍କର ।

ସଦର ମହକୁମାରେ ନିକଟରେ ତିଆରି ହୋଇଥିବା ଘର ତମର ପିଲାମାନଙ୍କୁ ମୋର ଉପହାର – ନା, ତମ ଭଳି ଅପଦାର୍ଥକୁ କିଛି ଦେବା ମୋର ଉଦ୍ଦେଶ୍ୟ ନୁହେଁ ।

ବାକି ମୋର ଅର୍ଥ, ଯାହାର ପରିମାଣ ମଧ କିଛି କମ୍ ନୁହେଁ, ସେଥିରେ ନିଃସଙ୍ଗ, ବିପତ୍ନୀକ, ବିଧବାମାନଙ୍କ ନିମନ୍ତେ ବେଶ୍ ଗୋଟିଏ ବଡ଼ ଧରଣର ଆଶ୍ରମ କରାଯିବ – ସବୁ ଦିଗରୁ ଏହା ଯେପରି ସ୍ୱୟଂ ସମ୍ପୂର୍ଣ୍ଣ ହୁଏ – ସେଥିପ୍ରତି ଦୃଷ୍ଟି ଦିଆଯିବା ଉଚିତ – ବିପତ୍ନୀକ ଓ ବିଧବାମାନଙ୍କ ମଧ୍ୟରୁ ଯେଉଁମାନେ ପୁନଃ ବିବାହ କରିବାକୁ ଚାହିଁବେ, ସେ ବ୍ୟବସ୍ଥା ମଧ କରାଯିବା ଉଚିତ ।

ନିଃସଙ୍ଗର ଯଥାର୍ଥ ବେଦନା ତମେ ବୁଝିପାରିବ ନାହିଁ ।

ତେଣୁ ନିର୍ବୋଧଙ୍କ ଭଳି ମନ୍ତବ୍ୟ ନ ଦେଇ ମୋର ଇଚ୍ଛା ଯେପରି ପୂର୍ଣ୍ଣ ହୁଏ, ସେଇ ବ୍ୟବସ୍ଥା ହିଁ କରିବ ।

ଆଶା କରେ ଭଲ ଅଛ ଦାସ – ଅନେକ କଥା କହିବାକୁ ମନ ହେଉଛି, ଲେଖିବାକୁ ମନ ହେଉଛି ।

ସେଇ ନିର୍ବୋଧଗୁଡ଼ାଙ୍କୁ ଟିକିଏ ଦେଖ – ତମଛଡ଼ା ସେମାନଙ୍କର ଯଥାର୍ଥ ଶୁଭାକାଙ୍କ୍ଷୀ ଏ ବିରାଟ ପୃଥିବୀରେ ଆଉ କେହି ନାହାନ୍ତି ।

ଦେଖ, ମୁଁ ପୁଣି Sentimental ହୋଇ ପଡୁଛି । ଚାର୍ବାକ୍ ତ ଏକଥା କହି ନାହିଁ । ବିଦାୟ ଦାସ, କାହାରିକୁ ଖବର ଦେଇ ନାହିଁ– କାହାରିକୁ ଅସୁବିଧାରେ ପକାଇବାକୁ ମୁଁ ଚାହିଁ ନାହିଁ । ତମେ ସେମାନଙ୍କୁ ବୁଝାଇ କହିବ ଭୁଲ ବୁଝିବେ ନାହିଁ ।

ବଞ୍ଚିଥିବା ପର୍ଯ୍ୟନ୍ତ ବିଭିନ୍ନ ସମୟରେ ନିରର୍ଥକ ତମକୁ ଅନେକ ଅସୁବିଧାରେ ପକାଇଛି – କିନ୍ତୁ ଏକଥା ସତ ଯେ ମୋର ମୃତ୍ୟୁର ସମ୍ବାଦ ଯେତେବେଳେ ତମ ନିକଟରେ ପହଞ୍ଚିବ ତମେ ନିଶ୍ଚୟ କାନ୍ଦିବ ।

ପଛରେ କ୍ରନ୍ଦସୀ ରଖିଯିବାର ସୌଭାଗ୍ୟ କେତେଜଣଙ୍କର ଥାଏ ?

ଶ୍ରୀଯୁକ୍ତ ମହାନ୍ତି

ଚିଠି ସହ ଆସିଥିଲା ତାଙ୍କର ଶେଷ ଇଚ୍ଛା ସ୍ୱାକ୍ଷରିତ ପତ୍ର ।

ଶ୍ରୀଯୁକ୍ତ ମହାନ୍ତି ମୋତେ ଭୁଲି ନାହାନ୍ତି । ମୁଁ କ'ଣ ତେବେ ତାଙ୍କ ପାଇଁ କାନ୍ଦିବି ?



## ଅଜାଯୁଦ୍ଧେ

– "ଅରର୍ ର୍... ଘିର୍ ର୍ ର୍ – ଢାଏ – ଢାଏ ଦେ ଠେଲିନେ କାଳିଆ – କାଳିଆ ହୁଁ ଃ–"

– "ଆ ଚାଲିଆ ? ଆ ଚାଲିଆ, ଦେ ପେଲି ଦେ – ନାଲା ଘିର୍‌ର୍, ହେଇ ପଡ଼ିଲା ତୋ କାଳିଆ – "

– "ଆରେ ଯାଃ ! କାଳିଆ ପଡ଼ିବ ! ହେଇ ଦେଖ୍, ଫୁଉଣି ଉଠି ବସିଲାଣି । ହଁ ଦେଖିରେ, ଦେଖିରେ କାଳୀ, ଦେ ଗଡ଼େଇ ଦେ ନାଲିଆକୁ–"

–"ଆଉ ପକେଇବ । କାଳିଆ ନାଁ ତାମେତି ହଜାର ଗଣ୍ଡା ।"

– "ରଖ୍‌ମ ତୋ ନାଲିଆକୁ । ଦେଖିଚି ଏମିତି କେତେ ଗଣ୍ଡା । ପକେଇବି ଧରି ଚାପୁଡ଼ାଏ ଯେ – "

– "ଏତେ ଆଉ ପକାନା ମ, ହାତ ଗରମ ହୋଇଯିବ ।"

– "କଣ କହିଲୁରେ ମାଡୁଆ ?"

– "ମୁଁ ମାଡୁଆ ? ତୁ ମାଡୁଆ, ତୋ ବାପା ମାଡୁଆ, ତୋ' ଭାଇ ମାଡୁଆ– "

– "ତୁ ବାପ ନାଁ ଧଇଲୁ ? ଏତେ ସାହସ ?"

ଆଉ ପାଟିରେ ନୁହେଁ । ଏତେବେଳଯାଏ ଦୁଇଟି ନିରୀହ ଛେଳିକୁ କେନ୍ଦ୍ର କରି ଯେଉଁ ବାଗ୍ ଯୁଦ୍ଧ ଚାଲିଥିଲା, ତା' କ୍ରମେ ମାଲିକମାନଙ୍କ ମଧ୍ୟରେ ସଂକ୍ରମିତ ହୋଇଗଲା ।

ଆକାଶରେ ମଧ୍ୟାହ୍ନର ସୂର୍ଯ୍ୟ । ଚୈତ୍ରମାସିଆ ଦ୍ୱିପ୍ରହର । ଚାରିଆଡ଼େ ନିଆଁ ବର୍ଷୁଚି ଯେମିତି । ବାହାରେ କେହି କୁଆଡ଼େ ନାହାନ୍ତି । ବେଳ ଥାଉଁ ଥାଉଁ ଦେଖି ଶୁଣି ସମସ୍ତେ ଛାଇ ଯାଶ୍ରା କରିଛନ୍ତି ।

ଅସମୟରେ ବା ବାହାରକୁ ଆସିବାର କି ଦରକାର ? ପଞ୍ଚୁପଲ୍ଲୀର ରାମ କୁମ୍ଭାର ପୁଅ ସତିଆ ସକାଳୁଆ ଇସ୍କୁଲରୁ ଫେରି ବେସର ଦିଆ ନୂଆ ଆଳୁଭଜା ଦେଇ ପେଟେ ଦହି ପଖାଳ ଖାଇ ଗମ୍ଭାରି ଘରେ ଶୋଇଥିଲା–

ହଠାତ୍ ତାର କ'ଣ ମନେପଡ଼ିଯିବାରୁ ଉଠିବସିଲା । କୁମ୍ଭାରଗୃହିଣୀ ସକାଳୁ ଏତେବେଳଯାଏ ଭାଟି ପାଖରେ ଥାଇ କ୍ଳାନ୍ତ ହୋଇ ପଡ଼ିଥିଲେ । କାନିଟାକୁ ଓଦାକରି ନେଇ ମୁହଁରେ ପକାଇ ସେ ମଧ୍ୟ ପଡ଼ି ଯାଇଥିଲେ । ନିଦବାଉଳା କଣ୍ଠରେ କହିଲେ – 'ଉଠିଲୁକିରେ ସତିଆ ! କାଳିଆଟାକୁ ପୋଖରୀ ହୁଡ଼ାରେ ବାନ୍ଧିଦେଇ ଆଇଥେଲି । ଖରାପଡ଼ିଯିବଣି, ଧଅସି ଯାଇ ଛାଇତଳିଆ କରି ବାନ୍ଧିଦବୁଟି ବାପ–'

ତାଙ୍କର ସ୍ୱର ଅସ୍ୱାଭାବିକ ଭାବେ କୋମଳ ଶୁଣାଯାଉଥିଲା । ପିଲାମାନଙ୍କଠାରୁ କାମ ଆଦାୟ କରିବାକୁ ହେଲେ ସେ ଏହି ସ୍ୱରଗ୍ରାମର ବ୍ୟବହାର କରିଥାନ୍ତି ।

ଅନ୍ୟ ସମୟ ହୋଇଥିଲେ ସତିଆ ପ୍ରତିବାଦ କରିଥାନ୍ତା । ମାତ୍ର ଏବେ ସେ ଆଉ ବିରକ୍ତ ହେଲା ନାହିଁ । ଫଟ୍ କରି ଉଠି ବାହାରିଗଲା ।

କାଳିଆଟାକୁ ଛାଇତଳିଆ କରିବାକୁ ସତିଆ ତାକୁ ଏକାବେଳକେ ନଈକୂଳ ଆଡ଼େ ଘୋଷାଡ଼ି ନେଇ ଚାଲିଗଲା । ବହୁତ ବେଳଯାଏ ଖରାରେ ବନ୍ଧା ହୋଇ କାଳିଆକୁ ଖୁବ୍ ଗରମ ହେଉଥିବ । ନଈକୂଳ ବଡ଼ ବରଗଛ ତଳେ ଏତେବେଳକୁ ବଢ଼ିଆ ପବନ ।

କାଳିଆ ପଛକୁ ଓଟାରି ହେଉଥିଲା । ହୁଏତ ନଈକୂଳର ଥଣ୍ଡା ହାଓ୍ୱା ତାର ଦରକାର ନ ଥିଲା ।

ସତିଆ ତାକୁ ବୁଝାଉଥିଲା – ''ଛି' ସେମିତି ହୁଅନ୍ତି । କଥା ମାନନ୍ତି ନା । ନଈ କୂଳରେ କଅଣ ଅଛି ? ବିଲୁଆ ? ତତେ ଖାଇବ ? ଆରେ ମୁଁ ଥାଉ ଥାଉ ତୋର ଡର କାହାକୁ ମ ? ମାରିବିଧରି ଗୋଟାଏ ବୋଲୁଅ ଯେ, ଶଳା ବିଲୁଆର ସବୁ ଦାନ୍ତ ଝଡ଼ିପଡ଼ିବ । ଦେଖିଲୁ ନାଇଁ – ସେଦିନ ଗୋଟାଏ ବୋଲୁଅ ମାରି ମଧୁଆ ଘର ଗଛରୁ ଚାରି ଚାରିଟା ଆମ୍ବ ଝଡ଼ାଇଦେଲି । ଆଉ ଏଇତ ବିଲୁଆଟାଏଁ । ତତେ କଅଁଳିଆ ବରପତ୍ର ହେଁ ଏତେ ଏତେ ଭାଙ୍ଗି ଦେବି – ମଜାରେ ଖାଇବୁ । ସେଇଠି ଶୋଇଥିବୁ ।

ମୁଁ ମଧୁଆ ସାଙ୍ଗରେ ଖେଳି ସାରିଲେ, ତତେ ଫୁଉଣି ନେଇ ଆସିବି ଯେ–''

ତଥାପି କାଳିଆ ବୁଝୁ ନ ଥିଲା – ମେଁ ଏ ମେଁଏ ରଡ଼ି କରି ପଛକୁ ଫେରିଯିବାକୁ ଚାହୁଁଥିଲା ।

ସତିଆକୁ ଭାରି ବିରକ୍ତ ଲାଗୁଥିଲା । ଏଇ ମୁହୂର୍ତ୍ତରେ ଦି'ଟା ଉତ୍ତମ ମଧ୍ୟମ ଦେଇ କାଳିଆର ଅସାଧୁତା ଦୂର କରିଦେବାକୁ ତା'ର ହାତ ଖଜ ଖଜ ହୋଇ ଉଠୁଥିଲା ।

ସମୟ ବହିଯାଉଛି । ଅବାଧ କାଳିଆକୁ ବାଗକୁ ଆଣିବା ନିମନ୍ତେ ଆଉ ସମୟ ନଷ୍ଟ କରିବା ଉଚିତ ନୁହେଁ । କିମ୍ବା ତାକୁ ହାତଛଡ଼ା ମଧ୍ୟ କରିହେବ ନାହିଁ । ଏତେବେଳେ ନଈକୂଳକୁ ଯିବା ନିମନ୍ତେ ଏହି ଛେଳି ହିଁ ହେଉଛି ଏକମାତ୍ର ରକ୍ଷାକବଚ – ଯେକୌଣସି ପ୍ରଶ୍ନର ଉତ୍ତର ନିମନ୍ତେ ତାକୁ ଆଗକୁ ଠେଲିଦେଲେ ଚଳିବ ।

ଦୂରରୁ ମଧୁଆ କୁହାଟ ମାରି ଡାକୁଚି । ସତିଆ ଆଉ ଡେରି କରିବାକୁ ଉଚିତ ମନେକଲା ନାହିଁ । ରୋରୁଦ୍ୟମାନ କାଳିଆକୁ ଟାଣି ଟାଣି ଦଉଡ଼ି ଚାଲିଲା ।

ନଈକୂଳର ବଡ଼ ବରଗଛରେ ଦକ୍ଷିଣା ପବନର ଲୁଚକାଳି ଖେଳ । ପତ୍ରେ ପତ୍ରେ ନୂତନ ଜୀବନର ସ୍ପର୍ଶ – ଖରା ପଡ଼ି ଚକ୍ ଚକ୍ କରୁଚି । ପତ୍ରଗୁଡ଼ିକୁ ଯତ୍ନରେ ଯେମିତି କିଏ ତେଲ ହାତରେ ପୋଛି ସଜାଡ଼ି ରଖିଚି । ଗଛସାରା ଭର୍ତ୍ତି ହେଇଚି ନାଲି ଅସଂଖ୍ୟ ଫଳ । କେତେ ଯେ ପକ୍ଷୀ ଡାଳେ ଡାଳେ ଖୁନ୍ଦି ହୋଇ ସେଇ ଫଳ ଖାଇବାରେ ଲାଗିଛନ୍ତି ତାର ଇୟତ୍ତା ନାହିଁ ।

ଦୂରରେ ଦେଖାଯାଉଛି ଖୁବ୍ ସରୁ ଗୋଟିଏ ପାଣି ଗାର ରୂପା ପାତିଆ ଭଳି ଚକ୍ ଚକ୍ କରୁଚି – ବାଲି ଶଯ୍ୟାରେ ନାଚୁଚି ମରୀଚିକା ।

ଓହଳିପଡ଼ିଥିବା ଗୋଟିଏ ଡାଳ ଉପରେ ଚଢ଼ିବସି ମଧୁଆ ଅଶ୍ୱାରୋହୀ ସୈନିକର ଗାନ ଆବୃତ୍ତି କରୁଥିଲା । "ଚଲ୍ ମେରା ଘୋଡ଼ା ଟପ୍ ଟପ୍ ଟପ୍ – ନହକାଡାଳ ଉଠୁଥିଲା – ପଡୁଥିଲା – ପୁଣି ଉଠୁଥିଲା ।

ଅଦୂରରେ ମେଞ୍ଚାଏ ଛବ୍ ଛବ୍ ବରପତ୍ରକୁ ରସ୍ ରସ୍ କରି ଚୋବାଇ ଚାଲିଥିଲା ଗୋଟିଏ ନାଲିଆ ଛେଳି । ସେଇଟି ମଧୁଆର ପାସ୍‌ପୋର୍ଟ ।

ସତିଆ ନିଜରଟିକୁ ସେଇଠି ଛୁଟାଇଦେଇ ମଧୁଆର ଆନନ୍ଦରେ ଭାଗନେବାକୁ ଦୌଡ଼ିଗଲା ।

ଦୁଇଜଣ ଚୌଖସ୍ ସିପାହୀର ଭାର ଆଉ ବୀରରସ ସମ୍ବଳିତ ସଙ୍ଗୀତ ଧ୍ୱନିରେ ଯେତେବେଳେ ବରଗଛର ଡାଳ ମଟ୍ ମାଟ୍ ଡାକୁଥିଲା, ଠିକ୍ ସେତିକିବେଳେ ନାଲିଆ କାଳିଆର ଐକତାନ ଯୁଦ୍ଧ ହୁଙ୍କାର କାନରେ ପଡ଼ିଲା ।

ଆଗନ୍ତୁକ ପ୍ରତି ନାଲିଆର ମନୋଭାବ ଆଦୌ ସହନଶୀଳ ବୋଧ ହେଉ ନ ଥିଲା । ସେ ପ୍ରଥମେ ନୀଚ ସ୍ୱରରେ ପ୍ରତିବାଦ ଜଣାଇଲା – ମାତ୍ର ସେଥିରେ କିଛି ଫଳ ହେଲା ନାହିଁ । କାଳିଆ ନିର୍ବିଚାରରେ ଗୋଟିଏ ପଟରୁ ସବୁଜ ବରପତ୍ର ଛିଣ୍ଡାଇ କ୍ଷିପ୍ର ଗତିରେ ଚୋବାଇଯିବାକୁ ଲାଗିଲା ।

ନାଲିଆ ଆଉ ସମ୍ଭାଳି ପାରିଲା ନାହିଁ –

ମୁଣ୍ଡ ତଳକୁ ପୋତି ଦୁଇ ପାହୁଣ୍ଡ ପଛକୁ ଘୁଞ୍ଚିଗଲା । ତା' ପରେ ତ କାନ ଟେକି ଦୁଇ ଗୋଡ଼ରେ ଠିଆ ହୋଇଯାଇ କାଳିଆ ପେଟରେ... ଧୁସ୍....

ଅଳ୍ପ ସମୟ ମଧ୍ୟରେ ଅନେକ ଗିଳିପକାଇ କାଳିଆ କିଛିଟା ତୃପ୍ତ ହୋଇଥିଲା । ବିଶ୍ୱାସଘାତକ ନାଲିଆ ଆଡ଼କୁ ଅନାଇ ତାର କାନ ଦୁଇଟା ଠିଆ ହୋଇଗଲା । ସେ ସ୍ଥାନ ବଦଳାଇଦେଇ ବୀରୋଚିତ ଭଙ୍ଗୀରେ ତଳକୁ ମୁହଁ ପୋତି ଦି କଦମ୍ ଘୁଞ୍ଚିଗଲା । ତା' ପରେ ଦି' ପାଖରୁ ସମାନ୍ତରାଳ ଭଙ୍ଗୀରେ ପଡ଼ିଲା ଯୋଡ଼ିଏ ମୁଣ୍ଡ....

ବଳ କଷାକଷି ଚାଲିଲା....

ସିପାହୀ ଦୁଇଜଣ ଲଗାମ୍ ଛାଡ଼ିଦେଇ ଦ୍ୱନ୍ଦ୍ୱ ଯୁଦ୍ଧ ଦେଖୁ ଦେଖୁ ନିଜ ନିଜ ପକ୍ଷକୁ ଉତ୍ସାହିତ କରିବାକୁ ଲାଗିଲେ । ସତିଆ ମଧୁଆକୁ କହିଥିଲା – କେମିତି ବଢ଼ିଆ ଲଢ଼େଇ ଦେଖିରେ ଶଳା – ଗୋଟାଏ ରାବଣ ତ ଆଉ ଗୋଟାଏ ବିଭୀଷେଣ ।

ଅଳ୍ପଦିନ ତଳେ ଦୋଳପୂର୍ଣ୍ଣିମାରେ ରାମ–ରାବଣ ଯୁଦ୍ଧ ଯାତ୍ରା ଦେଖା ହୋଇଥିଲା – ତାକୁ ମନେପକାଇ ମଧୁଆ କହୁଥିଲା – ହଁ, ମୋ ନାଲିଟା ବିଭୀଷେଣ ଆଉ ତୋ କାଳିଆଟା ରାବଣ । ଦବ ଧରି ହତ୍ୟା କରି ।

ଘୃଣାରେ ନାସିକା କୁଞ୍ଚିତ କରି ସତିଆ କହୁଥିଲା–

–'ଆରେ ସମ୍ଭାଳ ତୋ ନାଲିଆକୁ। ହେଇ ଦେଖି ପଡ଼ିଲା । ଅବ୍ବବ୍... ଘିବ୍ବବ୍ – ଦେ ଠେଲିନେ କାଳିଆ – କାଳିଆ – କାଳିଆ.... ଡାଏ ... ଡାଏ...

ଆବେ ଯାଃ । ମାଡ଼ୁଆ, ତୋ ବୋପା ମାଡ଼ୁଆ ।

– ତୁ ମୋ ବାପ ନାଁ ଧଇଲୁ ? ଏତେ ସାହସ ?

ଏତେବେଳଯାଏ ସିପାହୀ ଦୁଇଜଣ ବାହନ ଉପରେ ବସି କଥାବାର୍ତ୍ତା ଚଳାଉଥିଲେ । ହଠାତ୍ ଦୁଇଜଣଯାକ ତଳେ ପଡ଼ିଯାଇ ଲଢ଼ିବାକୁ ଲାଗିଲେ...

ମଧୁଆକୁ ଦୁଇ ଚାରିଟି ବାଇଶିପଳିଆ ଥାପ୍‌ପଡ଼ ପକାଇ ସତିଆ କହୁଥିଲା – କୋଉ ବାପ ଏଥର ପିଠିରେ ପଡ଼ିବ ଆସି ପଡୁ – ଶଳା ।'

ସମ୍ମୁଖ ଯୁଦ୍ଧରେ ସତିଆକୁ ପାରିବା ସମ୍ଭବପର ନୁହେଁ । ମଧୁଆ ଚିନ୍ତା କଲା – ଏବେ ଆଉ ଥରେ ଯୁଦ୍ଧ ଘୋଷଣା ମାନେ ଆଉ କିଛି ଥାପ୍‌ପଡ଼ ଲାଭ....

ପୃଷ୍ଠ ଭଙ୍ଗ ଦେବା ହିଁ ଭଲ ।

ନାଲିଆକୁ ଛାଡ଼ି ମଧୁଆ ଉର୍ଦ୍ଧ୍ୱଶ୍ୱାସରେ ଗାଁ ଆଡ଼େ ଧାଇଁଲା ।

ବୋଧେହେବ ନଡ଼ିଆପତ୍ର ଗଦାଇ ପନିକି ଆରୋହଣ କରି ସର୍‌ର୍ ସର୍‌ର୍ ଶବ୍ଦରେ ସେଥିରୁ ଖଡ଼ିକା ସଂଗ୍ରହରେ ମନ ଦେଇଥିଲେ ମଧୁଆର ପିତାମହୀ ବଦନୀ ବେଓ୍ୟା ।

ଖରାବେଳ । ଶମ୍ଭୁଆଟା ବୋଧେ ଲଙ୍କାମରିଚ ଧରି ହାଟକୁ ଯାଇଛି । ବୋହୂଟା ଶୋଇପଡ଼ିଥିବ ବୋଧ ।

ବଦନୀ ବେଓ୍ୟାଙ୍କୁ ଖରାବେଳେ ନିଦ ମାଡ଼େ ନାହିଁ । କାମିକା ମଣିଷ – ବସିବା ଅପେକ୍ଷା କାଶିବାକୁ ଭଲପାଆନ୍ତି ।

ବଦନୀ ମନେ ମନେ ମଧୁଆକୁ ଖୋଜୁଥିଲେ ! କୁଆଡ଼େ ଗଲା ଟୋକା ଏତେ ଖରାରେ ?

ତାଙ୍କ ଆଖିଆଗରେ ଦେଖାଯାଉଥିଲା ବିରାଟକାୟ ଏକ ଆମ୍ବଗଛ – ନାଲିମୁଣ୍ଡିଆ ସୁନ୍ଦରୀ ଆମ୍ବରେ ଭରା । ଚଣା ଫୁଟିଲା ଦିନରୁ ବହୁ କଷ୍ଟରେ ବଦନୀ ତାକୁ ଆଖିଏ ଆଖିଏ ରଖିଛନ୍ତି ।

ଏବେ ପାଚି ଆସିଲାଣି । ପାଞ୍ଚକୋଡ଼ି ଟଙ୍କାରୁ କମ୍ ହେବ ନାହିଁ । ଝିଅ ଖବର ପଠେଇଚି । ତା ଘରକୁ ବୋଧେ ପଠାଇବାକୁ ହେବ ।

ଖରାଟା ଖୁବ୍ ବେଶୀ ଜଣାପଡୁଛି । ଗରମ ପବନ ଥରକୁ ଥର ଆସି ଚାରିଆଡ଼ ଢାଳିଦେଇ ଯାଉଚି ।

ବଦନୀ ବେଓ୍ୟା ବିରକ୍ତ ହୋଇ ଗାମୁଛାଟିକୁ ଓଦାକରି ବାରମ୍ବାର ଆଖି କାନ ପୋଛୁଥିଲେ, ଆଉ ବଡ଼ ବଡ଼୍ ହୋଇ ଖରାକୁ ଗାଳି ଦେଉଥିଲେ ।

ମଧୁଆଟା ଗଲା କୁଆଡ଼େ ଏ ଖରାରେ ? ଆଜି ଆସୁ ସେ ଅଲକ୍ଷେଣା ।

ହଠାତ୍ ଦୂରରୁ ମଧ୍ୟାହ୍ନର ସମସ୍ତ ନୀରବତାକୁ ଭଙ୍ଗ କରି ମଧୁଆର ଚିତ୍କାର ଶୁଣାଗଲା ।

ଗ୍ରାମସୀମା ସ୍ପର୍ଶ କରିବା ମାତ୍ରେ ମଧୁଆ ଘନ ଘନ ବିପଦ ସଂକେତ ଘୋଷଣା କରିବାକୁ ଆରମ୍ଭ କରିଦେଇଛି ।

ବଦନୀ ଉତ୍‌କର୍ଣ୍ଣ ହୋଇ ଶୁଣିଲେ । ତା' ପରେ ପନିକି ଛାଡ଼ି ଧଡ଼୍‌ପଡ଼୍ ଉଠିପଡ଼ିଲେ । ଭାରି ମଣିଷ । ଅଣଓସାରିଆ ଲୁଗାର ଗୋଟାଏ ପ୍ରାନ୍ତ ପନିକି ଅଗରେ ଲାଗି ଫର୍ କରି ଚିରିଗଲା ।

ତାକୁ ଦୃଷ୍ଟି ଦେବାକୁ ବେଳ ନାହିଁ । ବଦନୀ ଊର୍ଦ୍ଧ୍ୱଶ୍ୱାସରେ ରାସ୍ତାଆଡ଼େ ଛୁଟିଲେ । ତାଙ୍କ ହାତରେ ମୁଠାଏ ଖଡ଼ିକା ପିଅ ତଥାପି ଧରା ରହିଥିଲା ।

ମଧୁଆ ବଦନୀଙ୍କୁ ଦେଖି ସ୍ୱରଗ୍ରାମ ଆହୁରି ଉତ୍ତେଳିତ କଲା । ବଦନୀ ପାଖକୁ ଆସିଲେ । ଗଳାର ସ୍ୱରକୁ ଯେତେ ଦୂର ସମ୍ଭବ ଶାନ୍ତ ଆଉ ଅବିଚଳିତ ରଖି ପ୍ରଶ୍ନ କଲେ – "କଣ ହେଲା ? ଏମିତି କାହୁଚୁ କାହିଁକି ଶୁଣେ ?"

ମଧୁଆର କୋହ ଆହୁରି ବଢ଼ିଗଲା –

ଗଳାର ସ୍ୱରକୁ କ୍ରମେ କ୍ରମେ ଉତ୍ତେଳିତ କରି ବଦନୀ ପଚାରିଲେ –

– ଆରେ କ'ଣ ହେଲା କହ ଭଲା । ତମମାନଙ୍କ ଜ୍ୱାଳାରେ ମଣିଷ ଦଣ୍ଡେ ହେଲେ ଶାନ୍ତିରେ ବସିପାରିବ ନାହିଁ ।

ମଧୁଆ ଚିତ୍କାର ସଙ୍ଗେ ଅନୁନାସିକ ସ୍ୱର ମିଶାଇ ଖଣ୍ଡ ଖଣ୍ଡ କରି କହୁଥିଲା – ଶଳା ସତିଆ – ନାଲିଆକୁ ବରପତର ଦେଲା ନାହିଁ । ଆଉରି ବାପ ନାଁଧରି...

ବଦନୀଙ୍କର ଗଳା ଏକେବାରେ ସପ୍ତମକୁ ଉଠିଗଲା – ଫେଣେ ତୁ ସତିଆ ସାଙ୍ଗରେ ଖେଳିବାକୁ ଗଲୁ ? ତେତେ ଥର ଥର କରି ମନା କରୁଛି, ଆରେ ମଧୁଆ – ଯାଆନା । ବାପମାର ଗେହ୍ଲାପୁଅ – ଖାଇପିଇ ଷେଣ୍ଢ ହେଇଛି – ତା' ସାଙ୍ଗେରେ ତୁ ପାରିବୁ ? ଗଲୁ ଯେମେତେ, ପାଇଲୁ ସେମେତେ – ଏଠି ସକୋଉଛୁ କାହା ପାଖେରେ ? ତୋ' ମେତି ପିଲା ମୁହଁ ଚାହିଁ ନାହିଁ ପରା – ଭାବ୍ ମୋଘରୁ – ଚଉକାଠ ଡେଇଁଚୁ କି ତୋର ଦିନେକୁ ମୋର ଦିନେ । ନିଜକୁ ସମ୍ଭରଣ କରିନେଇ ବଦନୀ ପୁଣି କହିଥିଲେ – ଚାଲିଲୁ ମୁଁ ଦେଖେ କୋଉ ସତିଆ ସିଏ–

ମଧୁଆର ହାତ ଧରି ଘିଡ୍ ଘିଡ୍ କରି ଘୋଷାଡ଼ି ନେଇ ବଦନୀ ସରଢ଼ମିନ୍ ତଦନ୍ତରେ ବାହାରି ପଡ଼ିଲେ –

ମଧୁଆର ଊର୍ଦ୍ଧ୍ୱଶ୍ୱାସ ପଳାୟନରେ ସତିଆ ମନେ ମନେ ମହା ଖୁସି – ଶଳା ବଳ ଦେଖେଇହଉଥେଲା – ପାଉଥା ପୁଅ – ଦେଇଚି ଏମେତେ ପଟ୍‌କନ ଯେ....

ସତିଆ ନିଜର ପୁରାତନ ସ୍ଥାନକୁ ଫେରିଯାଇଥିଲା – ସିପାହୀକୁ ପିଠିରେ ଧରି ଘୋଡ଼ା ପୁଣି ଛୁଟୁଥିଲା ।

ମାତ୍ର ସେଥିରେ ପୂର୍ବର ସ୍ୱାଭାବିକତା ନ ଥିଲା । ଛନ୍ଦ କଟିଯାଇଥିଲା ଯେମିତି ।

ସତିଆ ଶୂନ୍ୟ ଦୃଷ୍ଟିରେ ଆକାଶ ଆଡ଼େ ଅନାଇ କଣ ଭାବୁଥାଏ ।

ନାଲିଆ – କାଳିଆର ଯୁଦ୍ଧ ତଥାପି ସରି ନ ଥିଲା –

ବଦନୀ ବେଓ୍ୱାଙ୍କର ସ୍ୱର କ୍ରମେ କ୍ରମେ ଉଚ୍ଚ ଗ୍ରାମକୁ ଉଠୁଥିଲା । ବିଭିନ୍ନ ଅଳଙ୍କାର ବିନ୍ୟାସରେ ସେ ଶତ୍ରୁ ପକ୍ଷୀୟ ନିଷ୍କ୍ରିୟତା ଭଗ୍ନ କରିବାକୁ ପଦ୍ମତୋଳା ବୋଲୁଥିଲେ ।

ନିଜ ଆଡ଼ୁ କଥାଟାକୁ ଉସ୍‌କେଇଦେଇ ଠିକଣାବେଳକୁ ଘର କଣରେ ଲୁଚି ବସିପଡ଼ିବାଟା ଯେ କେବଳ ଏହି କଳିକାଳରେ ହିଁ ସମ୍ଭବ ଏଥିରେ ତାଙ୍କର ସନ୍ଦେହ ନ ଥିଲା....

ତଥାପି ସେ ପଦ୍ମତୋଳା ଗାଉଥିଲେ...

କୁମ୍ଭାର ଗୃହିଣୀଙ୍କର ଦିନ ନିଦ୍ରା ବହୁତବେଳୁ ଭାଙ୍ଗି ଯାଇଥିଲା । ଘର ଭିତରେ ରହି ସେ ବ୍ୟାପାରଟାକୁ ମନେ ମନେ ବୁଝି ନେଇଥିଲେ – ଅସଲ ଆସାମୀ ଯେତେବେଳେ ଗାୟବ୍, ସେତେବେଳ ଏକାକିନୀ ଯୁଦ୍ଧକ୍ଷେତ୍ରକୁ ଅବତରଣ କରିବା ଉଚିତ ହେବ କି ନାହିଁ ସେହି ବିଷୟରେ ଚିନ୍ତା କରୁଥିଲେ ବୋଧହୁଏ....

ବଦନୀ ବେଓ୍ୱାଙ୍କର ଧୈର୍ଯ୍ୟ ଭାଙ୍ଗି ଭାଙ୍ଗି ଆସୁଥିଲା... ନିଜ ତୂଣୀରରୁ ବାଛି ବାଛି ସେ ସମସ୍ତ ଅସ୍ତ୍ର ପ୍ରୟୋଗ କରିସାରିବା ପରେ ଏବେ ବ୍ରହ୍ମାସ୍ତ୍ରରେ ହାତ ଦେଲେ ।

ମାଟି ଚକଟି ଚକଟି ଦି' ପଇସା ଅଣ୍ଟାରେ ହୋଇଗଲାରୁ ମଣିଷ ଆଉ ମଣିଷପରି ଦିଶୁ ନାହାନ୍ତି ଯାହାଙ୍କୁ, ଆଖି କାନର ବ୍ୟବସ୍ଥା ନାହିଁ ଯେଉଁ ପରିବାରରେ, ସେଇ ସୃଷ୍ଟି ଛଡ଼ା ପରିବାରକୁ, ଅତି ଶୀଘ୍ର ଭାରି ବିପଦରେ ପକାଇଦେବାକୁ ସେ ଊର୍ଦ୍ଧ୍ୱମୁଖରେ

କାହାକୁ ପ୍ରାର୍ଥନା କରୁଥିଲେ । ତାଙ୍କର ଅଭିଶାପ ବିଫଳ ହେବାର ନୁହେଁ – ଅତିଶୀଘ୍ର ପରିବାରର ସମସ୍ତ ପୁରୁଷ ଅପଘାତରେ ମରି, ଏହାର ସତ୍ୟତା ପ୍ରମାଣିତ ହୋଇଯିବ – ବିଭିନ୍ନ ବାକ୍ୟ ବିନ୍ୟାସରେ ସେ ଏହାହିଁ, ଘୋଷଣା କରୁଥିଲେ....

ବ୍ରହ୍ମାସ୍ତ୍ର ବାଜିଲା ଠିକ୍ ଜାଗାରେ – ପତି – ପୁତ୍ରଙ୍କୁ ମଶାଣିକୁ ପଠାଇ ଦେବ ଗୋଟାଏ ସାମାନ୍ୟ ବୁଢ଼ୀ, ଆଉ କୁମ୍ଭାରୁଣୀ ଏଠି ଏମିତି ଚୁପ୍ ଚାପ୍ ବସି ସବୁ ସହିନେବେ ?

ରାଣ୍ଡୀ ବୁଢ଼ୀ କ'ଣ କରିପାଇଚି କି ତାଙ୍କୁ ? ସେ ଏମିତିରେ ଦୁଃଖ ଧନ୍ଦାରେ ଥା'ନ୍ତି । କିଛି ନ କହିଲାରୁ କୁକୁର ଆସି ମୁଣ୍ଡ ଉପରେ ବସିଲାଣି ?

ନା । ଆଉ ନୁହେଁ – ଆଜି ସେ ତାର କୁହାଳିଆପଣ ଛଡ଼ାଇ ଦେବେ....

କୁମ୍ଭାରଗୃହିଣୀ ଅଞ୍ଚଳଟାକୁ ଦୃଢ଼ ଭାବରେ ଅଣ୍ଟା ଚାରିପଟେ ବୁଲାଇ ଆଣି ପାହାଚ ଓହ୍ଲାଇଗଲେ...

ବଦନୀ ବେଓ୍ୱାଙ୍କ ମୁହଁରୁ କଥାର ଫୁଲ ଝରି ଝରି ପଡୁଥିଲା... 'ଆଲୋ ରାଣ୍ଡ, ଆଲୋ ଆଣ୍ଠୁକୁରୀ, ପୁଅ –ଘଇତା – ମୁଣ୍ଡ – ଖାଇ, ଗରବ ରହିବ ନାହିଁ । ପୁଅକୁ ଷେଣ୍ଢ କରୁଚି । (ଉପରକୁ ଚାହିଁ) ହେ ଭଗବାନ୍ ! ସତରେ ଯଦି ଥିବୁ, ତୁଇ ଏକା ବୁଝିବୁ– ଅକାଳ ଚଡ଼କ ପକାଇବୁ....

ମଧୁଆ ସତିଆ କଳିରେ କୁମ୍ଭାରଗୃହିଣୀଙ୍କର ଯେ ଆଦୌ ଦୋଷ ନାହିଁ, ଏକଥା ବଦନୀ ବେଓ୍ୱା ବୁଝି ନ ଥିଲେ । ପୁଅ ଦୋଷ କଲା, ସିଏ ସିନା ଅଜ୍ଞାନ, ବାପ ମା ଆଖିକାନର ମୁଣ୍ଡ ଖାଇ କଣ କରିବାକୁ ବଞ୍ଚିଛନ୍ତି ? ପୁଅକୁ ଯାବତା କରିବେ ନାହିଁ !

ଏଇ ହେଲା ବଦନୀ ବେଓ୍ୱାଙ୍କ ଦର୍ଶନ । ତେଣୁ ସେ କଣ୍ଠ ସ୍ୱରକୁ ନି' ଖାଦରେ ବସାଇ ଅଭିଶାପ ରାଗିଣୀରେ ଆଳାପ କରିଯାଉ ଥିଲେ...

କୁମ୍ଭାରଗୃହିଣୀ ପହଞ୍ଚିଗଲେ...

ଆଳାପର ତାଳେ ତାଳେ ବଦନୀ ବେଓ୍ୱାଙ୍କର ଧନୁଭଳି ବଙ୍କା ହୋଇ ପୁଣି ସିଧା ହୋଇଯିବା, ଆଉ ହାତ ହଲାଇବା ଭଙ୍ଗୀକୁ କିଛି କ୍ଷଣ ନିରୀକ୍ଷଣ କଲେ ।

ତା' ପରେ ସେ ମଧ୍ୟ ଯୁଦ୍ଧ କ୍ଷେତ୍ରକୁ ଡେଇଁ ପଡ଼ିଲେ । ନାରୀମାନଙ୍କ କଣ୍ଠରେ ସପ୍ତମ ପରେ ମଧ୍ୟ ଗୋଟାଏ ପର୍ଦ୍ଦା ରହିଛି । ସେଇ ପର୍ଦ୍ଦାରେ ସ୍ୱର ଉତ୍ତୋଳନ କରି

ସେ ପ୍ରଥମେ ମଧୁଆକୁ ସମ୍ବୋଧନ କରି କହୁଥିଲେ – ଗଲା କୁଆଡ଼େ ସେ ଅଣ୍ଟେଇଶା ? ଆଜି ତା ରକତରେ ଚିତା ନ ଘିତିଲେ ମୁଁ ମହନା ମୁଦୁଲୀ ଝିଅ ନୁହେଁ ହାଡ଼ି ଝିଅ । ହେଇ କାନିରେ ଗଣ୍ଠି ପଇଲା । କୁମ୍ଭାର ଗୃହିଣୀ ଗଣ୍ଠି ପକାଇବା ଉଦ୍ଦେଶ୍ୟରେ କାନି ଅଣ୍ଡାଳିଲେ, ପାଇଲେ ନାହିଁ । ନିବୃତ୍ତ ନ ହୋଇ ତଥାପି ସେ ଆଳାପ ଚଳାଇଗଲେ । 'ଯାବତ ଇନ୍ଦ୍ରିୟ ଛୋଟ ନୋକଙ୍କ ଗାଳି ଶୁଣେଇବ । ଗାଁରେ ଯେମିତି ଆଉ ପିଲା ନାହାନ୍ତି । ମୋର ପିଲାଙ୍କ ଉପରେ ରାଣ୍ଡ ଆଣ୍ଠୁକୁରୀଙ୍କ ଆଖି ! ହାଃ ସେ ଆଖିରେ ଶୁକୁଆ କଣ୍ଟା ମରାହଉ । ହେ ଭଗବାନ୍ ! ଦିନ ଦି' ପହରେ ବିନା ଦୋଷରେ ଯିଏ ମୋ ପିଲାକୁ କଟା ସମ୍ପା କରୁଛି ତା' କଥା ତୁଇ ବୁଝ – ତୁଇ ବୁଝ ।

କିଛି କ୍ଷଣ ନୀରବରହି ନୂତନ ଶକ୍ତି ସଂଗ୍ରହ କରି ନେଇ କୁମ୍ଭାର ଗୃହିଣୀ ପୁଣି କହୁଥିଲେ – ''ଆଲୋ ମୋର ନନ୍ଦକା ବାଉଁଶ କଣିମେତି ପିଲାକୁ ଷେଣ୍ଢ ଯିଏ କହୁଚି, ସିଏ ଡାଆଣୀ । ନିଜ ପିଲାକୁ ବିଲୁଆ ଛ'ମାସ ଛ'ପକ୍ଷ ଖାଇଲେ ସରିବ ନାହିଁ । ଇଏ ଫେଣେ ମୋ ପିଲାକୁ ଖୁଣିବ ? ତୁ କିଏ ଲୋ ?''

ବଦନୀ ବେଓ୍ୱା ପାଖକୁ ଲାଗି ଆସିଲେ । ତାଙ୍କର ପରିଶ୍ରମ ସାର୍ଥକ ହୋଇଛି । ଗାତର ସାପକୁ ପଦ୍ମତୋଳା ବଇଁଶିରେ ସେ ବାହାରକୁ କାଢ଼ି ଆଣି ପାରିଛନ୍ତି ।

ଏଥର ଆଉ ତାଙ୍କୁ ବଳେଇଯିବ ନାହିଁ–

ଦ୍ୱିଗୁଣ ଉତ୍ସାହରେ ବଦନୀ ଆରମ୍ଭ କଲେ – ତୋରି ପିଲାକୁ ବିଲୁଆ ଖାଉ । ବାଉଁଶ କଣି ହଉ । ଚୋରୀ ଚୋରୀ ଉପରେ ଫେଣେ ସେମାଢୋରୀ । ଓଲଟି ମାଡ଼ ମାରି ପିଲା କଛିଆରେ ବୁଢ଼ିଟା ଆଉଚି ମୋ ପିଲାକୁ ଖୁଣିବାକୁ । ଝାଡ଼ାବାନ୍ତି ହଉ । ମରିଯା – ଭସୁଅଁ ହେଇଯା–

ବଦନୀ ନିଜର ଆଙ୍ଗୁଠିଗୁଡ଼ାକୁ ମଟ ମଟ କରି ଫୁଟାଉଥିଲେ ।

ଖିଙ୍କାରି ହୋଇ କୁମ୍ଭାର ଗୃହିଣୀ ବଦନୀ ବେଓ୍ୱାଙ୍କର ସମସ୍ତ ଅଭିଶାପ ଗୋଟି ଗୋଟି କରି ଫେରାଇ ଦେଉଥିଲେ ।

ଏ ପର୍ଯ୍ୟନ୍ତ ଦ୍ୱନ୍ଦ୍ୱ ଯୁଦ୍ଧ ଚାଲୁଥିଲା । କ୍ରମେ ଉଭୟ ପରିବାରର ଅନ୍ୟ ନାରୀମାନେ ଆସି ଯୁଦ୍ଧରେ ଯୋଗ ଦେଇ ଦଳକୁ ପୁଷ୍ଟ କରିବାକୁ ଲାଗିଲେ । ଉଭୟ ଦଳ ହାତ ଗୋଡ଼ ହଲାଇ ହଲାଇ ଅଭିଧାନ ବହିର୍ଭୂତ ଭାଷାମାନ ପ୍ରୟୋଗ କରୁ କରୁ ନିଜର ଅଜ୍ଞାତସାରରେ ଖୁବ୍ ପାଖାପାଖି ହୋଇଗଲେ । ପ୍ରତ୍ୟେକେ ସାଧ୍ୟମତେ ପ୍ରତିପକ୍ଷ

ଦଳରେ ନିଜର ଅନୁରୂପ ଯୋଦ୍ଧା ବାଛି ଯୁଦ୍ଧ ଚଳାଇଗଲେ ।

ସତିଆର ପାଞ୍ଚ ବର୍ଷର ଭାଇ ଭରତିଆ ଆଉ ମଧୁଆର ଚାରିବର୍ଷର ଭଉଣୀ ମାଳି ପରସ୍ପରକୁ ଦାନ୍ତ ଜିଭ ଦେଖାଇ ଉତ୍ତେଜିତ କରବାକୁ ଲାଗିଲେ – ଦାଣ୍ଡରୁ ମୁଠା ମୁଠା ଧୂଳି ନେଇ ଭରତିଆ ମଝିରେ ମଝିରେ ମାଳି ଆଡ଼କୁ ଫୋପାଡୁଥିଲା । ଆଉ ମାଳୀ କହୁଥିଲା – ତୋ ବାପ ମଲୁ । ତୁ ଲାଣ୍ଡ ହଅ–

କୁମ୍ଭାର ଗୃହିଣୀଙ୍କର ସାନ ଯା' ପ୍ରାୟ କାନ୍ଦ କାନ୍ଦ ହୋଇ ପାଖକୁ ଲାଗିଯାଇ, ତାଙ୍କୁ ଉପଦେଶ ଦେବାକୁ ଲାଗିଲେ – ଅପା ମୋ ମୁଣ୍ଡ ଖାଇବ, ତୁନି' ହ ତମେ ପାରିବ ଏଇ ରାବଣେଶରକୁ ? ଦିହରେ ତ ପଳେ ହେଲେ ମାଉଁସ ନାହିଁ । ଦେ, ତେମେ ତୁଉନି ହବଟି । ମୋ ରାଣତି । ମୁଁ ମରେତି–

ସାଧାରଣ ଭାବରେ ଦୁଇ ଯା'ଙ୍କ ଭିତରେ ସଦ୍‌ଭାବ ନ ଥାଏ । କଥାବାର୍ତ୍ତା ପ୍ରାୟ ବନ୍ଦ କହିଲେ ଚଳେ । ତେବେ ସେଦିନ ସାନ କୁମ୍ଭାରୁଣୀ ସଞ୍ଜ ସଞ୍ଜ ବାଡ଼ିରୁ ଫେରିଲାବେଳେ ବଦନୀ ବେଓ୍ୱାଙ୍କ ସୁନ୍ଦରୀ ଆମ୍ବଗଛ ବାଟ ଦେଇ ଆସୁଥିଲେ । ଗୋଟା ଦୁଇ ଆମ୍ବ ଅଦ୍ଭୁତ ଆକର୍ଷଣୀୟ ଢ଼ାଙ୍ଗେ ପଡ଼ିରହିଥିଲା ।

ସାନ କୁମ୍ଭାରୁଣୀ ନିଜକୁ ସମ୍ଭାଳି ପାରି ନଥିଲେ । ସେ କି ଜାଣନ୍ତି ଅଲକ୍ଷେଣୀ ବୁଢ଼ୀଟା ସେଇଠି ବଗ ମାଛକୁ ଅନାଇ ବସିଲା ପରି ଅନାଇ ବସିଛି ବୋଲି ?

ବଦ୍‌ମାସ ବୁଢ଼ୀର ବେଶୀ ମୁହଁ ହୋଇଗଲାଣି । ଆଜି ବାଗରେ ପାଇ ସାନ କୁମ୍ଭାରୁଣୀ ବୁଢ଼ୀ ସହିତ ତା'ର ଊର୍ଦ୍ଧ୍ୱ ଓ ଅଧସ୍ତନ ପୁରୁଷମାନଙ୍କୁ ନର୍କଗାମୀ କରାଇବାକୁ ଲାଗିଲେ ।

ପ୍ରତିବେଶିନୀ ବିମଳୀ ବୋଉ ବଦନୀ ବେଓ୍ୱାଙ୍କୁ ଶୁଣାଇ ଶୁଣାଇ କହୁଥିଲା – "ତେମେ ଯେମିତି ନାନି ! ଆଲୋ, ଭାତ ପାଣି ଦେଇ ରଖିଲି କୁକୁରକୁ – ନା କୁକୁର... ମୋଓରି ଉପରକୁ – କାହିଁ ରାମଚନ୍ଦର ମାହାର୍ଜା – କାହିଁ ରାମିଆ ଭଣ୍ଡାରୀ – ଏ ଛୋଟ ନୋକଙ୍କ ସାଙ୍ଗରେ ବକ ବକ ହେଲେ ନିଜର ମହତ ଯିବ ଗୋ – ତେମେ ତୁନି ହଅମ–

ବଦନୀ ବେଓ୍ୱାଙ୍କର କିଛି ଟଙ୍କାପଇସାର କାରବାର ରହିଛି । ବିମଳା ବାପା ଏ ମାସରେ ଟଙ୍କା ବଟେଇ ନାହିଁ । ଦୁଇ ଚାରିଦିନ ହେଲା ବିମଳା ବୋଉ ବଦନୀ ବେଓ୍ୱାଙ୍କୁ ଖୁସାମଦ କରୁଥିଲେ ।

ବଦନୀ ହଠାତ୍ କୌଣସି ବିଷୟରେ କାହାକୁ କିଛି କଥା ଦିଅନ୍ତି ନାହିଁ । ବିମଳୀ ବୋଉ ମଧ୍ୟ ସେମିତି କିଛି ଭରସା ପାଇ ନାହାନ୍ତି–

ଆଜି ଠାକୁରେ ମୁହଁ ଟେକି ଚାହିଁଲେ ପାଞ୍ଚଟଙ୍କା ଆପେ ଆପେ ବୁଢ଼ୀ ପେଟରାରୁ ବାହାରିଆସିବ ।

ସମସ୍ତଙ୍କର ସ୍ୱରକୁ ଡୁବାଇଦେଇ ବିମଳା ବୋଉଙ୍କର ସ୍ୱର ଶୁଣାଯାଉଥିଲା ।

ଯୁଦ୍ଧ ପୁରା ଦମ୍‌ରେ ଚାଲିଥିଲା ।

ଚରମ ମୁହୂର୍ତ୍ତରେ ଦୂରରୁ ଦେଖାଦେଲେ ଶମ୍ଭୁନାଥ, ବଦନୀ ବେଓ୍ୱାଙ୍କର ଜ୍ୟେଷ୍ଠପୁତ୍ର । ସେ ସିଧା ହାଟରୁ ଫେରୁଛନ୍ତି । ମୁଣ୍ଡରେ ଗାମୁଛାଟିକୁ ପଗଡ଼ି ଭଳି ବାନ୍ଧି ରଖିଛନ୍ତି । ତା' ଉପରେ ଶୂନ୍ୟ ଟୋକେଇ ।

ଲଙ୍କା ମରିଚ ପାଇଁ ଭଲ ଦର ସେ ପାଇ ନାହାନ୍ତି । ଖରାଦିନେ ଗାଈ ଛେଳିଙ୍କ ମୁହଁରୁ ବଞ୍ଚାଇ ଦେହର ରକ୍ତକୁ ପାଣି ଫଟାଇ ବାରମ୍ବାର କିଆରିକୁ ପାଣି ମଡ଼େଇ ଯେଉଁ ଫସଲ ସେ ଫଳାଇଥିଲେ, ତା' ମାଟି ଦରରେ ତାଙ୍କୁ ଛାଡ଼ିଦେବାକୁ ପଡ଼ିଚି ।

ତାଙ୍କର ମନ ପ୍ରସନ୍ନ ନାହିଁ –

ଯୁଦ୍ଧ ଭୂମିରେ ପ୍ରବେଶ କରି ସେ ପ୍ରଥମେ ନୀରବରେ ପରିସ୍ଥିତିଟାକୁ ବୁଝିବାକୁ ଚେଷ୍ଟା କଲେ । ତା' ପରେ ବଦନୀ ବେଓ୍ୱାଙ୍କୁ ଲକ୍ଷ୍ୟ କରି ଅସ୍ୱାଭାବିକ ଶାନ୍ତ କଣ୍ଠରେ ପ୍ରଶ୍ନ କଲେ – ଫେଣେ କଣ ହେଲା ତମର ସବୁ ? ଏତେ ପାଟିତୁଣ୍ଡ କାହିଁକି ।

ପୁରୁଷର ପ୍ରବେଶରେ ସମସ୍ତ ପ୍ରମିଳାବାହିନୀ ଚୁପ୍ ।

ବଦନୀ ବେଓ୍ୱା ଆକାଶଫଟା ଗର୍ଜନ କରି ଉଠିଲେ । ହବ ଆଉ କ'ଣ ମ ? ମୋର ଦୁଧଖିଆ ପିଲାଟାକୁ ଦି' ପହରେ ଖୁଣିଲେ, କେତେ ଆଉ ସହିବି ? ମଣିଷ ଜନମ ତ । ମରଣ ହଉ ନାହିଁ ଯାହା ମତେ –

ଶମ୍ଭୁନାଥ ଅଧୈର୍ଯ୍ୟ ଭାବେ ପ୍ରଶ୍ନ କରୁଥିଲେ, ଆରେ କଣ ହେଇଚି କହିଲ ଭଲା ।

ତାଙ୍କର ମୁଣ୍ଡ ଆସ୍ତେ ଆସ୍ତେ ଗରମ ହୋଇ ଆସୁଥିଲା ।

କୁମ୍ଭାର ଗୃହିଣୀ ନିଜର ଦଳବଳଙ୍କୁ ନେଇ ଗୋଟାଏ ପାଖରେ ଠିଆ ରହିଥିଲେ । ଏକା ସାହିର ଲୋକ । ଶମ୍ଭୁନାଥଙ୍କୁ ସେ ପରଦା କରନ୍ତି ନାହିଁ । ତୀବ୍ର କଣ୍ଠରେ ସେ

ଜବାବ ଦେଲେ - ତୋ ପିଲାକୁ ଖୁଣିଲି, ସେଇଟା ଗୁଦୁଶିଗଲା । ଆଉ ମୋ ଏକୋଇରବଳାକୁ ଖେଣ୍ଡ କହିବ, ଛ' ମାସ ଛ' ପକ୍ଷ ବିଲୁଆ ଖାଇବ ବୋଲି କହିବ । ଛଏ ଏକା ଏତେ ସେରନ୍ତା । ହାଃ, ତୋ ଜନମରେ-

କୁମ୍ଭାରୁଣୀ ଅଭିନୟ ସାହାଯ୍ୟରେ ନିଜର ଅପ୍ରୀତି ଜ୍ଞାପନ କରୁଥିଲେ ।

ଶମ୍ଭୁନାଥ ପୁଣି ପ୍ରଶ୍ନ କରୁଥିଲେ, ଏ ସବୁ କଥା ଉଠିଲା କାହିଁକି ? କିଏ ଆରମ୍ଭ କଲା ଆଗ ।

କୁମ୍ଭାରୁଣୀ ପୁଣି କହୁଥିଲେ, ପିଲାରେ ପିଲାରେ ଝଗଡ଼ା, ସେଥିରେ ଯଦି କିଏ କଣ୍ଟା ବାଡ଼ରେ ଲୁଗା ପକାଇ କଳିଆ କରିବାକୁ ବାହାରିପଡ଼େ ତ ମୁଁ କଣ କରିବି । ମୋର ରୋଗୀଣା ପିଲାଟାକୁ -

ଶମ୍ଭୁନାଥ ଆଉ ସ୍ଥିର ରହି ପାରିଲେ ନାହିଁ । ଗୋଟାଏ ତୀବ୍ର ହୁଙ୍କାରରେ ସମସ୍ତଙ୍କୁ ଚମକାଇ ଦେଇ ଦାନ୍ତ ରଗଡ଼ି କହୁଥିଲେ, 'କାହିଁ ସେ ହାରାମଜାଦା । ଆଜି ତା' ପୁଅ ପଣିଆ ବାହାରକରୁଚି । ବାହାର କଳି ଆଣି ଘରେ ପୂରେଇବ । ପିଲା ଯଦି ଏତେ ଦୁରୁବଳିଆ ତମର ତେବେ ମୋ ପିଲା ସାଙ୍ଗରେ ଖେଳିବାକୁ ଦଉଚ କାହିଁକି । କାନିରେ ବାନ୍ଧି ବୁଲୁନ ।

କୁମ୍ଭାର ଗୃହିଣୀ ଗୋଟାଏ କଡ଼ା ଜବାବ ଦେଇ ଶମ୍ଭୁଆଟାକୁ ଚୁପ୍ କରି ଦେବାକୁ ଯାଉଥିଲେ । ହଠାତ୍ କଣ ମନେ ପଡ଼ିଯିବାରୁ ଧପ୍ ଧପ୍ କରି ନିଜ ଘର ଆଡ଼କୁ ଫେରିଯାଇ ହାତ ବଢ଼ାଇ ଗର୍ଜିବାକୁ ଲାଗିଲେ - ଆଲୋ ମୁଁ କଣ କରିବି ଲୋ - ମାଇକିନିଆ ପାଇ ଏ ଗୁଣ୍ଡା ମତେ ମାରି ପକେଇଲାଲୋ, ଆରେ ହେ ମାଇଚିଆ - କୁଆଡ଼େ ଗଲୁ ? ତୋରି ଯୋଗେ ମୁଁ ଦାଣ୍ଡରେ ଠିଆ ଠିଆ ମାଡ଼ ଖାଉଚି - କଥାରେ କହନ୍ତି ନାଇଁ - ଘଇତା ଅଯୋଗ୍ୟ ପଣେ - ନା ମାଇପ ଶୋଉଚି ଚାକୁଣ୍ଡା ବଣେ - ମାଇପଙ୍କ ପରି ହାତେ ଓଢ଼ଣା ଦେଇ ଘର କଣରେ ବସିଲେ, ମୁଁ କାହାଁତକ ସହିବି ?

ଯାହାକୁ ଲକ୍ଷ୍ୟ କରି କୁମ୍ଭାର ଗୃହିଣୀ ଏତକ ବାଣ ଛାଡ଼ିଲେ, ସେହି ଗୃହକର୍ତ୍ତା ଖୋଦ କୁମ୍ଭାର । ସେ ଅବଶ୍ୟ ମୁଣ୍ଡରେ ଓଢ଼ଣା ଦେଇ ବସି ରହି ନ ଥିଲେ । ପେଣ୍ଡୁଳାଏ ମାଟି ଧରି ଚକ ପାଖରେ ବସି ହାଣ୍ଡି ଗଢ଼ିବାକୁ ଭାବୁଥିଲେ । ମନ କିନ୍ତୁ ତାଙ୍କର ଦାଣ୍ଡଆଡ଼େ ପଡ଼ି ରହିଥିଲା ।

ସେ ଏମିତି ଧରଣର ଜୀବ, ଯାହାର ଲାଙ୍ଗୁଡ଼ ନ ମୋଡ଼ିଲେ ପାଦେ ଚଂକିବେ ନାହିଁ । ଥରେ ହାତ ମାରିଦେଲେ ଲାଙ୍ଗୁଡ଼ ଅଗରେ ଠିଆହେବେ ।

ଚକ ବୁଲୁଥିଲା । ଆଉ ସେ ଚିନ୍ତା କରୁଥିଲେ, ଖାଲି ହାତରେ ବଦନୀ ବେଓ୍ଵାଙ୍କ ଭଳି ସ୍ୱନାମଧନ୍ୟା ମହିଳାଙ୍କ ସମ୍ମୁଖୀନ ହେବା ନିରାପଦ ହେବ କି ନା... ।

ପତ୍ନୀର ଧକ୍କାରରେ ଓଡ଼ିଆ ଛାଡ଼ି ଏକେବାରେ ବଙ୍ଗଳା ଧରି ଯୁଦ୍ଧକ୍ଷେତ୍ରକୁ ଡେଇଁ ପଡ଼ିଲେ – ''କେ କେ ରେ ହାରାମଜାଦ, ଆମାର ପରିବାରକେ ଅପ୍‌ମାନ କରେ'' ରେ ରେ କାର ଶବ୍ଦରେ ବଦନୀ ବେଓ୍ୟାଙ୍କ ଆଡ଼କୁ ଲକ୍ଷ୍ୟ କରି ଧାବିତ ହେଉ ହେଉ ସେ କହୁଥିଲେ – ''ଏଇ ବୁଢ଼ୋ ମାଗୀ, ନଷ୍ଟେର ଗୋଦା – ତାକେଇ ଆଜ୍ ଆମି ଖୁନ୍ କରିବ ।'

କୁମ୍ଭାର କେତେଦିନ କଲିକତାରେ ରହି ଆସିଛନ୍ତି, ଯୁବକ ବୟସରେ ସମସ୍ତେ ଯିମିତି ଅନେକ ସୁନେଲି ସ୍ୱପ୍ନ ନେଇ କଲିକତା ଯାଆନ୍ତି, ସେ ବି ସେମିତି ଯାଇଥିଲେ । ଅଳ୍ପ ଦିନି ପରେ ସେ ଫେରିବା ବେଳକୁ ଯାହା ନେଇ ଆସିଥିଲେ ତା' ହେଉଛି ପ୍ରଥମ ସେ ନିଜେ ଗଢ଼ିଥିବା ପଇସିକିଆ ଆଟିକା ତୁଲ୍ୟ ଗୋଟିଏ ପିଳେହୀ, ଦ୍ୱିତୀୟ କିଛି ବଙ୍ଗଳା କଥା ।

ଦୁଇଟିଯାକ ତାଙ୍କୁ ଆଉ ଛାଡ଼ି ଯାଇ ନ ଥିଲେ ।

ଭୀମର ପୁରୁଷ ବାକ୍ୟ ଶୁଣି ବ୍ୟାସସରୋବରରୁ ଦୁର୍ଯ୍ୟୋଧନ ବାହାରି ଆସିଲା ପରି ରକ୍ତ ଚକ୍ଷୁ କୁମ୍ଭାର ଯେତେବେଳେ ଚକ୍ଷୁ ଘୂର୍ଣ୍ଣିତ କରୁ କରୁ ଆସର ଆଡ଼କୁ ଧାବିତ ହେଉଥିଲେ, ବଦନୀ ବେଓ୍ୟାଙ୍କ ଛାତି ଧଡ଼ ପଡ଼ ହେଉଥିଲା ।

କୁମ୍ଭାରଟା ଗୁଣ୍ଡା –

ବଦନୀ ବେଓ୍ୟା ଖପ୍‌କରି ଶମ୍ଭୁନାଥଙ୍କ ହାତ ଧରି ତାଙ୍କୁ ଦଳ ଭିତରକୁ ଟାଣି ନେଉ ନେଉ କହୁଥିଲେ 'ଆଲୋ ମୋ ମାଲୋ – ମୁଁ କୁଆଡ଼େ ଯିବିଲୋ । ଶମ୍ଭୁ ପଳେଇଆ ବାପ । ଦେଖୁନୁ କେମିତି ମାଡ଼ି ଆଉଚି । ମୋ କପାଳରେ ଆଜି କଣ ଅଛି କେଜାଣି ।

ଘୋଷରା ଓଟରାରେ ଶମ୍ଭୁନାଥ ଦୁଇପାହୁଣ୍ଡ ପଛକୁ ଘୁଞ୍ଚି ଯାଇଥିଲେ । ଅତିଶୀଘ୍ର ନିଜର ସ୍ଥାନ ରକ୍ଷା ନ କଲେ, ଶତ୍ରୁ ପକ୍ଷ ସେତକ ଅଧିକାର କରି ନେବ ।

ସେଇଟା ନିଶ୍ଚୟ ଖୁବ୍ ଗୌରବର ହେବ ନାହିଁ ।

ଏକା ଝଟକାରେ ନିଜକୁ ବଦନୀ ବେଓ୍ୱାଙ୍କ ବନ୍ଧନରୁ ମୁକ୍ତ କରାଇ ନେଇ ମେଘମନ୍ଦ୍ର କଣ୍ଠରେ ଶମ୍ଭୁନାଥ ଘୋଷଣା କରୁଥିଲେ – 'ଆରେ ଦେଖିଚି ମ ଏମିତି କେତେ ଗୁଣ୍ଡା । ୟା' ଭଳି ଦଶଟା ଏକା ମୋ କାଣି ଆଙ୍ଗୁଠିକୁ ସରି ହେବ ନାହିଁ । ଆରେ ଦେଖ ହୋ । ବୁଝା ନାହିଁ ସୁଝା ନାହିଁ ମାଇକିନା କଥା ଧରି –

ଶୀର୍ଣ୍ଣ ବୁକୁ ଯଥା ସମ୍ଭବ ସ୍ଫୀତ କରି ପରୁଷ କଣ୍ଠରେ କୁମ୍ଭାର କହୁଥିଲେ – ଆରେ ଆଗେ ଆମାକେ ସମ୍ଭାଲ୍ । ମାଇକିନା ଭିତରେ ଲୁଚି କଥା ବଲ୍‌ଚି –'

ଯୁଦ୍ଧ ଜମିଗଲା –

ନାରୀମାନେ ପୂର୍ବରୁ ବ୍ୟାପାରଟିକୁ ଏମିତି ସଜାଡ଼ି ରଖିଥିଲେଯେ, କଥା ମୂଳରେ ସାପ ଅଛି ନା ବେଙ୍ଗ ଅଛି ଅଥବା ମୂଳରୁ କିଛି ନାହିଁ, ସେ ବିଷୟ ସେ ଚିନ୍ତା କରିବାକୁ ପୁରୁଷ ପୁଙ୍ଗବମାନେ ଉଚିତ ମନେ କଲେ ନାହିଁ –

ଉଭୟ ପରିବାରର ନୂତନ ନୂତନ କୁହା ପ୍ରତିବେଶୀମାନେ ଆନନ୍ଦୋତ୍‌ଫୁଲ୍ଲ ମନରେ ଶୁଣିବାକୁ ଲାଗିଲେ । ଶେଷକୁ ଯେତେବେଳେ ଶମ୍ଭୁନାଥ ଆଉ କୁମ୍ଭାର ପରସ୍ପରର ଖୁବ୍ ନିକଟ ହୋଇ ପରସ୍ପରର ଅଙ୍ଗ ସ୍ପର୍ଶ କରିବାକୁ ଉଦ୍ୟତ, ନାରୀମାନଙ୍କର କ୍ରନ୍ଦନ ରୋଳରେ ଗ୍ରାମପଥ ମୁଖରିତ – ମନ୍ଦ ପଦକ୍ଷେପରେ କେତେଜଣ ପ୍ରତିବେଶୀ ଆସରରେ ପ୍ରବେଶ କରି ହାତାହାତିଟା ବନ୍ଦ କଲେ ।

ନାଃ – ବେଶୀ ହୋଇଯାଉଛି –

ସେମାନେ ଉଭୟ [illegible] ପକ୍ଷକୁ ଠେଲି ଠାଲି ନିଜ ନିଜ ଘର ଆଡ଼କୁ ନେଇ ଯାଉଥିଲେ ।

ଯେତେବେଳଯାଏ ଦେଖାଯାଉଥିଲା ଉଭୟ ପକ୍ଷ ପରସ୍ପରକୁ ଧମକାଇବାକୁ ଭୁଲି ନ ଥିଲେ –

ଉଭୟ ଶିବିରରେ ଯୋଦ୍ଧାମାନେ ଗୋପନ ପରାମର୍ଶରେ ଲିପ୍ତ ଥିଲେ । ବଦନୀ ବେଓ୍ୱା ଜିଦ୍ ଧରି ବସି ରହିଥିଲେ, ନାଲିମାଟି ମଡ଼େଇ କୁମ୍ଭାର ଟୋକାର ଅଣ୍ଟାର ଗରମ ଭାଙ୍ଗିବାକୁ ହେବ ।

ଗଳଦଶ୍ରୁନୟନା ଭୂମିଶାୟିନୀ ଆଲୁଳାୟିତକୁନ୍ତଳା କୁମ୍ଭାରଗୃହିଣୀ ସ୍ୱାମୀର ଅପାରଗତା ପ୍ରତି ତୀକ୍ଷ୍ଣ ଶରମାନ ପ୍ରୟୋଗ କରୁଥିଲେ । କୁମ୍ଭାର ଗମ୍ଭୀର ଭାବରେ କହୁଥିଲେ – ''ଯାଉ ଯାବ୍ ରହୁ ମାବ୍ । କିନ୍ତୁ ଏକ୍‌ଟା କରତେଇ ହବେ–''

ଘଟଣାର ନାୟକ ସତିଆ ବା ସତ୍ୟସୁନ୍ଦର କିଛିକ୍ଷଣ ଏକା ଏକା ଅଶ୍ୱଚାଳନା କରିବା ପରେ କ୍ଳାନ୍ତ ହୋଇପଡ଼ିଲା–

ନା – ଶଳା ମଧୁଆଟା ଏତିକିବେଳକୁ ପଳାଇଲା । ତାକୁ ଖୋଜି ଆଣିବାକୁ ପଡ଼ିବ ।

ବଦନୀ ବେଓ୍ୱା ପୋଖରୀଆଡ଼େ ଯାଇଥିଲେ । ଶମ୍ଭୁନାଥ ସରପଞ୍ଚ ପାଖକୁ ବାହାରିଗଲେ ।

ଘରେ କେହି ନାହାନ୍ତି ।

ମଧୁଆ ଗୋଟାଏ ସ୍ଲେଟ୍ ଧରି ସେଥିରେ ନାନା ପ୍ରକାର ରେଖା କାଟି ଚାଲିଥିଲା । ହଠାତ୍ ଝରକା ପାଖରେ ଫୁସ୍‌ଫୁସ୍ କଣ୍ଠରେ ଶୁଣାଗଲା – 'ମଧୁଆ ।'

ଝରକା ତଳେ ଘନ ବଣସାରୁ ଜଙ୍ଗଲ–

ମଧୁଆ ତୀକ୍ଷ୍ଣ ଦୃଷ୍ଟିରେ ତଳକୁ ଅନାଇଲା । ସାରୁ ବଣ ଭିତରୁ ଗୋଟିଏ ଛୋଟ ମୁଣ୍ଡ ବାହାରି ଆସିଲା ।

ମଧୁଆ ଅନୁଚ୍ଚ କଣ୍ଠରେ କହୁଥିଲା – କୁଆଡ଼େ ଥେଲୁରେ ଏତେ ବେଳଯାଏ ? ଏଣେ ଖୁବ୍ କଳିଆ ହୋଇଗଲା ।

ସତିଆ ଗମ୍ଭୀର ଭାବରେ ମୁଣ୍ଡ ଟୁଙ୍ଗାରିଲା । ଅର୍ଥାତ୍ ସେ କିଛି କିଛି ଶୁଣିଛି ।

ସତିଆ କହୁଥିଲା 'ଆ ଖେଳିବୁ ଆ' ।

ମଧୁଆ କହୁଥିଲା, ଖେଳିବି ? ତୋ ସାଙ୍ଗରେ ଖେଳିବି ? କାମୁଡ଼ି ଦେଇ ମୋତେ ରକ୍ତବୁହା କରିଦେଲୁ । ଫୁଉଣୀ ଡାକିବାକୁ ଆଇଚି ?

ସତିଆ କୋମଳ କଣ୍ଠରେ କହୁଥିଲା – ରାଗିଲୁକିରେ ? ରାଗରେ ଏମିତି ହୋଇଯାଏ । ହେଇ ଦେଖୁନୁ, ତୁ କଣ ମତେ ଆମ୍ପୁଡ଼ି ଦେଇନୁ କି ?

ସତିଆ ନିଜର ହାତ ଝରକା ପାଖକୁ ଟେକି ଦେଖାଇଲା । ସେଥିରେ ଲମ୍ୱା ଲମ୍ୱା ଆମ୍ପୁଡ଼ା ଦାଗମାନଙ୍କରୁ ଏବେ ବି ରକ୍ତ ଝରୁଥିଲା ।

ମଧୁଆର ମନ କୋମଳ ହୋଇଗଲା, ଆହା ! ତୋରତ ଏତେ ରକତ ବୋହୁଚି । କଣ ଦେଇଚୁ ସେଥେରେ ?

ତାସଲ୍ୟରେ ସତିଆ କହୁଥିଲା – ସେ ତାର ଆପେ ଭଲ ହେଇଯିବ । ଦେବି ଆଉ କଣ ?

ମଧୁଆ ଉପଦେଶ ଦେଉଥିଲା, ନା ନା ଗନ୍ଧି କ୍ଷୀର ନଗେଇ ଦେଲେ ଦରଜ ଖାଇଯିବ । ସେଦିନ ବୋଉ ହାତରେ ନଗୋଉଥିଲା ମୁଁ ଦେଖିଛି ।

ସତିଆ କହୁଥିଲା ଆ ଯିବା ?

ମଧୁଆ ନିରାଶ କଣ୍ଠରେ କହୁଥିଲା, ଯିବି କେମିତି ? ଯେତେକ ବଦମାସୀ ବୁଦ୍ଧି ବାପାର –

ସରପଞ୍ଚ ପାଖକୁ ଗଲା, ମତେ ଏଣେ ଦଶଖଣ୍ଡ ଅଙ୍କ ଦେଇ ବସେଇ ଯାଇଚି – ନିଜକୁ ପଛେ ଆସୁନଥିବ, ଆଉ ମୁଁ କେମିତି କରିବି ? ଆସିଲେ ବାଡ଼େଇବ ।

ସତିଆର ଅଙ୍କରେ ମଥା ସଫା, ଝରକାବାଟେ ସ୍ଳେଟ୍ ପେନ୍‌ସିଲ୍ ନେଇ ସେ ଅଳ୍ପ ସମୟ ଭିତରେ ଅଙ୍କଯାକ କରିପକାଇଲା ।

ଆଉ ଏଥର ଯିବାରେ ବାଧା ନାହିଁ । ମଧୁଆ ଧୀରେ ଧୀରେ କବାଟ ଫିଟାଇ ବାହାରକୁ ବାହାରିପଡ଼ିଲା । ଯାଉଁ ଯାଉଁ ମଧୁଆ ସତିଆକୁ ପଚାରିଲା, "ତତେ ଭୋକ କରୁନେଇଁ ? ଖାଇଚୁ କ'ଣ ?"

ବିଷଣ୍ଣ କଣ୍ଠରେ ସତିଆ କହୁଥିଲା – "କିଛି ନାହିଁ, ଖରାବେଳେ ପଖାଳ ଖାଇଥେଲି । ଘରକୁ ଗଲେ ବୋଉ ବାଡ଼େଇବ, ଭାରି ଭୋକ ହଉଚି ।"

ମଧୁଆ ପକେଟରୁ ବାହାରକଲା ଦୁଇଟି ମୁଡ଼ି ମୁଆଁ – ଲୋଭରେ ସତିଆର ଆଖି ଚକ୍ ଚକ୍ କରି ଉଠିଲା । ପଚାରିଲା, କୋଉଠୁ ଆଇଁଲୁ ?

ମଧୁଆ କହୁଥିଲା, ସକାଳେ ମା ଟୋକେଇଏ ମୁଆଁ ତିଆର କଲା । କାଲି ଅପାଙ୍କ ଘରକୁ ଭାର ଯିବନା – ଆମ୍ଭ ଆଉ ମୁଆଁ, ବୁଢ଼ୀ ଯେମିତି ବାହାରକୁ ଯାଇଚି, ମୁଁ ଖପ୍ କରି ଦି'ଟା ନୁଚେଇ ଦେଲି, ନେ, ଖା –

ଉଭୟେ ହସିଉଠିଲେ – ମୁଆଁ ଖାଉ ଖାଉ ସତିଆ କହୁଥିଲା, – ବଢ଼ିଆ ମୁଆଁ ତିଆରି କରିଚି ତୋ' ମା – ନଡ଼ିଆ ପାତି ବି ପକେଇଚି । ମଧୁଆ କହୁଥେଲା – ହଁ ବୁଢ଼ୀଟା ମୁଆଁ ତିଆରି କରେ ଖୁବ୍ ଭଲ, ଭାରି ମିଠା – ତେବେ ଯୋଉ ପାଟି କରିବ ନା, ବୋପାଲୋ – । ମଧୁଆ ଶିହିରୀ ଉଠୁଥିଲା ।

ସତିଆ ତାକୁ ଅଭୟ ଦେଇ କହୁଥିଲା – ଆଉ ବୁଢ଼ୀଟା ତୋର କ'ଣ ଏମିତି କରି ପକେଇବ ଯେ ? ଗୋଟାଏ ଲାତ୍‌ରେ ସାବାଡ୍‌–

ଉଭୟେ ପୁଣି ହସୁଥିଲେ ।

ମଧୁଆ ଗନ୍ଧି ପତ୍ରରୁ କ୍ଷୀର ବାହାର କରି ସତିଆର ଖଣ୍ଡିଆ ଜାଗାମାନଙ୍କରେ ଲଗାଇ ଦେଉଥିଲା । ସତିଆ କହୁଥିଲା, ଭାରି ପୋଡୁଚିବେ ଓଃ–

ମଧୁଆ ତାକୁ ବୁଝାଉଥିଲା – ସେମିତି ହ'ନା । ସାଙ୍ଗେ ସାଙ୍ଗେ ଦରଜ ଖାଇଯିବ । ପହିଲେ ପହିଲେ ସେମିତି ପୋଡ଼େ –

ଉଭୟେ କାନ୍ଧରେ ହାତ ପକାପକି ହୋଇ ପୂର୍ବସ୍ଥାନକୁ ଫେରି ଯାଉଥିଲେ ।

ସିପାହୀମାନଙ୍କୁ ପିଠିରେ ଧରି ଘୋଡ଼ା ପୁଣି ଚାଲିବାକୁ ଆରମ୍ଭ କରିଦେଇଥିଲା । ଆନନ୍ଦରେ ଗଳାଖୋଲି ସତିଆ ଗାଉଥିଲା, ଚଲ୍ ମେରା ଘୋଡ଼ା ଟପ୍ – ଟପ୍ – ଟପ୍ –

ନାଲିଆ ଆଉ କାଳିଆ ପୂର୍ବ ବିବାଦ ଭୁଲି ଗୋଟିଏ ଜାଗାରେ ଶୋଇ ରହିଥିଲେ ।

ନାଲିଆ ନିଜର ଶିଙ୍ଘଦ୍ୱାରା କାଳିଆର ପେଟ କୁଣ୍ଡାଇ ଦେଉଥିଲା ।

ଯୁଦ୍ଧ ସରିଯାଇଥିଲା–

ସରପଞ୍ଚ ଗମ୍ଭୀର ଭାବରେ ଶମ୍ଭୁନାଥଙ୍କୁ ବୁଝାଉଥିଲେ, ବୁଝିଲ ବେହେରାଏ ! ନିର୍ଘାତ୍ ମାନହାନି କେସ୍ – ପାଆଁଶ କୋଡ଼ିଏ ଦଫା ଠୁକି ଦିଅ, ସାଧ ହୋଇଯିବ ଶଳା –

କୁମ୍ଭାରପୁଅ ବସି ରହି ନ ଥିଲେ –

ସରପଞ୍ଚ ନିର୍ବାଚନରେ ପ୍ରାର୍ଥୀ ହୋଇ ହାରିଯାଇଥିବା ମହାନ୍ତି ପୁଅ ନିଜେ ନିଜେ ଉପସ୍ଥିତ ହୋଇଯାଇ କୁମ୍ଭାରଙ୍କୁ ପରାମର୍ଶ ଦେଉଥିଲେ – ଶଳା ଇନ୍ଦ୍ର ଚନ୍ଦ୍ର ମାନୁନାହିଁ – କୋଉ ବାପର ସାହସ ପାଉଚି, ଦେଖି ଦେବି ମୁଁ । ଦିଅ ଏଥର ତିନିଶ ବାଆନ ଦଫା । ଇଏ ବା ବା ଫୌଜଦାରୀ ମାମଲା । ହରବ୍ରହ୍ମା ଆସିଲେ ବି ରଖି ପାରିବେ ନାହିଁ–

ଉଭୟ ଶିବିରର ଗୋପନ ପରାମର୍ଶ ଶେଷ ହୋଇଥିଲା ।



# ଶଗଡ଼ ଉପରେ ନାଆ

ତତଲାପଦା ବସ୍ ଷ୍ଟାଣ୍ଡରେ ପହଞ୍ଚିଲାବେଳକୁ ସମୟ ହେଲାଣି ସାଢ଼େ ଛଅ । ତାଳଦଣ୍ଡା କେନାଲ ପାରି ହୋଇ ପାଇକା ନଈ ବନ୍ଧେ ବନ୍ଧେ ଗୋଟିଏ କିଲୋମିଟର ଗଲେ ପଡ଼ିବ ଥୋରିଆପଡ଼ା ଗାଁ । ସେଇଠୁ ପୁଣି ନଈ ପାରି ହେଲେ ଯାଇ ତାଙ୍କ ନିଜ ଗାଁ ।

ବସ୍‌ରୁ ଓହ୍ଲାଇ ଆଦିକନ୍ଦବାବୁ ଏଣେ – ତେଣେ ଅନାଇଲେ । ରାସ୍ତା ଆରପଟେ ବରଜା କମାରଶାଳ, ତିନିପୁରୁଷ ଧରି କମାର ପରିବାର ଦଶଖଣ୍ଡି ଗାଁର ଲୁହା ଲକଡ଼୍ ଦାବି ମେଣ୍ଟାଇ ଆସୁଛନ୍ତି । ଏବେ ବରଜା ମଲାଣି । ତା' ପୁଅ ନାତିମାନେ ଶାଳ ଚଳାଉଛନ୍ତି । କଳ ତିଆରି ଜିନିଷରେ ବଜାର ଭରିଗଲାଣି । ତଥାପି ବରଜାର ରଥ ଚାଲିଚି ତ !

ଆଦିକନ୍ଦବାବୁ ଆଉ ଡେରି କରିବାକୁ ଚାହୁଁ ନ ଥିଲେ । ଶୀତଦିନିଆ ସଞ୍ଜ ମାଡ଼ି ଆସୁଚି । ଆଉ ଟିକିଏ ପରେ ଅନ୍ଧାର ହୋଇଯିବ, ତା' ଆଗରୁ ଗାଁ ନ ଧରିଲେ ଆଖିର ଯୋଉ ଅବସ୍ଥା, ବାଟରେ କଣ ହେବ କିଏ କହିବ ! ଚାପ ଉପରେ ବସି ଆଦିକନ୍ଦ ମନେ ମନେ କାହାକୁ ଖୋଜୁଥିଲେ । ଗାଁ ବାଲା କିଏ ମିଳିଗଲେ ସୁବିଧା ହୁଅନ୍ତା ।

ପନ୍ଦରଦିନ ତଳେ ଧୋବେଇ ଭୋଇ ପୋଷ୍ଟକାର୍ଡ଼ ଖଣ୍ଡେ ଛାଡ଼ିଥିଲା । ଧାନପାଚି ବିଲରେ ଶୋଇଚି । ସାନବାବୁ ଆସି ଠିଆ ହେଲେ ବିଲକୁ ଦାଆ ଯିବ । ଧୋବେଇ ତ ଲେଖି ଦେଇ ଖଲାସ । ଏଣେ ସେକ୍ରେଟେରିଏଟ୍ କାମରୁ ଛୁଟି ମିଳିବା କ'ଣ ଏଡ଼େ ସହଜ ! ଆସେମ୍ବ୍ଲିଟା ପୁଣି ଏତିକିବେଳକୁ ଚାଲିଚି । ଘନ ଘନ ସ୍ଲିପ୍ ଆସୁଚି – ଗଦାଗଦା ଫାଇଲ୍ କଢ଼ା ହେଉଚି, ପଢ଼ା ହୋଇ କମ୍ପ୍ଲାଏନ୍ସ ଦିଆ ହେଉଚି । ସବୁ

ଅରଜେଣ୍ଟ – ସେକ୍ରେଟେରୀ ମହାପାତ୍ରବାବୁଙ୍କ ପାରା ତ ଜାଣି ସବୁବେଳେ ଚଢ଼ି ରହିଚି । ଏତିକିବେଳେ ସିଏ ଅବା କେମିତି ଛୁଟି କଥା କହନ୍ତେ ?

ଅଦିନିଆଁ ମେଘଟା ଘଣ୍ଟାଏ ହବ ଛେଚିଦେଇ ଯାଇଚି । ଶୀତୁଆ ପବନ ତୁହାଇ ତୁହାଇ ହାଡ଼ କମ୍ପାଇ ଦେଇଯାଉଚି । ନଈ ବନ୍ଧର ଚିକିଟା ମାଟିରେ ଟିକିଏ ଗୋଡ଼ ଖସିଲେ ଏକାଥରେ ଯାଇ ଅତଡ଼ା ଉପରେ । ଆଦିକନ୍ଦ ପାଦ ଚିପି ଚିପି ଆଗୋଉଥିଲେ ଆଉ ନିଜକୁ ମନେ ମନେ ଅଭିସମ୍ପାତ ଦେଉଥିଲେ । ଘଣ୍ଟାଏ ଖଣ୍ଡେ ଆଗରୁ ବାହାରି ପାରିଥିଲେ, ଦିନ ଥାଉଁ ଥାଉଁ ଗାଁ ଧରିଥାଆନ୍ତେ । ସେତକ କୋଉ କରେଇ ଦେଲେ ? ଠିକ୍ ବାହାରିଲା ବେଳକୁ ପହଞ୍ଚିଗଲା ଅର୍ଜେଣ୍ଟ ସ୍ଲିପ୍ ।

ଗାଁ ସମ୍ପତ୍ତିକି ବିକି ଦେବାକୁ ଘରୁ ଚାପ ପଡୁଚି । ପିଲାମାନେ ବି ଜୀବନରେ କେବେ ଗାଁମାଟି ମାଡ଼ିବେ ନାହିଁ । ସୌଦାମିନୀ ସେହି ନୂଆ ବୋହୂ ହୋଇ ଆସିଲା ବେଳେ ଯାହା ବର୍ଷେ ଦି' ବର୍ଷ ଗାଁରେ ରହିଥିଲେ, କଟକ ଆସିବା ଆଗରୁ । ତା' ପରେ ତ ଯୁଗ ବିତି ଗଲା ଏହି ରାଜଧାନୀରେ । ବୋଉ ଥିଲାବେଳେ ଯାହା ମାଣ ବସାଇବାକୁ ଗାଁକୁ ଯାଉଥିଲେ, ଏବେ ସେତକ ମଧ ବନ୍ଦ । ମାଣବସା ଏବେ ସରକାରୀ କ୍ୱାର୍ଟରରେ । ଦି ସାହାଲା ଧୂଳିଆପିଟା ଘର । କିଏ ଦେଖାରଖା କରନ୍ତା ? ପିଲାମାନଙ୍କୁ କହିଲେ ତ ସେଇ ବିକ୍ରି କରିବା କଥା ଉଠିବ ।

ମଣିଷ ହାତ ବାଜିଲେ ଗଛ ଫଳ ସୁନ୍ଦର । ଘର ମଣିଷ ଯେତେବେଳେ ସହରରେ ଭିଡ଼ ଜମେଇଲେ, ଯେତେବେଳେ ଆଦିକନ୍ଦ ଆଉ କେତେଦିନ ଦି'କୂଳ ବଜାୟ ରଖି ଚଳାଇ ପାରନ୍ତେ ? ତାଙ୍କର ବି ବୟସ ହେଉଚି ତ !

ଘର ଭାଙ୍ଗି ଦେବାକୁ ପଡ଼ିଲା । ନିଜେ ଚଳିବା ମାନିଆ ଦୁଇ ବଖରା ଘର ରଖିଲେ । ବର୍ଷରେ ଥରେ ଦୁଇଥର ତ ଯେମିତି ହେଲେ ଆସିବାକୁ ପଡ଼ିବ । ମୁଣ୍ଡ ଗୁଞ୍ଜିବାକୁ ପୁଣି କାହା ଓଳି ତଳେ ଠିଆ ହେବେ ?

ଆଦିକନ୍ଦ ମନ ସ୍ଥିର କରି ନେଇଥିଲେ । ସମ୍ପତ୍ତି ସେ କଦାପି ବିକିବେ ନାହିଁ । କୋଉ ପୁରୁଷର ଜମିବାଡ଼ି । ଜୀବନରେ ଗୁଣ୍ଠେ ପଦିକାଏ ତ କମେଇ ନାହାନ୍ତି । ଏବେ ଅନ୍ୟ କଥାରେ ତାକୁ ଗମେଇ ଦେବେ ? ଗାଁରୁ ଜମି ବିକି ସହରରେ ଘର ତୋଳିବେ ? ନା, ଯିଏ ଯାହା କହୁ ସେ କଦାପି ବାଇଆ ହେବେ ନାହିଁ ।

ରହି ରହି ଗୋଟିଏ କଥା ତାଙ୍କ ମନକୁ ଦୋହଲାଇ ଦେଉଛି । ଧୋବେଇ ଭୋଇ ଜମି ଧରିଲାଣି କୋଉ ଭଙ୍ଗ ଅମଳରୁ । ବାପା ସେତେବେଳେ ଥାଆନ୍ତି । ତାଙ୍କରି ପାଖରୁ ଜମି ନେଇଥିଲା ଧୋବେଇର ବାପା ବିନା – ସେଦିନର ଘଟଣା ଏବେ ବି ମନେଅଛି ଆଦିକନ୍ଦଙ୍କର । ବିନା ସକାଳ ପହରୁ ଚାନ୍ଦିନୀ ତଳ ନଡ଼ିଆ ଗଛ ମୂଳେ ବେକରେ ଗାମୁଛା ପକେଇ ଠିଆ ହୋଇଥାଏ ।

ବାପାଙ୍କର ଦାନ୍ତ ଘଷା ପର୍ବ ଗୋଟାଏ ଦେଖିବା ଜିନିଷ । ପାଣି ନୋଟା ଥୁଆ ହବ, କରଞ୍ଜ ଗଛରୁ କାଣି ଆଙ୍ଗୁଠି ମୋଟ ଦେଢ଼ ଚାଖଣ୍ଡ ଲମ୍ବର ଦାନ୍ତକାଠି କଟା ହୋଇ ଆସିବ । ଗଇଁଠା ପାଉଁଶ ବୋତଲ ରଖାଯିବ, ତା' ପାଖରେ ଥୁଆ ହୋଇଥିବ ଗିନାରେ ମଥୁରୀ ତେଲୀ ଘଣା ପେଡ଼ା ଖାଣ୍ଟି ସୋରିଷ ତେଲ ଆଉ କାଗଜରେ ଲୁଣ । ବାପା ପ୍ରଥମେ ଦାନ୍ତକାଠିଟାକୁ ଚୋବାଇ ଚୋବାଇ ତଳ ଉପର ଚଳାଇ ଅଧଘଣ୍ଟାଏ ଖଣ୍ଡେ ପିଣ୍ଡାରେ ଟହଲ ମାରିବେ । ଖଡ଼ମ୍‌ର ଠକ୍ ଠକ୍ ଶବ୍ଦ ସାଙ୍ଗକୁ ଥନ୍ତଲ ପେଟ ଉଠୁଥିବ ପୁଣି ପଡୁଥିବ ତାଳେ ତାଳେ । ସେ ପର୍ବ ସରିଲା ପରେ ଆରମ୍ଭ ହେବ ଗଇଁଠା ପାଉଁଶ ପର୍ବ । ସବା ଶେଷରେ ବିଶି ଆଙ୍ଗୁଠିରେ ତେଲ ଆଉ ତହିଁରେ ଲୁଣ ପରଖ ଦେଇ ମାଢ଼ି ମାଲିସ୍ ଚାଲିବ । ପାଟିରୁ ଲାଳ ବହି ଚାଲିଥିବ, ଏଣେ ପୁଣି ଗଳା ସଫା ଚାଲିଥିବ । ଇଏ ଚାଲିବ ପନ୍ଦର ମିନିଟ୍ । ମୁହଁ ଧୋଇ ପକାଇ ଲୋଟାରେ ଥିବା ବାକି ପାଣିରୁ ପାଟିରେ ଦେଇ ଓପରକୁ ମୁହଁ ଟେକି ଦଶ ମିନିଟ୍ କାଳ ଘର୍‌ର ଘର୍‌ର କରି ପୁଣି ଗଳା ସଫା ଚାଲିବ । ସେତକ ସଇଲା ପରେ ପାଚିଲା ଗାମୁଛାରେ ମୁହଁ ପୋଛି ପକାଇ ଗୋଟାଏ ବଡ଼ ଗଳା ଖଙ୍କାର ମାରିବେ । ଏଇଟା ବୋଉ ପାଇଁ ।

ଭିତରୁ ପଥର ଗ୍ଲାସ୍‌ରେ ତ୍ରିଫଳା ପାଣି ଧରି ପେଙ୍ଗେଇ ପେଙ୍ଗେଇ ବାହାରି ଆସିବ ନାଥିଆ । ବାପା ତା' ଆଡ଼କୁ ନ ଅନେଇ ଗ୍ଲାସଟିକୁ ନେଇ ଉପରକୁ ଆଁ କରି ଢୋକଢୋକ କରି ପାଣିତକ ପିଇବେ ।

ଦାଣ୍ଡ ବାରଣ୍ଡାରେ କଡ଼ପଟିଆ ହୋଇ ପଡ଼ିଥାଏ ତେଲ ଚିକିଟା ଭାରି ଆରାମ୍ ଚେୟାର୍‌ଟାଏ । ଏଥର ତା' ଉପରେ ଢଳିପଡ଼ି ବାପା ହାତ ପଙ୍ଖା ଚଳାଇ ହାଓ୍ୱା ଖାଇବେ ।

ସେଦିନ ମଧ୍ୟ ସେମିତି ହାତ ପଙ୍ଖା ଚାଲିଥିଲା । ନାଥିଆ ଖାଲି ଗ୍ଲାସ୍ ନେଇ ଚାଲି ଯାଉ ଯାଉ ମନେପକାଇ ଦେଇଗଲା – କୋଉ ସକାଳୁ ବିନା ବାଉରୀ ଅପେକ୍ଷା କରି ବଇଚି ।

ଯଥା ସମ୍ଭବ ସାଧୁ ଶବ୍ଦ ବ୍ୟବହାର କରି ନାଥିଆ ନିଜର ଆଭିଜାତ୍ୟ ପ୍ରଚାର କରେ ।''

ବାପା ସେମିତି ଅର୍ଦ୍ଧଶାୟିତ ଅବସ୍ଥାରେ ନଡ଼ିଆ ଗଛ ଆଡ଼କୁ ଅନାଇଁ କହିଲେ, କଣ କହୁଚୁରେ ।''

ବିନା ଭୋଇ ସେଇଠି ଭୂମିଲଗ୍ନ ହୋଇ ବଡ଼ସାଆନ୍ତଙ୍କୁ ମଲୁରା ଜଣାଇଲା । ତା' ପରେ ବିନୀତ କଣ୍ଠରେ କହିଲା, ସାଆନ୍ତଙ୍କ ପଦରଜ କଇଲାଣରୁ ପୁଅଟି ପାରିଗଲାଣି । ମାଣେ କଣେ ଭାଗ ବଖରା ନ ଧରିଲେ, ତା' କଥା ଏଥର ଅଠାଠିକ୍ ।

ବାପା ନିଶ୍ଚିତ ଭାବରେ ତା'ର ଉଦ୍ଦେଶ୍ୟ ବୁଝି ପାରିଥିବେ । ଚାନ୍ଦିନୀ ପାହାଚ ଉପରେ ଥୁଆ ହୋଇଥିଲା ବିପୁଳକାୟ ଫକ୍‌କା ହଳଦୀ ବର୍ଣ୍ଣର ଦୁଇଟି କଖାରୁ । ତେବେ ବାପା ସେମିତି ଅର୍ଦ୍ଧ-ନିମୀଳିତ ନେତ୍ରରେ ପାନ ଖଣ୍ଡେ ଚାକୁଳେଇବାରେ ଲାଗିଥିଲେ ।

ବିନା ଅଗତ୍ୟା ଡାକିଲା ସାଆନ୍ତେ ! ବଡ଼ ସାଆନ୍ତେ, ବାପା ଏଥର ଆଖି ମେଲାଇ ବିନା ଆଡ଼କୁ ଅନାଇଲେ । ବିନା ଅବତରଣିକାରେ କହିଲେ, ଧୋବାକୁ ଏଥର ଆମ ଘରେ ଛାଡ଼ିଦେ । ତୋ' କଥା ମୁଁ ବୁଝିବି ।

ଆଭିଜାତ୍ୟ ନିକଟରେ ସର୍ବହରା ହାତ ପତାଇ ମାଗୁଥିଲା ଜୀଇଁବାର ଭିକ୍ଷା । ଆଭିଜାତ୍ୟର ଖୋଲା ମୁଠା ତା'ର ପରିବାରର ପାଦତଳେ ମାଟିର କାମ ଦେବ । ସେ ଭାସିଯିବ ନାହିଁ ।

ବିନା ଇତସ୍ତତଃ କରୁଥିଲା । ଅଠର ବର୍ଷର ଯେଉଁ ଯୌବନର ଭରସାରେ ସେ ଭାଗଚାଷ ଯୋଡ଼ି ଘର ବାନ୍ଧିବ ବୋଲି ସ୍ୱପ୍ନ ଦେଖୁଥିଲା, ସେଇଆକୁ ଏବେ ବଡ଼ବାବୁ ଭେଟି ମାଗୁଛନ୍ତି ।

କାହା ଭରସାରେ ତେବେ ବିନା ବଞ୍ଚିବ ? କାହାକୁ ଆଶ୍ରା କରି ଆସନ୍ନ ବାର୍ଦ୍ଧକ୍ୟ ତାର ଲଟେଇ ଲଟେଇ ଉପରକୁ ଉଠିବ ?

ବାପା ପୁଣି କହିଲେ, 'ଦୋଳ ପୁନେଇ' ବାସି ତାକୁ ପଠେଇ ଦବୁ । ଆଉ ପାଞ୍ଚ ଜଣ ଯାହା ନେଉଛନ୍ତି, ସେ ବି ସେଇଆ ପାଇବ । ବୁଝିଲୁ ?

ବିନା ବୁଝିଗଲା । ଖାଲି ତା' ମୂଳ ଆବେଦନର ପରିଣତି କଣ ହେଲା, ସେକଥା ବାପା କହିନଥିଲେ । ତେଣୁ ସେ ଯାଇ ମଧ୍ୟ ପାରୁ ନଥିଲା ।

ବାପା କହିଲେ, ନାହାଳପଙ୍କରେ ଯୋଉ ପାଞ୍ଚମାଣିଆ ଚକ ଅଛି ସେଇଆକୁ ଏଥର ତୁ କର । ମେହନତ କରିବୁ ଆଉ ନିୟତ ଢଙ୍ଗି ଚଳିଲେ ମଣିଷ ହୋଇଯିବୁ, ବୁଝିଲୁ ।

ବାପାଙ୍କର ବକ୍ତବ୍ୟ ଶେଷ ହୋଇଥିଲା । ସେଇଦିନଠୁଁ ଆଜିପର୍ଯ୍ୟନ୍ତ ତିନିପୁରୁଷ ହେଲାଣି – ବିନା ତା' ପୁଅ ଧୋବେଇ, ଆଉ ଏଇନେ ଧୋବେଇ ଭୋଇ ପୁଅ ରବି ଦାସ – ନାହାଳପଙ୍କ ତାଙ୍କରି ପାଖରେ ।

ବାପା ଚାଲିଗଲା ପରେ ହାତଚାଷ ରଖିବାର କୌଣସି ଉପାୟ ନ ଥିଲା । ଧୋବେଇ ଅବଶ୍ୟ ଏତେବେଳକୁ ଘରମଣିଷ ହୋଇଯାଇଥିଲା । ବୋଉ ତା' ନିଜର କୋଡ଼ିଏ ଭରିର ପା'ପଦ୍ମ ଭାଙ୍ଗି ଧୋବା – ସ୍ତ୍ରୀ ପାଇଁ ଶିଳା ବଟଫଳ ଆଉ ଗୋଠ ଗଢ଼ାଇ ଦେଇଥିଲା । ସେତେବେଳେ ଗାଁ ସାରା ଧନ୍ୟ ଧନ୍ୟ ପଡ଼ିଯାଇଥିଲା ।

ଶୁଦ୍ଧିକାର୍ଯ୍ୟ ସରିଗଲା ପରେ ଆଦିକନ୍ଦ ସହରକୁ ଫେରିବାକୁ ଉଦ୍‌ଯୋଗ କରୁଥିଲେ । ଧୋବା କଣ କହିବ ବୋଲି ପାଖକୁ ଆସିଲା । ଡାକିଲା– ସାନବାବୁ ।

ଆଦିକନ୍ଦ ତା' ଆଡ଼କୁ ଅନାଇଲେ । ବାପାଙ୍କର ମୃତ୍ୟୁ ତାକୁ ମଧ୍ୟ କମ ଆଘାତ ଦେଇନାହିଁ । ନିଜ ସ୍ୱାର୍ଥରେ ବାପା ତାକୁ ବ୍ୟବହାର କରିଛନ୍ତି ଠିକ୍, ମାତ୍ର ବିପଦ ଆପଦରେ ଭୋଇ ପରିବାରକୁ ଛାତି ପତେଇ ରକ୍ଷା ବି କରିଛନ୍ତି ।

ଆଦିକନ୍ଦ ପଚାରିଲେ, "କିଛି କହିବୁ" ଧୋବା କହିଲା – ତା'ର ଯାହା କହିବା କଥା । ଆଦିକନ୍ଦ ତ ସହରକୁ ଚାଲିଯିବେ । ବୋଉ ସାନ୍ତାଣୀ ବିଛଣା ଛାଡୁନାହାନ୍ତି । ଅପା ସାନ୍ତାଣୀ ଯେତେହେଲେ ପରଘରୀ । ନିଜ ଘର ଛାଡ଼ି କେତେଦିନ ବା ଏଠି ରହିପାରିବେ ? ଏଠିକା ଥାଟ ତେବେ ବଜାୟ ରହିବ କେମିତି ?

ଆଦିକନ୍ଦଙ୍କର ଯେ ସେ ଚିନ୍ତା ନ ଥିଲା ତାହା ନୁହେଁ । ପଢ଼ା ତାଙ୍କର ଶେଷ ହୋଇନାହିଁ । ଏଣେ ଘରର ଏ ହାଲ୍ । କୂଳକିନାରା କୁଆଡ଼େ କିଛି ଦେଖାଯାଉ ନ ଥିଲା । ହାତଚାଷତ ଅବଶ୍ୟ ଭାଙ୍ଗିଦେବାକୁ ପଡ଼ିବ । କୌଣସିମତେ ପଢ଼ାଟା ଶେଷ କରି ଚାକିରି ଖଣ୍ଡେ ଧଇଲେ ଯାଇଁ ଯାହା । ଆଦିକନ୍ଦ ସେଇଆ କହିଲେ ।

ଧୋବା ସେତେବେଳେ ଆପତ୍ତି କରିଥିଲା । ଆଜି ବଡ଼ବାବୁ ନାହାନ୍ତି ବୋଲି ସେ କଣ ଏଡ଼େ ନିପାରିଲାର ହୋଇଗଲା ଯେ, ଚାଷକଥାଟା ତୁଲାଇ ପାରିବ ନାହିଁ ? ସାନବାବୁ ସହରକୁ ଯାଆନ୍ତୁ । ସେ କୌଣସି ମତେ ଏପଟ ବ୍ୟବସ୍ଥା ତୁଲେଇନେବ ।

ପ୍ରକୃତ ଅସୁବିଧାଟା ଯେ କ'ଣ, ସେକଥା ଆଦିକନ୍ଦ କହିପାରୁ ନଥିଲେ । ପଟ୍ଟନାୟକ ପରିବାରର ମରୁଭୂମିରେ ପାଣି ମଡ଼େଇ ତାକୁ ଶସ୍ୟଶ୍ୟାମଳା କରିବାର ଯେଉଁ ପ୍ରୟାସ, ସେଥିରେ ବର୍ତ୍ତମାନ ପାଇଁ ଅନ୍ତତଃ ତାଙ୍କର କିଛି କରିବାର ନ ଥିଲା ।

ଧୋବେଇ ଭୋଇ କାନ୍ଦି କାନ୍ଦି ବିଦା ହୋଇଯାଇଥିଲା । ତା'ପରେ ତ ଆଦିକନ୍ଦ ଚାକିରି କଲେ, ବାହାଘର ହେଲା । ପିଲାଛୁଆ ହେଲେ । ବାପାଙ୍କୁ ହରାଇବାର ଦୁଃଖ ଭୁଲି ବୋଉ କେବେ ସହରରେ କେବେ ଗାଁରେ ହୋଇ ତା' ଜୀବନ ବି କଟାଇଦେଲା ।

ହେଲେ ଧୋବେଇ ସାଙ୍ଗରେ ପଟ୍ଟନାୟକ ପରିବାରର ସମ୍ପର୍କ ଆଉ ଛିଡ଼ିଲା ନାହିଁ । ଆଠହାତି ମଇଳା ଲୁଗା ଖଣ୍ଡେ ପିନ୍ଧି, ଗାମୁଛା ଖଣ୍ଡେ ମୁଣ୍ଡରେ ଗୁଡ଼ାଇ, ହାତରେ ପାଞ୍ଚଣ ବାଡ଼ି ଧରି ଦିନେ ସେ ଏ ଘରର ବାଡ଼ି ପାହାଚ ତଳେ ଠିଆ ହୋଇଥିଲା । ଢିଙ୍କି ଶାଳର ଗୋଟିଏ କଣରେ ତା'ର ରସ କଂସା ଖଣ୍ଡେ ରଖା ହୋଇଥିଲା । ସେଇଠି ତାକୁ ଯିଏ ହେଲେ ପଖାଳ କଂସାଏ, ଶାଗଖରଡ଼ା ପୁଳାଏ ଥୋଇଦେଲେ ସେ ଏକା ନିଃଶ୍ୱାସକେ ସେତକ, ଖାଇଦେଇ ପାଞ୍ଚଣ ଧରି ପୁଣି ବାହାରି ଯାଉଥିଲା । ଚାଷ ଭାଙ୍ଗିଗଲା ପରେ ମଧ୍ୟ ଆଦିକନ୍ଦ ଘରକୁ ଆସିଲେ ସେ ସାଞ୍ଚପତ୍ର ଖଣ୍ଡେ କାଟି ଆଣି ସେଇ ଢିଙ୍କିଶାଳରେ ବସିପଡ଼ି ଡାକ ଛାଡୁଥିଲା – ବୋଉ ସାଆନ୍ତାଣୀ ! କଣ ଗଣ୍ଡାଏ ଦେଇଯାଅ । ହଂସା ଉଡ଼ିଲାଣି । ବୋଉ ବି ସେମିତି ଦି' ଦିନ ନ ଦେଖିଲେ ତାକୁ ଡକାଇ ପଠାଉଥିଲା । ଯୋଉଠୁ ଯାହାହେଲେ ତା' ପତ୍ରରେ ବାଢ଼ିଦେଉଥିଲା ।

ପାଞ୍ଚମାଣିଆ ଚକ ସେମିତି ଭୋଇ ପରିବାରରେ ରହିଯାଇଥିଲା । ଆଦିକନ୍ଦ କେବେ ତାକୁ ଧୋବେଇଠୁଁ ଛଡ଼ାଇ ଆଣିବାକୁ ଚିନ୍ତା କରିନାହାନ୍ତି କିମ୍ବା ଧୋବେଇ ମଧ୍ୟ ଭାଗଧାନ ଦେଇ ଯିବାରେ କେବେ ହେଳା କରିନାହିଁ ।

ଆଜି ଏତେ ଦିନ ପରେ ତାଙ୍କୁ ଏସବୁ ବିଷୟରେ ଚିନ୍ତା କରିବାକୁ ପଡୁଚି । ତାଙ୍କ ମନରେ ସନ୍ଦେହର ନିଆଁ ଦିକିଦିକି ହୋଇ ଜଳିବାକୁ ଆରମ୍ଭ କରିଛି ।

ଏଇ କେତେ ବର୍ଷ ଭିତରେ ଗାଁରୁ କେତେ ପ୍ରକାର ଖବର ତାଙ୍କ କାନରେ ବାଜେ । ପାଞ୍ଚମାଣିଆ ଚକର ଧାନ ହେର୍‌ଫେର୍ କରି ଏବେ ଧୋବା ବାଉରି ପାଞ୍ଚ

ଜଣରେ ଜଣେ । ଗୁଣ୍ଡକେ ଯୋଉଠି ପନ୍ଦର ଗଉଣୀ ଫଳୁଚି, ସେଠି ସେ ହିସାବ ଦଉଚି ପାଞ୍ଚଗଉଣୀର । ଆଉ ଯାହାକୁ ଦେଲେ ସେ ଗୁଣ୍ଡକେ କୋଡ଼ିଏ ଗଉଣୀ ହିସାବରେ ଧାନ ମାପିଦେଇ ଯିବ, ଇତ୍ୟାଦି ପ୍ରସ୍ତାବକୁ ମଧ୍ୟ ସେ କାନରେ ପୂରାଇ ନାହାନ୍ତି ।

ମାତ୍ର ଏ ଭିତରେ ମାମଲତକାର ଦନେଇ ଦାସ ନିଜ ପକେଟରୁ ପଇସା ଖର୍ଚ୍ଚ କରି ଦିନେ ତାଙ୍କ ବସାରେ ଯାଇଁ ଡେରା ପକାଇଥିଲେ । ସେ ଘରକୁ ଫେରିଲାବେଳକୁ ସେଠି ହୁଲ୍‌ସ୍ଥୁଲ୍ କାଣ୍ଡ । ବାଉରୀ ଟୋକା କୁଆଡ଼େ ଭିତରେ ଓକିଲ ପରାମର୍ଶ କରିସାରିଲାଣି । ପଚାଶବର୍ଷ ଧରି ସେମାନେ ଜମି ଚାଷ କରୁଛନ୍ତି । ଏଥର ସେମାନେ ଜମି ଦଖଲ କରିଯିବେ । ଆଇନ୍ କୁଆଡ଼େ ସେଇଆ କହୁଚି । ଦେଖୁ ଦେଖୁ ସୁନାଥାଳି ଜମି ଭୂତ ଖାଇବେ ।

ସ୍ତ୍ରୀ ଜିଦି ଧରି ବସିଥିଲେ । ଆଜି ସେ ଜମିକୁ ବିକ୍ରିକରି ଦେବାକୁ ହେବ । ଦନେଇ ମଉସା ଖରିଦାର ଠିକଣା କରି ଆସିଛନ୍ତି । ଏ ମଉକା ହାତରୁ ଛାଡ଼ିଲେ ପଛରେ ହାତରୁ ପିଠିରୁ ଲୁହ ପୋଛୁ ପୋଛୁ ଦିନ ସରିବ ନାହିଁ ଇତ୍ୟାଦି ।

ବଡ଼ପୁଅ କହିଲା – ନୂଆ ପଲ୍ଲୀରେ ଜାଗା ବୁଝିଚି । ଜମି ବିକ୍ରିହେଲେ ସହରରେ ମୁଣ୍ଡ ଗୁଞ୍ଜିବା ପାଇଁ ଖଣ୍ଡେ ଘର କରିବାକୁ ହେବ । ଅଥଚ ପଢ଼ା ଶେଷ କରି ଚାକିରି ଯୋଗାଡ଼ କରିପାରି ନଥିବା ସେଇ ପୁଅକୁ ଯେତେବେଳେ ସେ ଜମିବାଡ଼ି ବୁଝାବୁଝି କରିବାକୁ ପ୍ରସ୍ତାବ ଦେଇଥିଲେ, ସେତେବେଳେ ମା' ପୁଅ ଦିହେଁ ଆକାଶରୁ ଖସିପଡ଼ିଥିଲେ ଅବା ।

ନା – ତଥାପି ତାଙ୍କର ବିଶ୍ୱାସ ହୋଇନାହିଁ । ସେ ନିଜେ ଯିବେ । ଧୋବା ପାଖରେ ଠିଆ ହୋଇ ଥରେ ତାକୁ ପଚାରିବେ । ବୋଉ ତ ତାକୁ ପୁଅ କରିଥିଲା । ନ ହେଲେ ତାକୁ ଏବେ ପଟ୍ଟନାୟକ ପରିବାରର ସମ୍ପତ୍ତିରୁ ଗୋଟାଏ ଭାଗ ଲେଖିଦେବେ । କୋର୍ଟ କଚେରୀ କରିବେ ନାହିଁ । କେଉଁଠି କାହା ପାଖରେ ନାଲିସ ଫେରାଦୀ ମଧ୍ୟ କରିବେ ନାହିଁ ।

ପାଠ ଅଧା ହୋଇଥିଲା ବାପା ଚାଲିଗଲେ । କେହି କୁଆଡ଼େ ସାହା ଭରସା ନ ଥିଲା ବେଳେ ସେ ଡଙ୍ଗା ଚଳାଇଥିଲେ, କାହା ଭରସାରେ ? ଆଜି ଯେ ଏତେବାଟ

ଚାଲି ଆସିଲେଣି, କିଏ ତାଙ୍କୁ ବାଟ କଢ଼ାଉଚି ? ସେ ଯିବେ, ପଚାରିବେ ଧୋବାକୁ ଖାଲି ପଦେ କଥା । ତା' ପରେ ତାଙ୍କର ଯାହା କରିବାର କଥା କରିବେ ।

ସକାଳୁ ମେଘଟା ଘୋଡ଼େଇଚି । ଶୀତୁଳିଆ ପବନଟା ମଣ୍ଡାଥରାଇ ଦେଉଚି । ଆଦିକନ୍ଦ ଦାଣ୍ଡପିଣ୍ଡାରେ ବସିଛନ୍ତି ସେଇ ପୁରୁଣା ଆର୍ମଚେୟାରରେ । ପଥର ଚାନ୍ଦିନିରୁ ପଲିସ୍ତରା ଛାଡ଼ିଗଲାଣି । ଇଟା ଖୁଣ୍ଟରୁ ଖଣ୍ଡ ଖଣ୍ଡ ହୋଇ ପଲସ୍ତରା ଖସି ପଡୁଚି । ପିଣ୍ଡାରୁ ସିମେଣ୍ଟ ସବୁ ଜାଗାଏ ଜାଗାଏ ଭାଙ୍ଗି ଗାତ ହୋଇଗଲାଣି । ଚୂନଧଉଳା କାନ୍ଥରେ ମାଟି ଗୋବର ଲିପା ହୋଇ ପାରାଛଡ଼ା ଦର୍ପଣ ଭଳି ଦିଶୁଚି । ଅଥଚ ଦିନେ ଏଇସବୁ କାନ୍ଥ ଚକ୍ ଚକ୍ କରୁଥିଲା । ଦୁଇପଟ କାନ୍ଥରେ ଅପା ଛ' ଆଖିଆ ପଦ୍ମଫୁଲ ଆଙ୍କିଥିଲେ । ଖୁଣ୍ଟ ମାନଙ୍କରେ ଅଙ୍କିତ ହୋଇଥିଲା ବର୍ଣ୍ଣାଢ଼୍ୟ କଳସ ଉପରେ ମାଛ । ଆଜି ସେ ସବୁ ଶୂନ୍ୟ ।

ଘର ଚାରିପଟେ ଧାଡ଼ି ଧାଡ଼ି ନଡ଼ିଆ ଗଛ । ଭରା ଚୈତ୍ରର ଚନ୍ଦ୍ରିକା ଧୌତ ରଜନୀରେ ନଡ଼ିଆ ବାହୁଙ୍ଗା ସହିତ ପବନର କିଲ୍‌କିଲ୍ ଖେଳ ସାଙ୍ଗରେ ଗୁଚ୍ଛା ହୋଇ ରହିଚି, ଆଦିକନ୍ଦଙ୍କର କେତେ ନିଦ୍ରାହୀନ କୈଶୋର ଆଉ ଯୌବନର ସ୍ୱପ୍ନ ।

ଆଜି ସେସବୁ କାହିଁ ? ଚାରିଆଡ଼ ଶ୍ରୀହୀନ ।

ଉଡ଼ିଯାଇଥିବା କର୍ପୂରର ଶେଷ ସନ୍ତକ ଭଳି ଗୁହାଳ ଆଗରେ ଏବେ ମଧ ଠିଆ ହୋଇ ରହିଚି ଜୀର୍ଣ୍ଣ ବଉଳ ଗଛଟି, ଗାଁ ଯାକର ଝିଅ ରଜର ମାସକ ଆଗରୁ ଯାହା ତଳେ ଭିଡ଼ ଜମାଉଥିଲେ ।

ଗାଁ ଦାଣ୍ଡରେ କେତେ ଲୋକ ଚଳପ୍ରଚଳ ହେଲେଣି । ଏବେତ ପ୍ରାୟ ସମସ୍ତେ ଅଚିହ୍ନା । ଆଦିକନ୍ଦ ପାହାଚ ତଳକୁ ଓହ୍ଲାଇ ଆସିଲେ । କାମଶେଷ କରି ଆଜି ତାଙ୍କୁ ଯେମିତି ହେଲେ ରାଜଧାନୀକୁ ଫେରିଯିବାକୁ ପଡ଼ିବ । ଗାଁ ମୁଣ୍ଡରେ ଯାଇଁ ବାଉରୀସାହି, କରଣ ସାହିଠାରୁ ବେଶ୍ ଦୂର ।

ପରିବର୍ତ୍ତନ ତ କେତେ ହେଲା । ଦିନେ ଯୋଉଠି ଘର ନାମରେ ଥିଲା କେତୋଟି କୁଡ଼ିଆ, ଆଜି ସେଠି ବେଶ୍ ବଡ଼ ବଡ଼ ଘରମାନ ମୁଣ୍ଡ ଟେକିଲାଣି । ଏଣେ କରଣ ସାହିଟା ଯାକ ଦେଖିବ ଖଣ୍ଡିଆ କାନ୍ଥ । ପେଟପାଟଣା ନେଇ କିଏ ଯାଇଁ କୁଆଡ଼େ, ଗାଁ କଥା କିଏ ମନେ ରଖୁଚି ?

ପଚାରି ପଚାରି ଆଦିକନ୍ଦ ଧୋବେଇର ଘର ଠାବ କଲେ । ନା, ସତରେ ଧୋବାର ଅବସ୍ଥା ବଦଳି ଗଲାଣି ଯା' ଭିତରେ । ଇଟା କାନ୍ଥ ଦିଆ ଟିଣ ଛପର ଘର । ତଳ ସିମେଣ୍ଟ । ଦାଣ୍ଡ ପିଣ୍ଡାରେ ପଡ଼ିଚି କେତେ ଖଣ୍ଡ ଚେୟାର୍ ।

ଦାଣ୍ଡ ଅଗଣା ଲିପାପୋଛା ହୋଇ ପରିଷ୍କାର । ଗୋଟିଏ ପଟେ ଧାନ ଗଦା ମରା ହୋଇଛି ଯେ ସତେ ଯେମିତି ଆକାଶକୁ ଛୁଇଁବ । ସେଇ ପଟେ ପୁଣି କେଇ ବୁଦା କଦଳୀ ଗଛରେ ତିନିଫୁଟିଆ କାନ୍ଧିମାନ ଓହଳିଚି । କଦଳୀ ଗଛର ଫାଙ୍କଦେଇ ଦେଖାଯାଉଚି ପାଣି ଟୁଳୁ ଟୁଳୁ ସାନ ପୋଖରୀଟିଏ । କେତେବଡ଼ ମାଛଟାଏ ଶୂନ୍ୟକୁ ଡିଆଁ ମାରି ପୁଣି ପାଣି ଭିତରେ ମିଳାଇଗଲା । ଗୋଟିଏ ପଟରେ ବନ୍ଧା ହୋଇଚି ମିଶା ଗାଇଟିଏ – କେଡ଼େ ବଡ଼ ପହ୍ନା – ମୋଟା ସୋଟା ମାଈ ବାଛୁରୀଟିକୁ ଚାଟି ଲାଗିଚି ।

ଚାରିଆଡ଼େ ଲକ୍ଷ୍ମୀ ଶ୍ରୀ । ଦେଖିଲେ ଖୁସି ଲାଗୁଚି । ଆଦିକନ୍ଦଙ୍କର ନିଜ ଘରକଥା ମନେପଡୁଥିଲା । କେଡ଼େ ଶ୍ରୀହୀନ, ଆଉ ଦୟନୀୟ ।

ଘର ଭିତରୁ ଯୁବକଟିଏ ବାହାରି ଆସିଲା । ହାଲ୍ ଫେସନ୍‌ରେ ଲମ୍ବା ବାଳ ରଖିଚି । ପରିଧାନରେ ଫୁଲକଟା ସିଲ୍‌କ୍ ଲୁଙ୍ଗୀ ସାଙ୍ଗକୁ ଛାତିଖୋଲା ସୋର୍ଟିଂ ଗେଞ୍ଜି । ହାତରେ ଘଣ୍ଟା, ପାଦରେ ରବର ଚଟି ।

ଆଦିକନ୍ଦ ତାକୁ ଚିହ୍ନନ୍ତି ନାହିଁ । ହୁଏତ ଧୋବା ପୁଅ ହୋଇଥିବ । ଏଇତେବେ ଯାଇ ଓକିଲ ପରାମର୍ଶ କରି ଆସିଚି । ପରଧନରେ ବରବର୍ଣ୍ଣିଯ ସାଜିବାକୁ କମର କଷୁଚି ।

ଆଦିକନ୍ଦଙ୍କ ମନ ତିକ୍ତତାରେ ଭରିଗଲା । ଯୁବକଟି ତାଙ୍କ ଆଡ଼େ ଅନାଇଛି । କଣ ପଚାରିବି ପଚାରିବି ହେଉଚି ଯେମିତି । ଆଦିକନ୍ଦ ତା' ଆଡ଼କୁ ମୋଟେ ଚାହୁଁନାହାନ୍ତି । ଏପଟ ସେପଟ ଅନାଇ ଅତୀତକୁ ଖୋଜୁଛନ୍ତି ।

ପିଲାବେଳେ କେବେକେମିତି ଧୋବାକୁ ଡାକିବାକୁ ସେ ଏଠିକି ଆସିଛନ୍ତି । ଯାହା ତାଙ୍କର ମନେପଡୁଚି, କାଦୁଅ ପଚପଚ, ପଲ ପଲ କୁକୁଡ଼ା, ପଙ୍ଗା ପଙ୍ଗା ସିଂଘାଂଣିନାକିଆ ପିଲେହୀ ପେଟୁଆ ଅପରିଷ୍କାର ଲଙ୍ଗଳା, ଛୁଆ, କୁକୁର ପଲର ଭୋ ଭୋ ରଡ଼ି, କୁକୁଡ଼ାମାନଙ୍କର କକ୍‌କର କ' ଶବ୍ଦ ସାଙ୍ଗକୁ ଛିଣ୍ଡାନେକଡ଼ା ପିନ୍ଧା ମଣିମାନଙ୍କର କଳିକଜିଆର ଦୃଶ୍ୟ, ସେ ଏକ ନାରକୀୟ ଅବସ୍ଥା ।

ଆଉ ଏବେ ? ସବୁ ତ ଅଛି, ମାତ୍ର ତା'ର ରୂପ ବଦଳିଯାଇଚି ଯେମିତି ।

ହଠାତ୍ ଘର ଭିତରୁ ବାହାରି ଆସିଲା ଧୋବା ପାଟି କରି କରି । ଘାଗଡ଼ା ଗଳାରେ ସାଇ କମ୍ପାଇ ସେ ଗର୍ଜନ କରୁଥିଲା । ବେଳଆସି ମୁଣ୍ଡ ଉପରେ ହେଲାଣି । ଏଣେ ବାବୁଙ୍କର ମାଙ୍ଗଭଙ୍ଗା ଚାଲିଚି । ମୂଲିଆ ପିଲାର ଏତେ ଫେସନ କ'ଣ ବା ?

ଯୁବକଟି କଣ କହିବାକୁ ଯାଉଥିଲା । ହୁଏତ ପ୍ରତିବାଦ କରିଥାଆନ୍ତା । ମାତ୍ର ହଠାତ୍ ଧୋବାର ଦୃଷ୍ଟି ଆଦିକନ୍ଦଙ୍କ ଉପରେ ପଡ଼ିଲା । ସେ କିଛିକ୍ଷଣ ବିହ୍ୱଳ ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇଲା, ତା' ପରେ ଦୁଇକୁଦାରେ କ୍ଷେପିଆସି ପାଟିକଲା ଇଏ କିଏ, ସାନବାବୁ ! ତମେ କେତେବେଳେ ଆଇଲ ?

ଆଦିକନ୍ଦ କିଛି କହିଲେ ନାହିଁ । ମୋତେ ଡକାଇ ପଠାଇଥିଲେତ ମୁଁ ଧଉଡ଼ି ଯାଇଥାଆନ୍ତି । ସକାଳଟାରୁ ବାଉରି ସାଇ ଭିତରକୁ ତମର ଆସିବା କ'ଣ ଦରକାର ? ଧୋବା କହିଲା – ଆଦିକନ୍ଦ ଅଗତ୍ୟା ମୁହଁ ଖୋଲିଲେ । କହିଲେ – ତୋ ଚିଠି ମୁଁ ପାଇଚି ଧୋବେଇ ।

ଧୋବା କହିଲା, ଶୁଣ ଅଳ୍ପଙ୍କ କଥାକୁ । ଚିଠି ମୁଁ ଦେଲିଣି କୋଉ କାଳରୁ । ଆଉ ଇଏ ଆସି ଆଜି ମୁହଁ ଦେଖୋଉଚନି । ଧାନକଟା ଆଙ୍କ ପାଇଁ ଅନେଇ ବସିଥାନ୍ତା ପରା ।

ଧୋବାକଥା ସବୁଦିନେ ଏମିତି । ସେ ଯେ ପର ଘରେ ମୁଣ୍ଡ ବିକିଛନ୍ତି, ଏକଥା ସେ କଦାପି ବିଶ୍ୱାସ କରେନାହିଁ । ଇତିମଧ୍ୟରେ ଧୋବା ଦାନ୍ତରଗଡ଼ି ଯୁବକଟି ଆଡ଼କୁ ମାଡ଼ିଗଲା – ଅନେଇଚୁ କ'ଣ କଟାଶ ମେଡି । ସାନବାବୁ ପରା – ଓଳିଗି ହ...

ଯୁବକ ମୁହଁରେ ବିରକ୍ତିର ଚିହ୍ନ ସ୍ପଷ୍ଟ ହୋଇଉଠିଲା । ତଥାପି ସେ ହାତ ଉଠାଇଲା । ପାଟିରେ କହିଲା ନମସ୍କାର ।

ଆଦିକନ୍ଦଙ୍କର ମନେ ପଡ଼ିଯାଉଥିଲା ବିନା ଭୋଇର ସାଷ୍ଟାଙ୍ଗ ପ୍ରଣିପାତର ଦୃଶ୍ୟ । ବାପା ଉଠ ବୋଲି ନ କହିବା ଯାଏ ସେ ଭୂଇଁରୁ ଉଠୁ ନ ଥିଲା । ଧୋବା ବା କୋଉ କମ୍ । ଭୂଇଁରେ ମୁଣ୍ଡ ଲଗାଇ ସେମିତି ପଡ଼ିଥିବ ।

ଧୋବା ଯୁବକ ଆଡ଼କୁ ଅନାଇଲା, କହିଲା – ଆରେ ବେଇଗି ଯା ବା, ମୂଲିଆମାନେ କୋଉ ପହରୁ ଗଲେଣି । ଆଉ ଆମର ଏଠି ସଲ୍ଲବାଜ ଚାଲିଚି... ।

ପିଣ୍ଡା ବେଞ୍ଚ ଉପରେ ରଖା ହୋଇଥିବା ଟ୍ରାଞ୍ଜିଷ୍ଟର୍‌ଟାକୁ ଧରି ଯୁବକ ଏଥର ଚାଲିଗଲା । ଧୋବା ଯେମିତି ଏହି ମୁହୂର୍ତ୍ତକୁ ଅପେକ୍ଷା କରି ରହିଥିଲା । ପିଣ୍ଡା ଚେୟାର୍ ଉପରେ ତାଙ୍କୁ ବସାଇ ନିଜେ ପାଦ ତଳେ ବସି ନିମ୍ନ କଣ୍ଠରେ କହିବାକୁ ଲାଗିଲା, ‘‘ତେମେ କ'ଣ ଭାବିଲ, ଧୋବା ବାଉରୀ ଏଡ଼େ ନିମକହାରାମ ହୋଇଚି ଯେ, ସେ ଖାଇଲା ପତରରେ ଝାଡ଼ା ଫେରିବ ? ରବି ଆଜିକାଲିକା ପିଲା, ପର ଶିକ୍ଷାରେ ନାଚୁଚି – ମୁଁ ଯେତେ ମନା କଲି ମାନିଲା ନାହିଁ । ସହରକୁ ଯାଇ କ'ଣ ଓକିଲ ପରାମରଶ କରି ଆସିଚି । ହେଲେ ସାନ ବାବୁ ! ମୁଁ ବଞ୍ଚି ଥାଉଁ ଥାଉଁ ରବି କିଏ ? ମୁଁ ନିଜେ ତମ ଜମି ଛାଡ଼ି ଦଉଚି – ତେମେ ଏଥର ଅଲଗା ବେବସ୍ଥା କର । ମନ ଚହଲିଲାଣି ଯେତେବେଳେ ନିୟତ ବଦଳିବାକୁ କେତେବେଳ ?

ଧୋବାର ବକ୍ତବ୍ୟ ଶେଷ ହୋଇ ଯାଇଥିଲା । କାଳେ କାଳେ ଏଇଆ ତ ହୁଏ । ଆଭିଜାତ୍ୟର କଷଟିରେ ସର୍ବହରାର ବିଜୟରେଖା ସ୍ୱର୍ଣ୍ଣିମ ଆଭାରେ ଝଲସି ଉଠେ ।

ଆଦି କନ୍ଦ କଥା କହିବାକୁ ଭୁଲି ଯାଇଥିଲେ ।



# ମରଣରେ ତୁହୁଁ ମମ ଶ୍ୟାମ

ମୃତ୍ୟୁର କଷଟିରେ ଉତ୍କୀର୍ଣ୍ଣ ହୁଏ ଜୀବନର ଜୟ ଲେଖା । ଜୀବନ ମଣିଷର ବ୍ୟକ୍ତିଗତ । ନିଜର ରୁଚି ଅନୁସାରେ ବଞ୍ଚିବାର ସ୍ୱାଧୀନତା ସମସ୍ତଙ୍କର ଅଛି । କାଳ ତା'ର ନିକିତି ଧରି ବସିଥାଏ । ଅବିରାମ ତଉଲୁଥାଏ ପାଚିଲା, କଞ୍ଚା, ନୂଆପୁରୁଣା ସବୁକୁ । ତା'ର ସଦାସତର୍କ ପହରାର ଫାଙ୍କଦେଇ ଖସିଯିବ, ଏଡ଼େ ସାଧ କାହାର ଅଛି ।

ଏଇ ଧରନ୍ତୁ ପଦ୍ମଭୂଷଣ ଲଳାଟେନ୍ଦୁ ମହାନ୍ତିଙ୍କ କଥା । ଜୀବନର ବହୁ ଚଢ଼ାଉତରା ପଥ ଦେଇ ଆସିବା ପରେ ଆଜି ଏଇ କିଛି କ୍ଷଣ ପୂର୍ବରୁ ସେ ଚିରଦିନ ପାଇଁ ଶୋଇ ପଡ଼ିଲେ । ମହାକାଳର ଅମୋଘ ନିର୍ଦ୍ଦେଶ ଭଳି ଡାକ୍ତରଙ୍କର 'ଡେଡ୍' ଶବ୍ଦଟି ସମଗ୍ର ପରିବାର ଉପରେ ଅକାଳ ବଜ୍ର ଭଳି ଖସିପଡ଼ିଲା । ସ୍ତବ୍ଧ ହୋଇଗଲା କର୍ମଚଞ୍ଚଳତାର ଗୁଞ୍ଜରଣରେ ଭରି ଥିବା ଘରଟି କିଛି ସମୟ ପାଇଁ । ମହାନ୍ତିଙ୍କର ଜୀବନର ମିଆଦ ଶେଷ ହୋଇଗଲା ।

ପଛରେ ରହିଗଲା ବହୁ ମିଟିଂ, ସେମିନାର୍, ଆଲୋଚନା, ସାକ୍ଷାତ୍କାର ପ୍ରଭୃତିରେ ସଂକୀର୍ଣ୍ଣ ତାଙ୍କର ଜୀବନ । ସାରା ଜୀବନ ଧରି ସେ ଯାହା କରିନାହାନ୍ତି, ଆଜି ବହୁ ଆଲୋଚନା ଅପୂର୍ଣ୍ଣ ରଖି ସେ ଚୁପ୍‌ଚାପ୍ ଉଠି ଚାଲିଗଲେ । ସତେ ଯେମିତି ଏ ଜୀବନକୁ ସେ ଚିହ୍ନନ୍ତି ନାହିଁ !

କିଛି ଦିନ ପୂର୍ବରୁ ଟ୍ରେଡ୍ କର୍ଣ୍ଣର ପ୍ରତିନିଧି ଏକ ବିଶେଷ ସାକ୍ଷାତ୍କାରରେ ତାଙ୍କୁ ପଚାରିଥିଲେ, ଡଃ ମହାନ୍ତି, ଗୋଟିଏ ବ୍ୟକ୍ତିଗତ ପ୍ରଶ୍ନ ! ଏ ଜୀବନରେ ଆପଣ ସୁଖୀ ତ ?

ମୁହୂର୍ତ୍ତେ ମାତ୍ର ଦ୍ୱିଧା ନ କରି ଡଃ ମହାନ୍ତି ଉତ୍ତର ଦେଇଥିଲେ, ନିଶ୍ଚୟ । ସୁଖ ପାଇଁ ଯେ ମୋର ଜନ୍ମ ।

ଡଃ ମହାନ୍ତି ଏ କଥା କହିପାରନ୍ତି । କାରଣ ସବୁଦିଗରୁ ବିଚାର କରିବାକୁ ଗଲେ, ସେ ପ୍ରକୃତରେ ଜଣେ ସୁଖୀ ଗୃହସ୍ଥ । ଠିକ୍ ସମୟରେ ଚାକିରୀ କରିଛନ୍ତି । ଟପ୍‌ଟପ୍ କରି ସିଡ଼ି ଉଠି ଶୀର୍ଷ ସ୍ଥାନରେ ପହଞ୍ଚି ଦୀର୍ଘ କାଳ ଝଲମଲ କରିଛନ୍ତି । ବଡ଼ପୁଅ ନ୍ୟୁକ୍ଲିଅର ଫିଜିକ୍ସରେ ସାରା ବିଶ୍ୱର ମଥାମଣି । ଟରୋଣ୍ଟୋ ବିଶ୍ୱବିଦ୍ୟାଳୟରେ କ'ଣ ଗୋଟାଏ ଉଚ୍ଚ ଗବେଷଣାରତ । ନୋବେଲ୍ ପ୍ରାଇଜ୍ ପାଇଁ ନାମ ପ୍ରସ୍ତାବିତ ହୋଇସାରିଲାଣି ମାତ୍ର ଚୌରାଳିଶ ବର୍ଷ ବୟସରେ । ମଝିଆଁ ପୁଅ ଷ୍ଟିଲ୍ ଅଥରିଟୀ ଅଫ୍ ଇଣ୍ଡିଆର ପଦସ୍ଥ ଅଫିସର । ଉଚ୍ଚତର ଗବେଷଣା ପାଇଁ ବର୍ତ୍ତମାନ ଜର୍ମାନୀରେ । ସାନପୁଅ ଏଫ୍. ଆର୍. ସି. ଏସ୍. କରୁଛି ଲଣ୍ଡନରେ । ଦୁଇ ଝିଅ ବିବାହିତା, ସେମାନଙ୍କ ସ୍ୱାମୀମାନେ ବି କିଏ ନ୍ୟୁୟର୍କରେ ତ କିଏ ପାରିସ୍‌ରେ । ଏକବାରେ ଝଡ଼ା ହାତପାଦ । ସୁଖୀ ଗୃହସ୍ଥ ଆଉ କାହାକୁ କହନ୍ତି ?

ଚାଳିଶ ବର୍ଷ କାଳ ଅଫିସରି କରବା ପରେ ଡଃ ମହାନ୍ତି ଯେଉଁ ଦିନ ଅବସର ଗ୍ରହଣ କଲେ, ସେଇଦିନ ନବ ପ୍ରତିଷ୍ଠିତ ମାଙ୍ଗାନିଜ କର୍ପୋରେସନ୍‌ର ଚେୟାରମ୍ୟାନ ରୂପେ ପରଦିନଠାରୁ ଦାୟିତ୍ୱ ଗ୍ରହଣ କରିବା ନିମନ୍ତେ ସରକାରୀ ଚିଠି ତାଙ୍କର ହସ୍ତଗତ ହୋଇଥିଲା । ସେଥିରୁ ତାଙ୍କୁ ମୁକ୍ତି ମିଳିଲା, ଏଇ ଆଜି ।

ଡଃ ମହାନ୍ତି ଜଣେ ସଫଳ ମଣିଷ । ସେଇମାନଙ୍କ ନାମ ତ ଇତିହାସରେ ସୁବର୍ଣ୍ଣ ଅକ୍ଷରରେ ଲିପିବଦ୍ଧ ହୁଏ । ଗାନ୍ଧି ନିଜ ଲକ୍ଷ୍ୟ ହାସଲରେ ସଫଳ ହୋଇଥିଲେ ବୋଲି ସେ ମହାତ୍ମା, ଜାତିର ପିତା । ଯଦି ସେ ହାରିଯାଇଥାନ୍ତେ, ତେବେ ତାଙ୍କ ଇତିହାସ ଅନ୍ୟ ପ୍ରକାର ଲେଖା ଯାଇଥା'ନ୍ତା । ସଫଳତା ତେଣୁ କାଳିମାମୁକ୍ତ । ତା' ପାଖରେ ସବୁ କିଛି ତୁଚ୍ଛ । ମଣିଷ ଆଖିରେ ଏଇ ସଫଳତା ଟିକିକ ହିଁ ହେଉଛି ଭଗବାନ । ଇତିହାସ ଭଳି ଜୀବନର ମାନ ନିର୍ଦ୍ଧାରିତ ହୁଏ ଏଇଆକୁ ଧରି ।

ଏ ଦିଗରୁ ଡଃ ମହାନ୍ତିଙ୍କ ଜୀବନରେ ଟିକିଏ ବି ଫାଙ୍କ ନ ଥିଲା । ଧୂଳିମୁଠାକୁ ସୁନାମୁଠାକରେ ପରିଣତ କରିବାର ଯାଦୁ ତାଙ୍କୁ ଜଣା ଥିଲା । ଏଇ ଯେମିତି ମାଙ୍ଗାନିଜ କର୍ପୋରେସନ୍‌ର ଚେୟାରମ୍ୟାନ ପଦ । ସେ ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ଏହି କର୍ପୋରେସନ୍‌ଟି ଚାଲୁଥିଲା କ୍ଷତିରେ । ମାତ୍ର ସାତଟି ବର୍ଷ ଭିତରେ ଡଃ ମହାନ୍ତି ଏହାର ବାଲାନ୍ସ୍‌ସିଟ୍‌ର ରୂପ ବଦଳାଇ ଦେଇଥିଲେ । ବର୍ତ୍ତମାନ ଏହା ପ୍ରଦେଶର ଏକମାତ୍ର ଲାଭଦାୟକ ଅଟୋନୋମସ କନ୍‌ସାର୍ନ । ଏ ବିଷୟ ଦିଲ୍ଲୀ ସେକ୍ରେଟେରୀଏଟ୍‌ରେ ଆଲୋଚିତ ହେବା ପରେ ପ୍ରଧାନମନ୍ତ୍ରୀଙ୍କ ପରାମର୍ଶରେ ରାଷ୍ଟ୍ରପତି ଖୁବ୍ ଶୀଘ୍ର ତାଙ୍କୁ

ମଧ୍ୟପ୍ରାଚ୍ୟର କୌଣସି ଦେଶରେ ରାଷ୍ଟ୍ରଦୂତ ରୂପେ ନିଯୁକ୍ତ କରିବା ନିମନ୍ତେ ନିଷ୍ପତ୍ତି ନେଇ ସାରିଥିଲେ । ରାଷ୍ଟ୍ରପତିଙ୍କ ସେକ୍ରେଟେରିଏଟ୍‌ରେ ନିଯୁକ୍ତିନାମା ଟାଇପ୍ ହୋଇ ରଖାଯାଇଛି । ଖାଲି ଯାହା ଦସ୍ତଖତ ହେବାକୁ ବାକି । ତା' ଆଉ ଦରକାର ହେବ ନାହିଁ । କାରଣ ଓୟାରଲେସ୍ ଯୋଗେ ରାଷ୍ଟ୍ରପତିଙ୍କୁ ତାଙ୍କର ତିରୋଧାନ ଖବର ଜଣାଇ ଦିଆସରିବଣି ।

ଗୋଟିଏ ଶୁଭ୍ର ଶଯ୍ୟାରେ ଡଃ ମହାନ୍ତି ଶୋଇ ପଡ଼ିଛନ୍ତି । ମହାଯାତ୍ରାରେ ବାହାରିବା ପାଇଁ ଆହୁରି ଡେରି ଅଛି । ସାରା ଦେଶରେ ତାଙ୍କର କେତେ ଗୁଣମୁଗ୍ଧ ଭକ୍ତ – ଅନ୍ତରଙ୍ଗ ବନ୍ଧୁ । ସେମାନଙ୍କୁ ଶେଷ ଦର୍ଶନର ସୁଯୋଗ ଦିଆଯିବ । ପିଲାମାନେ, କିଛି ଆତ୍ମୀୟସ୍ୱଜନ ଦେଶ ବିଦେଶରେ ଅଛନ୍ତି । ସେମାନଙ୍କୁ ଖବର ଦିଆଯିବ, ଦିଆ ଚାଲିଚି ବା ଦିଆ ସରିଲାଣି । ଶୋକକୁ ମୁଲତବୀ ରଖି ଆଗରେ ଗୋଟିଏ ଲମ୍ବା ତାଲିକା ଥୋଇ ଡଃ ମହାନ୍ତିଙ୍କର ଅନୁଜ ସର୍ବଦମନ ଡାଏଲ୍ ଘୂରାଇ ଚାଲିଛନ୍ତି । 'ହଲୋ ହଲୋ... ଟରୋଣ୍ଟୋ' – ଟରୋଣ୍ଟୋ– ୟେସ, ମେସେଜ୍ ଫର ଅତନୁ ମହାନ୍ତି – ଇତ୍ୟାଦି ଇତ୍ୟାଦି ।

ସେକ୍ରେଟରିଏଟ୍‌ରେ ତେଣେ ଏମାର୍ଜେନ୍‌ସି କାବିନେଟ୍ ମିଟିଂ ବସିଚି । ମୁଖ୍ୟମନ୍ତ୍ରୀ ସୀମାନ୍ତ ଅଞ୍ଚଳ ଗସ୍ତରେ ଅଛନ୍ତି । ବେତାର ଖବର ପାଇ ସେ ତାଙ୍କର ଗସ୍ତ ବନ୍ଦ କରି ରାଜଧାନୀକୁ ଫେରି ଆସୁଛନ୍ତି – ସେ ପହଞ୍ଚିଗଲେ ଡଃ ମହାନ୍ତିଙ୍କ ପାଇଁ ଷ୍ଟେଟ୍ ମୋର୍ଣ୍ଣିଂ ହେବ କି ନାହିଁ, ତାହା ଠିକ ହେବ ।

ଇତି ମଧ୍ୟରେ ସହରରେ ଏଇ ଦୁଃସମ୍ବାଦ ପ୍ରଚାରିତ ହୋଇଯିବା ଫଳରେ, ବହୁ ଯାନବାହନର ସ୍ରୋତ ଶାକ୍ୟନଗରର ଏଇ ତ୍ରିତଳ ପ୍ରାସାଦ ଆଡ଼କୁ ଛୁଟିଚି । ଫୁଲରେ ଡଃ ମହାନ୍ତିଙ୍କ ପାର୍ଥିବ ଶରୀର ଛାଇ ହୋଇଗଲାଣି । ସାଙ୍ଗେ ସାଙ୍ଗେ କିଛି କିଛି ଫୁଲ ମହାନ୍ତିଙ୍କ ଦେହରୁ କାଢ଼ି ନିଆଯାଇ ନୂଆ ପାଇଁ ସ୍ଥାନ କରି ଦିଆଯାଉଛି । ପ୍ରଶସ୍ତ କୋଠରୀଟିର ଗୋଟିଏ ପାଖରେ ବମ୍ବେପାଟାର୍ଣ୍ଣ ପଲଙ୍କ ଉପରେ ମୃତ ଦେହଟିକୁ ଶୁଆଇ ଦିଆଯାଇଛି । ଚନ୍ଦନ ଅଗୁରୁ କୁଙ୍କୁମରେ ତାଙ୍କର ପ୍ରଶସ୍ତ କପାଳ ଚିତ୍ରିତ । ଘରର ଗୋଟିଏ କୋଣରେ ଜଳୁଚି ସୁଗନ୍ଧି ଧୂପ ।

ଆଲୋକ ଛାୟା ଡେକରେଟର୍ ଏ ଭିତରେ ଲନ୍‌ରେ ତାଙ୍କର କାମ ଆରମ୍ଭ କରି ଦେଇଛନ୍ତି । ବିରାଟ ଏକ ସାମିଆନାଟଣା ହୋଇଗଲାଣି । ଟ୍ରକ୍‌ରୁ ଓହ୍ଲାଯାଉଛି

ଶହ ଶହ ଆସନ । କେତେ ଜଣ ମୂଲିଆ ସେସବୁକୁ ସଜାଡ଼ି ରଖୁଛନ୍ତି । ତଦାରଖ କରୁଛନ୍ତି କର୍ପୋରେସନ୍‌ର ଦକ୍ଷ ଅଧିକାରୀମାନେ । ସବୁ କାର୍ଯ୍ୟ ଚାଲିଛି ଶୃଙ୍ଖଳିତ ଭାବେ ।

ମୃତ ଦେହ ପାଖରେ ଗୋଟିଏ ଛୋଟିଆ ମେଜ । ତା' ଉପରେ ରଖାଯାଇଛି ପଟାବନ୍ଧାଇ ଖାତାଟିଏ ଆଉ କଲମ । ଯେଉଁମାନେ ଶେଷ ଦର୍ଶନ ପାଇଁ ଆସୁଛନ୍ତି, ସେମାନେ ତହିଁରେ ସ୍ୱାକ୍ଷର କରିଯାଉଛନ୍ତି । ଜଣେ ସ୍ୱେଚ୍ଛାସେବକ ଏଥିପାଇଁ ବିନୀତ ଭାବରେ ଦର୍ଶନ ପ୍ରାର୍ଥୀମାନଙ୍କୁ ଅନୁରୋଧ ଜଣାଉଛନ୍ତି ।

ଘରେ ତିନିଟା ଫୋନ୍ ନିରବଚ୍ଛିନ୍ନ ଭାବେ ବାଜିବାରେ ଲାଗିଛି । ଆଉ ଜଣେ ସ୍ୱେଚ୍ଛାସେବକ ଖାତା କଲମ ଧରି ସେଇଠି ବସିଛନ୍ତି । ବାର୍ତ୍ତା ସବୁ ଲିପିବଦ୍ଧ ହୋଇଯାଉଛି । ପ୍ରୟୋଜନୀୟ ଖବର ମଧ୍ୟ ସେ ଦେଇ ଚାଲିଛନ୍ତି ।

ମେଘମାଳା ଦେବୀଙ୍କୁ ଏକାନ୍ତରେ ଟିକିଏ ଶୋକ କରିବାକୁ ମଧ୍ୟ ତର ନାହିଁ । ନିଜର ଭାରି ଦେହକୁ ନେଇ ସେ ତଳ ଉପର, ଉପର ତଳ ହେଉଛନ୍ତି । ମୃଦୁ ସ୍ୱରରେ କର୍ମୀମାନଙ୍କୁ ନାନା ନିର୍ଦ୍ଦେଶ ଦେଉଛନ୍ତି । ଆତ୍ମୀୟସ୍ୱଜନମାନେ ଯଥାଶୀଘ୍ର ଆସି ପହଞ୍ଚିଯିବେ । ସେମାନଙ୍କ ରହିବା ଖାଇବା ଇତ୍ୟାଦିର ବ୍ୟବସ୍ଥା କରି ରଖିବାକୁ ହେବ । ତିନି ପୁଅ, ଦୁଇ ଝିଅ, ସେମାନଙ୍କର ପିଲାପିଲି, ମାମୁଁ, ମଉସା, ଭାଇ, ଭାଉଜ, ଦାଦୀ ଖୁଡ଼ୀ – ତାଲିକାର କୋଉ ଶେଷ ଅଛି ? ମେଘମାଳା ଦେବୀ ଗୋଟିଏ ପ୍ୟାଡ୍‌ରେ ଦ୍ରୁତ ଗତିରେ କ'ଣ ସବୁ ଟିପି ପକାଇ ଜଣେ କର୍ମୀଙ୍କ ହାତକୁ ବଢ଼ାଇ ଦେଲେ ।

ତିନିତାଲାର ଦୁଇ ନମ୍ବର ରୁମ୍‌ରେ ଫ୍ଲାଶ୍ କାମ କରୁନାହିଁ । ଦୁଇ ତାଲାର କଣ ଘରେ କୁଲର୍ ଅଚଳ ହୋଇରହିଛି । କୋଉ ରୁମ୍‌ର ଫ୍ୟାନ୍ ବେଶୀ ଶବ୍ଦ କରୁଛି । କେଉଁଠି ଲାଇଟ୍‌ଫ୍ୟୁଜ୍ ହୋଇ ରହିଚି । କେଉଁଠି ପାଣି ଲିକ୍ କରୁଛି । ସମସ୍ତେ ଆସି ପହଞ୍ଚିବା ପୂର୍ବରୁ ଏସବୁ ଠିକ୍ ହୋଇଯାଇଥିବା ଦରକାର । ପ୍ଲମ୍ବର, ଇଲେକ୍ଟ୍ରିସିଆନ୍, କାର୍ପେଣ୍ଟର, ସ୍କାଭେଞ୍ଜର ସମସ୍ତଙ୍କୁ ଖବର ଦିଆଯିବା ଦରକାର । ରାତାରାତି ଲାଗି ଏସବୁ ଅସୁବିଧାକୁ ଠିକ୍ କରିବାକୁ ହେବ । ମେଘମାଳା ସ୍ଲିପ୍ ପରେ ସ୍ଲିପ୍ ଲେଖି ଚାଲିଛନ୍ତି ।

କିଚେନରେ ତେଣେ ଗୋଟିଏ ବିରାଟ ପିତଳ ହାଣ୍ଡିରେ ଗରମ ପାଣି ଫୁଟୁଚି । ପୂଜାହାରୀ କାଳିଆ ନନା ଦ୍ରୁତଗତିରେ ଚା' ତିଆରି କରାଇ ଟ୍ରେ ପରେ ଟ୍ରେ ବାହାର

ଘରଆଡ଼େ ପଠାଇବାରେ ଲାଗିଛନ୍ତି । ପୁରୀ ଆଉ ଗୋଟାଏ ଛଙ୍କା ତରକାରୀର ବ୍ୟବସ୍ଥା କରିପକାଇବାକୁ ସେମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଅଦାଦି ସାହୁ ଦୋକାନୀକୁ ଖବର ଚାଲିଗଲାଣି । ବଡ଼ ବଡ଼ ଗାଙ୍ଗୁଲାରେ ଭରି ତାଙ୍କର ପ୍ରସିଦ୍ଧ ସ୍ୱଞ୍ଜ ରସଗୋଲା ହଜାରେ ଆଜି ରାତି ପାଇଁ ତାଙ୍କ ଲୋକମାନେ ପହଞ୍ଚାଇ ଦେଇଯିବେ ।

ପରିବା କାଟୁ କାଟୁ ଯୋଗୀ ମିଶ୍ର ତା' ପାଖରେ ବସି ମସଲା ବାଟୁଥିବା ଭଗି ପଣ୍ଡାକୁ କହିଲା ଭଗିନନା, ଇଏ କ'ଣ କାହାର ମରାଘର ନା ବାହାଘର ବା ?''

କାଳିଆନନା କାନରେ ଏତକ ପଡ଼ିଯିବା ମାତ୍ରେ ସେ ତ୍ରସ୍ତ ହୋଇ ଚାରିଆଡ଼କୁ ଅନାଇ ଦେଲା । ତା' ପରେ ଦାନ୍ତ କାମୁଡ଼ି କହିଲା – ତୁନି ହ, ପତର ଗୋଟେଇବାକୁ ଆସି ତୋଟା ମୂଲ କରୁଚି !

ଶୋଇ ପଡ଼ିଛନ୍ତି ଡଃ ଲଲାଟେନ୍ଦୁ ମହାନ୍ତି । ସତଷଠି ବର୍ଷର ଜୀବନକୁ ପଛରେ ପକାଇ ଦେଇ ଆଜି ସେ କେଉଁ ଏକ ଦୁର୍ଲ୍ଲଭ ବସ୍ତୁର ସନ୍ଧାନରେ ବାହାରି ଯାଇଛନ୍ତି । ଲେଉଟି ଆଉ ଏ ଘରେ ପାଦ ଦେବେ ନାହିଁ । କିଛି ଦିନ ପୂର୍ବରୁ ଡଃ ମହାନ୍ତି ନିଜେ ସ୍ୱୀକାର କରିଥିଲେ 'ସୁଖ ପାଇଁ' ସେ – ଆଉ ସୁଖ ହେଉଛି କେବଳ ତାଙ୍କ ପାଇଁ ।

ଆଜିଠୁଁ ସତଷଠି ବର୍ଷ ପୂର୍ବେ ଉପକୂଳବର୍ତ୍ତୀ ଜିଲ୍ଲାର କେଉଁ ଏକ ତଳମାଳ ଅଞ୍ଚଳରେ ଗୋଟିଏ ଛୋଟ ମାଟି ଘରର ଆଲୋକବାୟୁ ଚଳାଚଳହୀନ ଅନ୍ତୁଡ଼ିଶାଳର ଅନ୍ଧାରିଆ କୋଣରେ ଯେଉଁ ଦିନ ପ୍ରଥମେ ସେ ମାଟି ଛୁଇଁଲେ, ସେଦିନ କିନ୍ତୁ ଷଠି ପୂଜାଟିଏ କରିବା ପାଇଁ ତାଙ୍କର ବାପା ଜଗନ୍ନାଥଙ୍କ ଅଣ୍ଟାରେ କଉଡ଼ିଟିଏ ନ ଥିଲା । ଦୀର୍ଘକାଳର ଅଯତ୍ନ ଆଉ ଅବହେଳା, ଅପୁଷ୍ଟିରେ ନବପ୍ରସୂତି ଚାନ୍ଦମଣି ଏତେ କାଇଲା ହୋଇପଡ଼ିଥିଲେ ଯେ, ବିଛଣାରୁ ଉଠି ଠିଆ ହେବା ମଧ ତାଙ୍କର ପକ୍ଷରେ ସମ୍ଭବ ନ ଥିଲା । ତା' ଉପରେ ଥିଲା ଅନ୍ଧାରକଣା । ଦିନଯାକ ତ ସେସବୁ ଦେଖି ପାରୁଥିଲେ । ସଞ୍ଜ ହେବା ମାତ୍ରେ ସାରା ଦୁନିଆ ତାଙ୍କ ପାଇଁ ଅନ୍ଧାର ହୋଇଯାଉଥିଲା । ଅନ୍ତୁଡ଼ିଶାଳର ଗୋଟିଏ କଣରେ ତେଣୁ ତାଙ୍କ ପାଇଁ ଖୋଳା ହୋଇଥିଲା ଗୋଟିଏ ଗାତ । ସେଇଥିରେ ତାଙ୍କୁ ପ୍ରାକୃତିକ କ୍ରିୟାଦି ସାରିବାକୁ ହେଉଥିଲା ।

କଞ୍ଚାକାଠର ଧୂଆଁରେ ପରିପୂର୍ଣ୍ଣ ସେଇ କାଳକୋଠରୀ ଭିତରୁ ଲଲାଟେନ୍ଦୁ ଆଉ ତାଙ୍କ ଜନ୍ମଦାତ୍ରୀ କେମିତି ଯେ ବାହାରକୁ ଆସିପାରିଲେ, ତାହା ଅନ୍ୟ ଏକ ଇତିହାସ । ସେ ଯୁଗରେ ଏହା ତ ଏମିତି କିଛି ଗୋଟାଏ ବଡ଼ କଥା ନ ଥିଲା । ଯାହାର ବଞ୍ଚିବାର ସେ ବଞ୍ଚୁଥିଲା ନ ହେଲେ ଭାଗ୍ୟ !

ଗାଆଁର ସେଇ ଘର ଏବେବି ଅଛି । ଲଲାଟେନ୍ଦୁଙ୍କ ପାଇଁ ତା'ର ଗୋଟାଏ ପ୍ରତ୍ନତାତ୍ତ୍ୱିକ ମହତ୍ତ୍ୱ ରହିଯାଇଛି । ପିଲାମାନେ ତାଙ୍କର ଏଇ ଦୁର୍ବଳତାକୁ ବାଜେ ସେଣ୍ଟିମେଣ୍ଟ ବୋଲି କହି ଆଢୁଆଳରେ ହସାହସି ହେଉଥିବାର ସେ ଜାଣନ୍ତି । ପାରୁ ପର୍ଯ୍ୟନ୍ତ ମହାନ୍ତିଙ୍କର ସନ୍ତପଡ଼ା ଗ୍ରାମର ଏଇ ଅଧ୍ୟାୟକୁ ବାହାର ଦୁନିଆ ଆଗରେ ଅସ୍ୱୀକାର କରାଯିବା ଯେ ତାଙ୍କର ବର୍ତ୍ତମାନର ସାମାଜିକ ପ୍ରତିଷ୍ଠା ପାଇଁ ଏକାନ୍ତ ଆବଶ୍ୟକ, ଏହା ବାରମ୍ବାର ତାଙ୍କୁ ଜଣାଇ ଦିଆଯାଇଥିଲେ ମଧ୍ୟ ଡଃ ମହାନ୍ତି ସେ କଥା କାନକୁ ନିଅନ୍ତି ନାହିଁ । ମୂଳରୁ ଚୂଳ ପର୍ଯ୍ୟନ୍ତ ରାଜସ୍ଥାନୀ ନାଲି ପଥର ଆଉ ମାର୍ବଲ ଟାଇଲ୍‌ରେ ମୋଡ଼ା ଶାକ୍ୟ ନଗରସ୍ଥିତ ଏଇ ବିରାଟ ହର୍ମ୍ୟ ନିକଟରେ ସନ୍ତପଡ଼ା ଗ୍ରାମର ସେଇ ନୁଆଣିଆ ନାହା ଚାଳିଆ ଘରଟିର ମୂଲ୍ୟ ଯେ ତାଙ୍କ ଆଖିରେ ବହୁତ ବେଶୀ, ଏ କଥା ଡଃ ମହାନ୍ତି ତ କାହାକୁ ବୁଝାଇ ପାରନ୍ତେ ନାହିଁ ।

ସବ୍‌ସେ ଚୁପ୍ ଭଲା ।

ମୁଠାଏ ଅନ୍ନ ପାଇଁ ସଂଘର୍ଷ କରୁଥିବା ସେଦିନ ସେଇ ଗାଉଁଲୀ ପିଲାଟି ଆଜି କେମିତି ଦେଶର ମଧ୍ୟ ମଣି ହୋଇଉଠିବା, ସେ କାହାଣୀ ଖୁବ୍ ଅଳ୍ପ ଲୋକ ଜାଣନ୍ତି । ସଂଘର୍ଷ ଆଉ ଦୁଃଖର ବିବରଣୀରେ ତ କୌଣସି ରୋମାଞ୍ଚ ନ ଥାଏ । ଏ ଦେଶର ଅନେଶୋତ ଭାଗ ଲୋକଙ୍କ ଜୀବନରେ ତାହା ଲେଖା ହୋଇ ରହିଛି । ତେବେ ମହାନ୍ତିଙ୍କ କ୍ଷେତ୍ରରେ ତାହାର ସାମାନ୍ୟ ବ୍ୟତିକ୍ରମ ଘଟିଛି । ସଂଘର୍ଷର ଉତ୍ତାଳ ତରଙ୍ଗ ଚୂଡ଼ାରେ ଭାସି ଭାସି ସେ ରୂପକଥାର ପ୍ରବାଳ ଦ୍ୱୀପରେ ପହଞ୍ଚି ଯାଇଛନ୍ତି । ଏତିକି ଯାହା ପାର୍ଥକ୍ୟ ।

ବାଲ୍ୟକାଳର ଗୋଟିଏ ଦୁଃଖଦ ଘଟଣାର କରୁଣ ସ୍ମୃତି ନୈରାଶ୍ୟର କଳାଛାଇ ଭଳି ସଫଳତାର ଆଲୁଅ ଝଲମଲ ତାଙ୍କର ମନର ଆକାଶକୁ ସଦାବେଳେ ଆଚ୍ଛନ୍ନ କରି ରଖୁଥିଲା । ମେଘମାଳାଙ୍କୁ ସେ ଏହା ଥରେ କହିପକାଇଥିଲେ ଆଉ ସେଦିନର ସେଇ ରୋମାଞ୍ଚକର ଘଟଣାର ବିବରଣୀ ନିଜ ଡାଏରୀର ଗୋଟିଏ ପୃଷ୍ଠାରେ ଲେଖି ଦେଇଥିଲେ ।

କିଏ କାଳେ ଦେଖିପକାଇବ ବୋଲି ମେଘମାଳା ତାକୁ ଗଡ୍‌ରେଜ ଆଲମିରାର ଲକର ଭିତରେ ଲୁଚାଇ ରଖିଛନ୍ତି । ଆଜି ଐଶ୍ୱର୍ଯ୍ୟର ସୁଖଦ ସ୍ରୋତରେ ପହଁରୁଥିବା ଡଃ ମହାନ୍ତି ଯେ, ଦିନେ ମୁଠାଏ ମୁଢ଼ି ପାଇଁ ତାଙ୍କ ଜନ୍ମଦାତ୍ରୀଙ୍କର ଲାଞ୍ଛନାର କାରଣ

ହୋଇଥିଲେ, ସାରା ଦୁନିଆ ଯଦି ଏକଥା ଜାଣିବାକୁ ପାଏ, ତେବେ ଡଃ ମହାନ୍ତିଙ୍କର ଇମେଜରେ କାଳି ଲେପା ହୋଇଯିବ ନାହିଁ ?

ଆଜିର ଦୁନିଆରେ ଏଇ ଇମେଜ୍‌ଟା ତ ହେଉଛି ସଫଳତାର ଗୋପନ ଚାବିକାଠି ।

କେତେ ବା ବୟସ ହେବ ସେତେବେଳେ ଲଲାଟେନ୍ଦୁଙ୍କୁ ? ଖୁବ୍ ଜୋରରେ ଛ' କିମ୍ବା ସାତ । ସଞ୍ଜ ବୁଡ଼ିଆସୁଥାଏ । ଚାଟଶାଳୀରୁ ବାହୁଡ଼ି ସେ ନିଜ ବୋଉଙ୍କୁ ଖାଇବାକୁ ମାଗିଲେ । ଘରେ କିଛି ନ ଥିଲା । ପିଣ୍ଡାରେ ଥୁଆ ହୋଇଥିଲା ବେତାରେ ବେତାଏ ଧାନ । ସେଇଥିରୁ ଆଞ୍ଜୁଳାଏ ମହାନ୍ତିଙ୍କ ଅଣ୍ଟିରେ ଦେଇ ବୋଉ ତାଙ୍କୁ ଗୁଡ଼ିଆ ଘରକୁ ପଠାଇ ଦେଇଥିଲେ । ଧାନ ବଦଳରେ ମୁଢ଼ି । ପଇସାଟାଏ ବା କୋଉଠୁ ପାଇଥାନ୍ତେ ସେ ?

ମୁଢ଼ି ଚୋବାଇ ଚୋବାଇ ଘରକୁ ଫେରିଲା ବେଳକୁ ସେଠି ସେଣେ ରକ୍ତାରକ୍ତି କାଣ୍ଡ । ଅଗଣାରେ ଅଚେତ ହୋଇପଡ଼ିଥିଲେ ତାଙ୍କର ସର୍ବଂସହା ଜନନୀ ଚାନ୍ଦମଣି ଦେଈ । ତାଙ୍କ ଆଣ୍ଠୁରୁ ଧାର ଧାର ରକ୍ତ ବହିଯାଇ ତୃଷିତ ମାଟି ଭିତରକୁ ଚାଲିଯାଉଥିଲା । ପାଖରେ ତାଙ୍କର କେହି ନ ଥିଲେ ।

ଆସନ୍ନ ପୌଷର ସେଇ ପ୍ରାୟାନ୍ଧକାର ପରିବେଶରେ ନିଜ ଗର୍ଭଧାରିଣୀଙ୍କର ଏଇଭଳି ଅବସ୍ଥା ଦେଖି ସେ ମୁହ୍ୟମାନ ହୋଇ ପଡ଼ିଥିଲେ । ବୋଉଲୋ ବୋଲି ଚିତ୍କାର କରି ସେ ତାଙ୍କ ପାଦ ପାଖରେ ଲୋଟି ପଡ଼ିଥିଲେ । ଏତେ କଷ୍ଟରେ ସଂଗୃହୀତ ମୁଢ଼ି ମୁଠାକ ସେଇଠି ବିଞ୍ଚି ହୋଇ ଯାଇଥିଲା ।

ଚାନ୍ଦମଣିଙ୍କର ଚେତା ହୁଏତ ଏ ଭିତରେ ଫେରି ଆସିଥିଲା । ବାମ ହାତରେ ଭରା ଦେଇ ସେ ଉଠିବାକୁ ଚେଷ୍ଟା କରୁଥିଲେ ଆଉ ଅଭୟପ୍ରଦା ଡାହାଣ ହାତରେ ଧୀରେ ଧୀରେ ଲଲାଟେନ୍ଦୁଙ୍କ ମୁଣ୍ଡ ଆଉଁସି ଦେଉଥିଲେ ।

ହଠାତ୍ ଗୋଟାଏ ଝଟ୍‌କାରେ ଲଲାଟେନ୍ଦୁ ଟାଣି ହୋଇ ଯାଇଥିଲେ । ତାଙ୍କ ଅଣ୍ଟିରେ ତଥାପି ଅବଶିଷ୍ଟ ରହିଯାଇଥିବା ମୁଢ଼ିତକକୁ ନିର୍ମମ ଭାବେ ବିଞ୍ଚିଦେଇ ତାଙ୍କର ପିତୃବ୍ୟ ତାଙ୍କୁ ଦୂରକୁ ନିକ୍ଷେପ କରିଥିଲେ 'ସବୁ ଏଇ କାଙ୍ଗାଳିଆ ଟୋକା ପାଇଁ' ବୋଲି ଭର୍ତ୍ସନା କରି ।

ହଁ ତାଙ୍କରି ପାଇଁ ତ । ସାତବର୍ଷର ଗୋଟାଏ ସଦା କ୍ଷୁଧିତ ଅସୁରର ପେଟରେ ଜଳୁଥିବା ନିଆଁକୁ ଶାନ୍ତ କରିବା ପାଇଁ ସିନା ଚାନ୍ଦମଣି ସେଦିନ ସଂକ୍ରାନ୍ତି ଗୁରୁବାର

ସନ୍ଧ୍ୟାବେଳଟାରେ ଏକାନ୍ନବର୍ତ୍ତୀ ପରିବାରର ଅନ୍ନଭଣ୍ଡାର ଉପରେ ଆଖି ପକାଇଥିଲେ । ସଦାଚଞ୍ଚଳା ଲକ୍ଷ୍ମୀ ଯେ, ଏହି ଅନୀତିରେ ମହାନ୍ତି ପରିବାରର ଗୃହାଙ୍ଗନରୁ ପାଦ ଚଳାଇ ଅନ୍ୟତ୍ର ଚାଲିଯିବେ, ଏ ବିଷୟ ସେତେବେଳେ ତାଙ୍କର ଖିଆଲ ନ ଥିଲା ।

ସାମାନ୍ୟ ଗୋଟାଏ ନାରୀ ହୋଇ ଯଦି ସେ ଏଭଳି ଔଦ୍ଧତ୍ୟ କରିପାରିଲେ, ତେବେ ପୁରୁଷ ହୋଇ ପିତୃବ୍ୟ ମହୋଦୟ ଏହାକୁ ବରଦାସ୍ତ କରିଯିବେ କେମିତି ? ଏ ଅବଶ୍ୟ ଅଲଗା କଥା ଯେ, ଏଇ ଧାନବେଢା ହିଁ ନିଷ୍କର୍ମା ପିତୃବ୍ୟଙ୍କର ସମସ୍ତ ଦାବୀ ମେଣ୍ଟାଇ ଥାଏ । ସେଥିପାଇଁ ବାର ଅବାର ଇତ୍ୟାଦି ବିଚାରକୁ ନିଆଯାଏ ନାହିଁ । ସେ ଯେ ପୁରୁଷ ।

ହାତ ପାଖରେ ପଡ଼ିଥିବା ଏକ କାଠଫାଳିଆରେ ପୁରୁଷପୁଙ୍ଗବ ସେଦିନ ଭଲ ଭାବରେ ନିଜର ମାତୃସମା ଅସହାୟା ନାରୀର ଔଦ୍ଧତ୍ୟକୁ ଶାସନ କରିଥିଲେ । ନିଶରେ ପେଜସର ମାରି ଦୁଧସର ବୋଲି ପ୍ରଚାର ମାଧ୍ୟମରେ ନିଜର ସାମ୍ରାଜ୍ୟ ବଜାୟ ରଖିବାକୁ ଆପ୍ରାଣ ଉଦ୍ୟମ ଚଳାଇଥିବା ଅଭିଜାତ ପରିବାରର ଗୃହବଧୂ, ନୀରବରେ ଅଶ୍ରୁମୋଚନ କରିବା ବ୍ୟତୀତ ଆଉ କିଛି କରିପାରି ନ ଥିଲେ ।

ଘା' ତ ଶୁଖିଯାଇଥିଲା । ମାତ୍ର ରହିଯାଇଥିଲା ବଡ଼ ଗୋଟାଏ ଚିହ୍ନ । ପରେ କେବେ କେମିତି ବୋଉଙ୍କ ପାଖରେ ଶୋଇଥିବାବେଳେ ଲଲାଟେନ୍ଦୁଙ୍କର ନିଦ ଅସମୟରେ ଭାଙ୍ଗିଗଲେ, ସେ ଦେଖନ୍ତି ବୋଉ ସେଇ ଘା' ଚିହ୍ନ ଆଡ଼େ ଅନାଇ ଚୁପ୍‌ଚାପ୍ ବସିଛନ୍ତି ଆଉ ତାଙ୍କ ଆଖିରୁ ଧାରଧାର ଲୁହ ବହିଯାଉଛି ।

ସୁଖରେ ରହିବା ପାଇଁ ଜନ୍ମ ହୋଇଥିବା ଲଲାଟେନ୍ଦୁଙ୍କର ଭଏ ହେଉଛି ତେବେ ପ୍ରସ୍ତୁତି କାଳ !

ମହାନିଦ୍ରାରେ ଶାୟିତ ଲଲାଟେନ୍ଦୁଙ୍କ ଆଡ଼େ ଅନାଇ ମେଘମାଳାଙ୍କର କେତେ କଥା ମନେପଡ଼ିଯାଉଥିଲା । ପ୍ରତ୍ୟେକ ମଣିଷର ଜୀବନରେ ତ ଗୋଟିଏ ଅନ୍ଧାରିଆ ଅଂଶ ଥାଏ । ସେ ଅଂଶଟିକୁ କ'ଣ କେହି କେବେ କାହାକୁ ଦେଖାଏ ନା ଦେଖାଇବା ଉଚିତ୍ ?

କୋଟି କୋଟି ମଣିଷର କାନ୍ଧକୁ ସିଡ଼ି ରୂପେ ବ୍ୟବହାର ନ କଲେ କେବେ କେଉଁଠି ଗୋଟିଏ ସଫଳ ମଣିଷ ତିଆରି ହୋଇଛି ? ଯା' ବୋଲି କ'ଣ ଜୀବନର ହିସାବ ନିକାଶ କଲାବେଳେ, ଫୁଲମାଳ ଧରି ସେଇ ସବୁ ମଣିଷଙ୍କୁ ସମ୍ବର୍ଦ୍ଧନା ଜଣାଇବାକୁ ହେବ ? ସେମାନଙ୍କ ଜନ୍ମ ତ କେବଳ ସିଡ଼ି ରୂପେ ବ୍ୟବହୃତ ହେବା ପାଇଁ ।

ଲଲାଟେନ୍ଦୁ ନ ଥିବା ଅବସ୍ଥାରେ କୋଡ଼ିଏଟି ଘଣ୍ଟା ଅତିବାହିତ ହୋଇଗଲା । ବିଳମ୍ବିତ ରାତ୍ରିରେ ମେଘମାଳା ସାମାନ୍ୟ ବିଶ୍ରାମ ନେବାର ଅବସର ପାଇଥିଲେ । ଏତେବଡ଼ ପ୍ରତିଷ୍ଠିତ ଅଫିସରଙ୍କର ଗୃହିଣୀ ହୋଇଥିବାରୁ ସେ ସାଧାରଣ ଭାବରେ ଶୋକ ପ୍ରକାଶ କରିପାରିବେ ନାହିଁ । ହୃଦୟର ଉତ୍ତରଳ ଆବେଗକୁ ତାଙ୍କୁ ଧୈର୍ଯ୍ୟର ରଜ୍ଜୁରେ ବାନ୍ଧି ରଖି ଏଇ ବିରାଟ କର୍ମଯଜ୍ଞକୁ ପରିଚାଳନା କରିବାକୁ ପଡ଼ିବ । ସେ କେବଳ ଅପେକ୍ଷା କରି ରହିଛନ୍ତି ନିଜର ପୁତ୍ର କନ୍ୟାମାନଙ୍କୁ । ସେମାନେ କେହି ପହଞ୍ଚିଗଲେ, ସେ ଅନ୍ତତଃ ନିର୍ଜନରେ ଟିକିଏ କାନ୍ଦିବାକୁ ସମୟ ପାଇବେ ।

ଶେଷ ରାତି ବେଳକୁ ଟରୋଣ୍ଟୋରୁ ଖବର ଆସିଥିଲା । ଖବର ଦେଉଥିଲେ ଅତନୁର ବ୍ୟକ୍ତିଗତ ସହାୟକ । ମିଃ ମହାନ୍ତି ସପରିବାର ଭାରତ ରମାନା ହୋଇଯାଇଛନ୍ତି । ଦିଲ୍ଲୀରେ ପହଞ୍ଚି ସେ ସିଧା ଫ୍ଲାଇଟ୍ ଧରିବେ ଭୁବନେଶ୍ୱରକୁ । ସାନପୁଅ ତରୁଣ ତନୁ ହେଡ୍‌କ୍ୱାର୍ଟରରେ ନ ଥିଲା । ଫ୍ରାଙ୍କଫର୍ଟରେ କ'ଣ ଗୋଟାଏ ସେମିନାର କରୁଥିଲା । ସେଇଠି ତାକୁ ଖବର ଦିଆଯାଇଛି । ପ୍ରୋଗ୍ରାମ୍ କ୍ୟାନ୍‌ସେଲ୍ କରି ସେ ମଧ୍ୟ ଫେରିଆସୁଛି ।

ସଦା ବ୍ୟସ୍ତ ସର୍ବଦମନ ମହାନ୍ତି ଆସି ଶୋକାକୁଳା ଭ୍ରାତୃଜାୟାଙ୍କ ନିକଟରେ ଠିଆ ହେଲେ । କହିଲେ – ଏସ୍.ପି.ଙ୍କ ସାଙ୍ଗରେ ମୋର କଥାବାର୍ତ୍ତା ହୋଇଗଲା ନୂଆ ବୋଉ । ଶୀଘ୍ର ସେ ଶହେଜଣ କନ୍‌ଷ୍ଟେବଲ ଏଠାକୁ ପଠାଇଦେବାକୁ ରାଜି ହୋଇଛନ୍ତି । ସମୟ ଯେତିକି ଆଗେଇବ ଲୋକେ ସେତେ ଆସିବେ । Law & order Problem ହେବାକୁ କେତେବେଳେ ? ଆମେ ବରଂ ପ୍ରସ୍ତୁତ ଥିବା ଭଲ ।

ମେଘମାଳା କହିଲେ – ଯାହା ଠିକ୍ ଭାବୁଛ କର । ଅତନୁଟା ଯେ କାହିଁକି ଏତେବେଳ ଯାଏ ପହଞ୍ଚିଲା ନାହିଁ ।

ସର୍ବଦମନ କହିଲେ, ଓ ତମେ ଜାଣିନା ପରା । ଅତନୁ ପ୍ରାଇମ୍ ମିନିଷ୍ଟରଙ୍କ ସାଙ୍ଗରେ ଜରୁରୀ ଆଲୋଚନା ସାରି ଏଠି ବିଳମ୍ବରେ ପହଞ୍ଚିବ । ଦକ୍ଷିଣର କୋଉ ଗୋଟାଏ ଜାଗାରେ ଶେଖରନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ନ୍ୟୁକ୍ଲିଅର ଫିଜିକ୍ସ ନାମରେ ଯେଉଁ ଆଡ୍‌ଭାନ୍‌ସ ଷ୍ଟଡ଼ି ସେଣ୍ଟର ଖୋଲିବ, ପି. ଏମ୍.ଙ୍କର ଇଚ୍ଛା ଅତନୁ ତା'ର ଦାୟିତ୍ୱ ନେଉ ।

ମେଘମାଳା ଅସନ୍ତୁଷ୍ଟ ହେଲେ । କହିଲେ – ଏମାନେ ମଣିଷକୁ ଟିକିଏ ଶୋକ କରିବାକୁ ସୁଦ୍ଧା ଦେବେ ନାହିଁ ।

ସର୍ବଦମନ ଗର୍ବିତ ସ୍ୱରରେ କହିଲେ – ଏସବୁ ପର୍ସନାଲ ସେଣ୍ଟିମେଣ୍ଟ ଭୁଲିଯାଅ ନୂଆବୋଉ । ତମେ କେଡ଼େ ବଡ଼ କୃତୀ ସନ୍ତାନର ଜନନୀ । ଗଭର୍ଣ୍ଣର ନିଜେ ମୋତେ କହିଲେ – ପି. ଏମ. ତାଙ୍କୁ କହିଛନ୍ତି, We are proud of Mr. Mohanty. India needs him, ତମକୁ କହି ନ ଥିଲି । ତମେ ବାଥ୍‌ରୁମ୍‌ରେ ଥିଲ ।

ସଫଳତାର ଏଇ ହେଉଛି ଏକମାତ୍ର ରୂପ । ମେଘମାଳାଙ୍କର ମନେପଡୁଥିଲା ଫିଜିକ୍ସରେ ୟୁନିଭର୍ସିଟିର ରେକର୍ଡ଼ କରିଥିବା ତାଙ୍କର ଏଇ ପୁଅକୁ ଭାରତବର୍ଷରେ କୌଣସି ବିଶ୍ୱବିଦ୍ୟାଳୟରେ ସାମାନ୍ୟ ଚାରିଶହ ଟଙ୍କାର ମାଷ୍ଟରୀଟାଏ ବି ମିଳି ନଥିଲା ।

ଲଲାଟେନ୍ଦୁ କିନ୍ତୁ ଜାଣିଥିଲେ । ସେଦିନ ଆମେରିକାଗାମୀ ବିମାନରେ ଅତନୁକୁ ଉଠାଇଦେଇ ଫେରିଆସୁଥିବା ସମୟରେ ମେଘମାଳାଙ୍କୁ ସାନ୍ତ୍ୱନା ଦେଇ ସେ କହିଥିଲେ, ତମେ ମନ କଷ୍ଟ କରନା ମାଳା । ତମେ ଦେଖିବ, ଦିନେ ତମର ଏଇ ପୁଅ ପାଇଁ ଦେଶ ଗର୍ବ ଅନୁଭବ କରିବ ।

ତା' ପରେ ତ କେତେଦିନ ବିତିଗଲା । ଅତନୁ ସେଇଆଡ଼େ ବାହା ହୋଇଗଲା ତା'ର କୋଉ ପ୍ରଫେସରର ଝିଅକୁ । ଲଲାଟେନ୍ଦୁ ଖବରଟା ମାତ୍ର ମେଘମାଳାଙ୍କୁ ଦେଇଥିଲେ । କିଛି କହି ନ ଥିଲେ ।

ସେଦିନ କିନ୍ତୁ ମେଘମାଳାଙ୍କର ସମସ୍ତ ଧୈର୍ଯ୍ୟ ବୈଶାଖୀ ଝଡ଼ରେ କୁଟା ଖଣ୍ଡେ ଭଳି କାହିଁ କୁଆଡ଼େ ଭାସିଯାଇଥିଲା । ଏଡ଼େ ବଡ଼ କୃତୀ ସନ୍ତାନକୁ ଜନ୍ମ ଦେଇଥିବାରୁ ନିଜ ଗର୍ଭକୁ ସେ ଦୋଷ ଦେଇଥିଲେ ।

ଅନେକ ରାତିରେ ତାଙ୍କର ନିଦ ଭାଙ୍ଗିଯିବାରୁ ସେ ଉଠି ଲଲାଟେନ୍ଦୁଙ୍କୁ ଖୋଜିଥିଲେ । ବାଲ୍‌କୋନିର ଡେକ୍‌ଚେୟାର ଉପରେ ତାଙ୍କୁ ଚୁପ୍‌ଚାପ୍ ବସିଥିବାର ଦେଖି ତାଙ୍କର ଛାତି ଭିତରଟା କ'ଣ ହୋଇଯାଇଥିଲା ।

ସେ ଚୁପ୍‌ଚାପ୍ ଆସି ଲଲାଟେନ୍ଦୁଙ୍କ କାନ୍ଧରେ ହାତରଖି ଠିଆ ହୋଇଥିଲେ । ଗୋଟାଏ ଲମ୍ବା ଦୀର୍ଘଶ୍ୱାସ ପକାଇ ଲଲାଟେନ୍ଦୁ କହିଥିଲେ – ଅତନୁ କାହିଁକି ଧରିନେଲା ଯେ, ତା'ର ଏ ବିବାହରେ ମୁଁ ଆପତ୍ତି କରିବି ବୋଲି ? ଥରେ ଯଦି ସେ ମୋ ଆଗରେ ଠିଆ ହୋଇଥାଆନ୍ତା, ଆଉ କହିଥାଆନ୍ତା, ବାପା, ଇଏ ତମର ବୋହୂ, ମୁଁ କ'ଣ ତାକୁ ଫେରାଇ ଦେଇଥାଆନ୍ତି ?

ମେଘମାଳାଙ୍କର କିଛି କହିବାର ନ ଥିଲା । ପରିବାର ଭିତରେ ଗୋଟିଏ ଜିନିଷକୁ ସେ ସବୁଠୁ ବେଶୀ ଘୃଣା କରୁଥିଲେ । ତା' ହେଉଛି ଗୋପନୀୟତା । ଅତନୁ ସବୁ ଜାଣି ସୁଦ୍ଧା କାହିଁକି ଯେ ଏମିତି କଲା, କିଏ ଜାଣେ ?

ତା' ପରେ ଲଲାଟେନ୍ଦୁ ପୁଣି ସ୍ୱାଭାବିକ ହୋଇଗଲେ । ତାଙ୍କର ଦିନଚର୍ଯ୍ୟାରେ ଟିକିଏ ବି ପରିବର୍ତ୍ତନ ହେଲା ନାହିଁ ।

ଗେଟ୍ ପାଖରେ ଗୋଟିଏ ଟ୍ୟାକ୍ସି ରହିବାର ଶବ୍ଦ ହେଲା । ମେଘମାଳା ଉପରୁ ଅନାଇ ଦେଖିଲେ । ଗାଡ଼ିରୁ ଓହ୍ଲାଉଛନ୍ତି ତାଙ୍କର ଏକମାତ୍ର ଭାଇ ଶୁଭେନ୍ଦୁ । ସାଙ୍ଗରେ ତାଙ୍କର ପରିବାର । ପାରିସ୍‌ର କୋଉ ଗୋଟାଏ ନ୍ୟୁରୋସାଇକଲଜି ବିଭାଗରେ ସାଇକିଆଟ୍ରିଷ୍ଟ । ଭିଣୋଇଙ୍କର ସମ୍ବାଦ ପାଇବାମାତ୍ରେ ଭାରତ ଉଡ଼ି ଆସିଛନ୍ତି ।

ମେଘମାଳା ତଳକୁ ଓହ୍ଲାଇଗଲେ । ସର୍ବଦମନଙ୍କ ସହିତ ତାଙ୍କର କରିଡ଼ରରେ ଦେଖା ହେଲା । ସେ କହିଲେ – ତମେ ଶୁଣିଛ ନୂଆବୋଉ ! ଷ୍ଟେଟ୍ ମୋର୍ଣ୍ଣିଂ ଆଉ ଷ୍ଟେଟ ଫ୍ୟୁନରାଲ ହେବ ବୋଲି କାବିନେଟ୍‌ରେ ସ୍ଥିର ହୋଇଯାଇଛି । ଏ ଭିତରେ ଦେଶର ବିଭିନ୍ନ ଆଡୁ ସାତଶହ ପଞ୍ଚତ୍ରିଶଟା ଟେଲିଗ୍ରାମ ଆସି ପହଞ୍ଚିଲାଣି । ଆହୁରି ବି ଆସୁଛି । ଗେଟ୍ ପାଖରେ ମୁଁ ଗୋଟାଏ ଲୋକ ରଖି ଦେଇଛି । ସେ ଖାଲି ଟେଲିଗ୍ରାମ୍ ରିସିଭ୍ କରିବ ଆଉ ରେକର୍ଡ଼ ରଖିବ । ଖବର ଆସିଛି ସି. ଏମ୍. ଶେଷ ଦର୍ଶନ ପାଇଁ ଆସୁଛନ୍ତି । ବାହାରି ପଡ଼ିଲେଣି । ଯେକୌଣସି ମୁହୂର୍ତ୍ତରେ ପହଞ୍ଚିଯିବେ । 'ବଡ଼ି' ଉପରେ ଷ୍ଟେଟ୍ ତରଫରୁ ସେ ମାଲ୍ୟାର୍ପଣ କରିବେ ।

ମେଘମାଳା କହିଲେ – ଶୁଭେନ୍ଦୁ ଆସିଲା । ତାକୁ ରିସିଭ୍ କରି ଆଣିବା ଦରକାର ।

ସର୍ବଦମନ କହିଲେ – ତମେ ବ୍ୟସ୍ତ ହୁଅ ନାହିଁ । ସେଥିପାଇଁ ଲୋକ ଅଛନ୍ତି । ସେମାନେ ତାକୁ ରୁମ୍ ଦେଖାଇ ଦେବେ । ସେ ପ୍ରଥମେ ଟିକିଏ ଫ୍ରେସ୍ ହୋଇଯାଉ । ତା' ପରେ ତମେ ଦେଖା କରିବ ।

ମେଘମାଳା ଫେରିଗଲେ । ଶୁଭେନ୍ଦୁ ଘର ଭିତରେ ପାଦଥୋଇ କହିଲେ – ସବୁ ଭାଇ, ଗୋଟାଏ ଡିପାର୍ଟମେଣ୍ଟାଲ୍ ଷ୍ଟୋରରେ ଗ୍ରାଣ୍ଡ ରିଡ଼କସନ୍ ସେଲ୍ ହେଉଥିଲା । ଏତେଦିନ ପରେ ଭାରତ ଆସୁଛି । ସମସ୍ତଙ୍କ ପାଇଁ କିଛି କିଛି ଜିନିଷ ଆଣିବାକୁ ପଡ଼ିବ ତ ! ଭଣଜା – ବୋହୂମାନଙ୍କୁ ମୁଁ ପ୍ରଥମଥର ପାଇଁ ଦେଖିବି । ସେଇଥିପାଇଁ ଟିକିଏ ଡେରି ହୋଇଗଲା । ନ ହେଲେ ମୋର କାଲି ରାତିରେ ପହଞ୍ଚିଯିବା କଥା ।

ସର୍ବଦମନ କହିଲେ – ଠିକ୍ ଅଛି । ତୁ ଉପରକୁ ଯା । ସେଇଠି ତମମାନଙ୍କର ରହିବାର ବନ୍ଦୋବସ୍ତ ହୋଇଛି । ଟିକିଏ ଫ୍ରେସ ହେବା ପରେ ନୂଆବୋଉଙ୍କ ସାଙ୍ଗରେ ଦେଖା କରିବୁ । ମୁଁ କିଚିନ୍‌କୁ ଖବର ପଠାଇ ଦେଉଛି । ତମମାନଙ୍କ କଫି ପଠାଇଦେବେ ।

ସର୍ବଦମନ ପାଖଦେଇ ଚାଲିଯାଉଥିବା ଜଣେ ମଧ୍ୟବୟସ୍କ ଭଦ୍ରଲୋକଙ୍କୁ ଧରି କହିଲେ – ଅଘୋର ବାବୁ, ଟ୍ରାନସ୍‌ପୋର୍ଟ ବ୍ୟବସ୍ଥା ଠିକ୍ ଅଛି ତ ? ଏୟାର୍‌ପୋର୍ଟକୁ ଦି'ଟା ଗାଡ଼ି ଆଉ ଷ୍ଟେସନ୍‌କୁ ଦି'ଟା ଗାଡ଼ି ପଠାଇ ଦିଅନ୍ତୁ । ରିଲେଟିଭମାନେ ସବୁ ଆସିବାକୁ ଆରମ୍ଭ କଲେଣି । ମୁଁ କର୍ପୋରେସନ୍‌ର ଟ୍ରାନ୍‌ସପୋର୍ଟ ଇନ୍‌ଚାର୍ଜଙ୍କୁ କହି ଦେଇଛି । ସେ ପାଞ୍ଚଟା ଗାଡ଼ି ପଠାଇ ଦେଉଛନ୍ତି । ଦରକାର ହେଲେ ଆହୁରି ଆରେଞ୍ଜ କରିଦେଇ ପାରିବେ । ଆପଣ ଖାଲି ବ୍ୟବସ୍ଥାଟା ଦେଖନ୍ତୁ ।

ଅଘୋରବାବୁ ଚୁପ୍‌ଚାପ୍ ବାହାର ଆଡ଼େ ଚାଲିଗଲେ । ଶାକ୍ୟନଗରର କୁରଙ୍ଗ ପାର୍କ ଏରିଆ ଲୋକାରଣ୍ୟ ହେବାକୁ ଆରମ୍ଭ କରିଥିଲା । ଭି.ଆଇ.ପି. ମାର୍ଗ ଛକଠାରୁ ଯାନବାହନର ଗତିକୁ ଏକମୁଖୀ କରିବା ପାଇଁ ଚାରିଜଣ ଟ୍ରାଫିକ୍ ପୋଲିସ୍ ଗଳଦ୍‌ଘର୍ମ ହୋଇଯାଉଥିଲେ ।

ଇତିମଧ୍ୟରେ ଦ୍ୱିତୀୟ ପୁତ୍ର ସୁତନୁ ସୁଦୂର ବର୍ଲିନ୍ ସହରଠାରୁ ଆସି ରାଜଧାନୀରେ ପହଞ୍ଚି ଯାଇଥିଲା । ତୃତୀୟ ମହଲାରେ ଗୋଟିଏ ନିର୍ଜନ ଘରେ ଲଲାଟେନ୍ଦୁଙ୍କର ବିରାଟ ପୂର୍ଣ୍ଣାବୟବ ତୈଳଚିତ୍ରର ପାଦ ମୂଳରେ ଦୀପଟିଏ ଜଳାଇଦେଇ ମେଘମାଳା ଚୁପ୍‌ଚାପ୍ ବସି ରହିଥିଲେ । ସେ ଗୋଟିଏ ହାତରେ ନିଜର ଏଇ କୃତୀ ପୁତ୍ରର ମୁଣ୍ଡ ଆଉଁସି ଦେଉଥିଲେ ଆଉ ଆର ହାତରେ ତା'ର ଆଖିରୁ ବହିଯାଉଥିବା ଧାର ଧାର ଲୁହ ପୋଛି ଦେଉଥିଲେ । ତାଙ୍କର ଆଖି ବି ଶୁଷ୍କ ନ ଥିଲା ।

ତାଙ୍କର ମନେପଡ଼ିଲା ଯେଉଁଦିନ ସୁତନୁ ଜର୍ମାନ୍ ଯିବା ପୂର୍ବରୁ ପିତାମାତାଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ ହଠାତ୍ ଆସି ଘରେ ପହଞ୍ଚି ଯାଇଥିଲା! ସେଇଦିନର କଥା ।

ପ୍ରଣତ ପୁତ୍ରକୁ ପାଦ ତଳୁ ଉଠାଇ ତା' ଆଡ଼କୁ ଅନାଇ ଲଲାଟେନ୍ଦୁ କହିଥିଲେ – ତା' ହେଲେ ତୁ ବି ଚାଲିଲୁ ।

ସୁତନୁ କହିଥିଲା – ମାତ୍ର ଦୁଇଟା ବର୍ଷର କଥା ତ, କେତେ ବା ସମୟ ?

ଲଲାଟେନ୍ଦୁ ମେଘମାଳାଙ୍କ ଆଡ଼କୁ ଅନାଇ କହିଥିଲେ– ତମ ପାଇଁ ସିନା ଦୁଇଟା ବର୍ଷ । ହେଲେ ଆମ ପାଖରେ ଏତେ ସମୟ କାହିଁ ?

ପିତା ପୁତ୍ରଙ୍କର ସେଇ ଥିଲା ଶେଷ ସାକ୍ଷାତ୍ । ଝଡ଼ବେଗରେ ହଠାତ୍ ରୁମ୍‌କୁ ପଶି ଆସିଲେ ସର୍ବଦମନ । ମାତା ପୁତ୍ରଙ୍କୁ ଏଭଳି ଅବସ୍ଥାରେ ଦେଖି ବୋଧହୁଏ – ଟିକିଏ ଚହଲିଗଲେ । କହିଲେ – ଆରେ, ତମେମାନେ ଏଠି ବସିଚ । ଆଉ ସୁତନୁ, ବାଟରେ କିଛି ଅସୁବିଧା ହୋଇ ନାହିଁ ତ ? ନୂଆବୋଉ, ତମେ ଶୁଣିଚ ? ପିଏମ୍‌ଙ୍କର କଣ୍ଡୋଲେନ୍‌ସ ମାସେଜ୍ ଟାଇପ୍ ହୋଇ ତାଙ୍କ ଟେବୁଲକୁ ଚାଲିଗଲାଣି । ପିଏମ୍ ଗୁଜୁରାଟ୍ ଗସ୍ତରୁ ଯେକୌଣସି ମୁହୂର୍ତ୍ତରେ ଫେରି ଆସିବାର ଆଶା କରାଯାଉଛି । ଦସ୍ତଖତ ହୋଇଗଲେ, ତାହା ପଠାଇ ଦିଆଯିବ । ପିଏମଙ୍କ ସେକ୍ରେଟେରିଏଟ୍‌ର ଲିଆସନ୍ ଅଫିସର୍ ପତି କିଛି ସମୟ ଆଗରୁ ମୋତେ ଫୋନ୍ କରି କହିଲା । ପତିକୁ ତମର ମନେ ଅଛିଟି ? ସେଇମ, ଭାଇ ବଲାଙ୍ଗୀରର କଲେକ୍ଟର ଥିଲାବେଳେ ନୂଆ ହୋଇ ସେଠି ଯୋଗ ଦେଇଥିଲା । କ'ଣ ଗୋଟାଏ ଦୋନମ୍ବରୀ ମାମ୍‌ଲାରୁ ଭାଇ ତାକୁ Save କରିଥିଲେ ।

ମେଘମାଳା ଆଉ ସୁତନୁ ଚୁପ୍ ଚାପ୍ ସବୁ ଶୁଣି ଯାଉଥିଲେ । ତଳଆଡୁ କ'ଣ ଗୋଟାଏ କୋଳାହଳ ଶବ୍ଦ ଆସୁଛି । ସର୍ବଦମନ ସେଇଆଡ଼େ କାନଡ଼େରି କ'ଣ ଶୁଣିଲେ । ତା' ପରେ – ଅତନୁ ବୋଧହୁଏ ଆସିଗଲା । ମୁଁ ଯାଏଁ ।

ଏକା ଅତନୁ ନୁହେଁ । ତା' ସାଙ୍ଗରେ ପରିବାର ସହ ଜ୍ୟେଷ୍ଠାକନ୍ୟା ତନିମା ବି ଆସିଚି । ଏୟାର୍‌ପୋର୍ଟରେ ଦୁଇ ପରିବାରର ସାକ୍ଷାତ୍ ହେଲା । ତା' ପରେ ଏକା ସାଙ୍ଗରେ ଘରକୁ ଫେରୁଛନ୍ତି ।

ଅତନୁ ଆସିବାମାତ୍ରେ ଖୋଜିଲା – ବୋଉ କାଇଁ ? ତା'ର ଆମେରିକାନ୍ ସ୍ତ୍ରୀ ଷ୍ଟେଲା ଆଉ ଲହୁଣୀ ପିତୁଳା ଭଳି ଦୁଇଟି ପିଲା କୁନାଲ ଆଉ ବାସବଦତ୍ତା – ସେମାନେ ଏତେ ଲୋକବାକ ଆଉ ଆଡ଼ମ୍ବର ଦେଖି ଆଶ୍ଚର୍ଯ୍ୟ । ଷ୍ଟେଲା କହିଲା – My dear, I want to see your father first କୁନାଲ ଆଉ ବାସବଦତ୍ତା ଏକା ସାଙ୍ଗରେ କହିଲେ – So do we

ଅତନୁ ସେମାନଙ୍କୁ ଲଲାଟେନ୍ଦୁଙ୍କ ପାଖକୁ ନେଇଗଲା । ମହାଯାତ୍ରାର ଆୟୋଜନ ଚାଲିଚି । ଗୋଟିଏ ଖୋଲା ପୋଲିସ୍ ଗାଡ଼ିରେ ଲଲାଟେନ୍ଦୁଙ୍କ ମର ଶରୀରକୁ ଶ୍ମଶାନ

ପର୍ଯ୍ୟନ୍ତ ନିଆଯିବ । ତା' ପରେ ସେଇଠି ତାଙ୍କୁ ପୋଲିସ୍ ବାହିନୀ ପକ୍ଷରୁ ଗାର୍ଡ୍ ଅଫ୍ ଅନର ଦିଆଯିବା ପରେ ଦାହ କରିଦିଆଯିବ । ଶବଯାତ୍ରା କେଉଁ ରୁଟ୍‌ରେ ଯିବ, ସେ ବିଷୟରେ ସର୍ବଦମନ ଏସ୍.ପି.ଙ୍କ ସହିତ ଆଲୋଚନା କରୁଛନ୍ତି । ସର୍ବଦମନ କହିଲେ – Do you know Mr. Das. ଅତନୁକୁ ନିଜେ ପି.ଏମ୍. ତାଙ୍କ ସାଙ୍ଗରେ ଗୁଜରାଟ ଗସ୍ତରେ ନେଇ ଯାଇଥିଲେ । ସେଇଠି ସେ ତାକୁ ସ୍ପଷ୍ଟ କହିଦେଲେ, India expects much from you. Return to your Country. ମୁଁ ଯେ ଆପ୍‌ସେ ବହୁତ ଉମ୍ମିଦ୍ ହୈ – "ବୁଝନ୍ତୁ କଥାଟା – ଖୋଦ୍ ପି. ଏମ୍. କହୁଛନ୍ତି, ମୋର ଆପଣଙ୍କ ଉପରେ ବହୁତ ଭରସା ! ଅତନୁ ନିଜେ ମୋତେ ଏ କଥା କହିଛି । Just a minute- Darling, please put off your shoes. And you kiddies too. ତରୁଣ ତନୁ ବୋଧହୁଏ ଆସିଗଲା – ସର୍ବଦମନ ଊର୍ଦ୍ଧ୍ୱଶ୍ୱାସରେ ଗେଟ୍ ଆଡ଼େ ଛୁଟିଗଲେ । ଅତନୁ ଷ୍ଟେଲାକୁ ବୁଝାଉଥିଲା ।

ସେମାନେ ଆଶ୍ଚର୍ଯ୍ୟରେ ପ୍ରଶ୍ନ କରୁଥିଲେ – But why ?

ଅପ୍ରସ୍ତୁତ ଅତନୁ ଉତ୍ତର ଦେଉଥିଲା – That is the custom

ଗମ୍ଭୀର ଷ୍ଟେଲା ଅପ୍ରସନ୍ନ ମୁଖରେ କହୁଥିଲା –A very bad custom.

ଇତି ମଧ୍ୟରେ ଦ୍ୱିତୀୟା କନ୍ୟା ପୂର୍ଣ୍ଣିମା ତା'ର ପିଲାଛୁଆଙ୍କୁ ନେଇ ପହଞ୍ଚିବା ଫଳରେ ଲଲାଟେନ୍ଦୁଙ୍କ ପରିବାରର ସମସ୍ତ ସଦସ୍ୟ ପ୍ରାୟ ଆସିଗଲେ । ଚିଫ୍ ମିନିଷ୍ଟର, ଗଭର୍ଣ୍ଣର ଏମାନେ ସବୁ ଆସି ଶେଷ ଦର୍ଶନ କରି ଫେରିଗଲେଣି । ପୋଲିସ୍ ଗାଡ଼ି ପ୍ରସ୍ତୁତ ହୋଇ ଥୁଆ ହୋଇଛି । ପୁରୋହିତଙ୍କଠୁଁ ଆରମ୍ଭ କରି ଶ୍ମଶାନରେ ପ୍ରୟୋଜନ ହେଉଥିବା ସମସ୍ତ ଦ୍ରବ୍ୟ ଗାଡ଼ିରେ ଲଦା ସରିଲାଣି ।

ସର୍ବଦମନ a last minute check up ବୋଲି କହି, ସବୁ ଜିନିଷ ଥରେ ଥରେ ଦେଖି ଯାଉଛନ୍ତି । ଏଣେ ପାଖରେ ଠିଆ ହୋଇଥିବା ଚିଫ୍ ସେକ୍ରେଟାରୀଙ୍କୁ ବୁଝାଉଛନ୍ତି – Do you know Mr. Sen 'Three Thousand telegrams till now, still pouring like rains.

ମିଷ୍ଟର ସେନ୍ ଗମ୍ଭୀର ଭାବରେ ମୁଣ୍ଡ ହଲାଉଛନ୍ତି ।

ମେଘମାଳାଙ୍କର ମନେ ପଡ଼ିଗଲା ସମୟ ପାଖେଇ ଆସୁଛି । ଚବିଶ ଘଣ୍ଟାରୁ ଉର୍ଦ୍ଧ୍ୱ ହୋଇଗଲା – ଲଲାଟେନ୍ଦୁ ଆଉ ଲଲାଟେନ୍ଦୁ ନାହାନ୍ତି । ତାଙ୍କର ପରିଚୟ ଲୋକମୁଖରେ

'ବଡ଼ି' । ସେଇ ବଡ଼ିକୁ ଏବେ ନେଇଯିବେ ।

ମେଘମାଳା କାନ୍ଦି ବି ତ ପାରିବେ ନାହିଁ । ଗୋଟାଏ ସିନ୍ କ୍ରିଏଟ୍ କରିବା କଥା ସେ ସ୍ୱପ୍ନରେ ବି ଭାବିପାରିବେ ନାହିଁ । ଅଥଚ ଏଇତ ସେଦିନ ମିଷ୍ଟର ଆଚାର୍ଯ୍ୟ ଯେଉଁଦିନ ମୃତ୍ୟୁବରଣ କଲେ, ମିସେସ୍ ଆଚାର୍ଯ୍ୟଙ୍କର କି ଡାଇଲଗ୍ ! ଆରେ ତମେ ତାଙ୍କୁ କୁଆଡ଼େ ନେଇଯାଉଛରେ, ମୋତେ ବି ତାଙ୍କ ସାଙ୍ଗରେ ସତୀ କରିଦିଅରେ - '' ଛଅଟା ମାସ ତ ହେବ ନାହିଁ । ଡାହାଣ ହାତରେ ଦାମିକା ଘଣ୍ଟା ବାନ୍ଧି ଆଖିରେ ସନ୍ ଗ୍ଲାସ ଚଢ଼ାଇ ମିସେସ୍ ଆଚାର୍ଯ୍ୟ ସମାଜ ସେବା କରି ବୁଲୁଛନ୍ତି !

ମେଘମାଳା ସେସବୁ କିଛି କରିପାରିବେ ନାହିଁ । ପଇଁଚାଳିଶ ବର୍ଷ ପୂର୍ବେ, ସେ ଦିନେ ଲଲାଟେନ୍ଦୁଙ୍କ ହାତ ଧରି ଏଇ ପରିବାରର ଏରୁଣ୍ଡି ବନ୍ଧ ଡେଇଁଥିଲେ । ସେତେବେଳେ ଲଲାଟେନ୍ଦୁଙ୍କୁ ଚିହ୍ନିଥିଲା କିଏ ? କ'ଣ ଥିଲା ତାଙ୍କର ? ତଥାପି ମାଟିର ସେଇ ଅନ୍ଧାରୁଆ ଘରେ ଶାଶୁ ଶଶୁରଙ୍କର ସେବା କରି ଲଲାଟେନ୍ଦୁଙ୍କର ପିଲାକିଆ ଦାବୀ ମେଣ୍ଟାଉ ମେଣ୍ଟାଉ ମେଘମାଳାଙ୍କର ସମୟ ପାଣିପରି ବହି ଯାଇଥିଲା ।

ସର୍ବଦମନ ଅତନୁଙ୍କୁ ବୁଝାଉଥିଲେ - You see ଆମେ ସମସ୍ତେ ତ ଶ୍ମଶାନକୁ ବାହାରିଯିବା । ଘରେ ଏତେଗୁଡ଼ାଏ ପିଲା। ସେମାନେ ସବୁ ପୁଣି not acquainted with our situation. କିଏ ପୁଣି ସେମାନଙ୍କୁ ଏଠି ଦେଖାଶୁଣା କରିବ ?

ଅତନୁ କିଛି କହିପାରୁ ନ ଥିଲା । ସର୍ବଦମନ କହି ଚାଲିଲେ - କିଛିକ୍ଷଣ ପୂର୍ବରୁ ଶୁଣିଲି ସ୍ମୃତନୁର ପୁଅଟା ଭାଇଙ୍କୁ ଦେଖାଇ ପଚାରୁଚି - Dad, who is he ? କେମିତି ଚିହ୍ନିବେ ସେମାନେ ? କେବେ ଦେଖି ନାହାନ୍ତି ତ ।

ଅତନୁ ନିଜେ ମଧ୍ୟ ଏଇଭଳି ଅସ୍ୱସ୍ତିକର ପ୍ରଶ୍ନର ସମ୍ମୁଖୀନ ହୋଇଛି । ତା' ପୁଅ ତାକୁ ପଚାରୁଥିଲା - Dad, is any team returning to the town ? ପ୍ରଥମେ ଅତନୁ କିଛି ବୁଝିପାରି ନ ଥିଲା - ତେବେ ତା'ର ସବୁକଥା ମନେପଡ଼ିଯାଇଥିଲା । ସେ ଦେଶରେ କୌଣସି ବିଜୟୀ କ୍ରୀଡ଼ା ଦଳ ବାହାରୁ ଫେରିଲେ ସେମାନଙ୍କୁ ସ୍ୱାଗତ ଜଣାଇବାକୁ ସାରା ସହର ରାସ୍ତାକୁ ବାହାରି ଆସେ । ଏଠାରେ ଏତେ ଭିଡ଼ ଦେଖି ପିଲାଟା ଧରି ନେଇଛି, ସେମିତି କୋଉ ଖେଳାଳୀମାନେ ଆଜି ସହରକୁ ଫେରୁଛନ୍ତି ! ହାୟରେ କପାଳ !

ଦାଦାଙ୍କ କଥାରେ ଅତନୁ ଯଥେଷ୍ଟ ଯୌକ୍ତିକତା ପାଇଲା । ସତକଥା ତ । ଯାହାକୁ ସେମାନେ କେବେ ଦେଖି ନାହାନ୍ତି, ଯାହାଙ୍କ ସହିତ ସେମାନଙ୍କର କୌଣସି ଯୋଗାଯୋଗ କେବେ ହୋଇନାହିଁ, ସେମାନେ କାହିଁକି ବାଧ୍ୟବାଧକତାରେ ଶୋକାଭିଭୂତ ହେବେ ? ପିଲାମାନେ after all ପିଲା - ସେମାନଙ୍କର ଏଇଟା ହସିବା ଖେଳିବା ବୟସ ।

ସର୍ବଦମନ କହିଲେ – ମୁଁ ସେମାନଙ୍କୁ ନରିଆ ସାଙ୍ଗରେ ପାର୍କକୁ ପଠାଇ ଦେଉଛି । ଲୋକଟା ବିଶ୍ୱାସୀ । ସେ ସାଙ୍ଗରେ ଥିଲେ ପିଲାମାନଙ୍କ ପାଇଁ ଆମେ ନିଶ୍ଚିନ୍ତ । ତା' ପରେ ସେମାନେ ସେଠି ବେଲୁନ୍ ଫେଲୁନ୍ କିଣନ୍ତୁ । ଫୁଚୁକା ଖାଆନ୍ତୁ । ଚକ୍ରୀରେ ଘୂରନ୍ତୁ । ସନ୍ଧ୍ୟା ଆଗରୁ ଘରକୁ ଫେରି ଆସିଲେ ହେଲା – ସେତେବେଳକୁ ଆମେ ସବୁ ବି ଫେରି ଆସିଥିବା ।

ସର୍ବଦମନ ବଡ଼ ବ୍ୟସ୍ତ ହୋଇ ନରହରି ଡ୍ରାଇଭର୍‌ର ସନ୍ଧାନରେ ବାହାରିଗଲେ ।

ଉପରେ ମେଘମାଳାଙ୍କ ରୁମ୍‌ରେ ସେମିତି ନୀରବତା । ପିଲାମାନେ ଚୁପ୍‌ଚାପ୍ ରୁମ୍ ବାହାରେ କିଛିକ୍ଷଣ ପାଇଁ ଠିଆ ହେଲେ । ଅତନୁର ମନେ ପଡ଼ିଗଲା, ବାପା ତାଙ୍କ ରୁମ୍‌ରେ କିଛି କାମ କରୁଥିଲାବେଳେ ବୋଉ ସେମାନଙ୍କୁ ସତର୍କ କରାଇ ଦିଏ – ପାଟି କରନା । ବାପା କାମ କରୁଛନ୍ତି । ଆଜି ବାପା ନାହାନ୍ତି । ବୋଉ ବାପାଙ୍କ ତୈଳଚିତ୍ର ପାଖରେ ବସି ସତେ ଯେମିତି ଧ୍ୟାନମଗ୍ନ ହୋଇପଡ଼ିଚି । କିଏ ତା'ର ଏଇ ତପସ୍ୟା ଭାଙ୍ଗିବ ?

ଅତନୁ ଅଗତ୍ୟା ଘର ଭିତରେ ପାଦ ଦେଇ ମୃଦୁ କଣ୍ଠରେ ଡାକିଲା – ବୋଉ....

ମେଘମାଳା ସତେ ଯେମିତି ଚିନ୍ତାର କେଉଁ ଅନନ୍ତ ରାଜ୍ୟରୁ ଫେରିଆସିଲେ । ଆଚ୍ଛନ୍ନ ଦୃଷ୍ଟିରେ ଥରେ ଥରେ ସମସ୍ତଙ୍କ ମୁହଁ ଉପରେ ଆଖି ବୁଲେଇଗଲେ । ବଡ଼ କଷ୍ଟରେ ତଳେ ଭରାଦେଇ ଉଠି ଠିଆ ହେଲେ । କହିଲେ ଚାଲ ।

ବାହାରେ ସବୁ ବ୍ୟବସ୍ଥା ସଂମ୍ପୂର୍ଣ୍ଣ ହୋଇଯାଇଛି । କେବଳ ଉଠାଇବାକୁ ଆଦେଶ ମିଳିଲେ ଲଲାଟେନ୍ଦୁଙ୍କର ମର ଦେହ ଟ୍ରକ୍ ଉପରକୁ ଉଠିଯିବ । ତା' ପରେ ଆରମ୍ଭ ହେବ ଶୋଭାଯାତ୍ରା ।

ମେଘମାଳା ଗୋଟିଏ ଯନ୍ତ୍ର ଭଳି ଚାଲୁ ଚାଲୁ ଭାବୁଥିଲେ – ସବୁ ସରିଗଲା ତେବେ ! ଜୀବନସାରା ସେ ଏକ ସଫଳ ମଣିଷର ସହଧର୍ମିଣୀ ହେବା ପାଇଁ ପ୍ରାଣପଣେ ଚେଷ୍ଟା କରି ଚାଲିଛନ୍ତି । ତାଙ୍କୁ ପ୍ରାଣ ଖୋଲି ହସିବାକୁ ମନା । ଆଖିର ଲୁହରେ ହୃଦୟର ଗୁରୁଭାରକୁ ହାଲୁକା କରିଦେବା ବି ତାଙ୍କ ପାଇଁ ନିଷିଦ୍ଧ । କ୍ୟାରିଅର ନାମରେ ଗୋଟିଏ ପରେ ଗୋଟିଏ ତିନୋଟିଯାକ ପୁଅ ତାଙ୍କଠାରୁ ଦୂରେଇ ଗଲେ । ଝିଅମାନେ ବି ବାହା ହୋଇ କିଏ କୁଆଡ଼େ ରହିଲେ । ଅଥଚ ସେ ସେମାନଙ୍କ ପାଇଁ ବିନ୍ଦୁଏ ଲୁହ ଝରାଇବାକୁ ବି ସୁଯୋଗ ପାଇ ନାହାନ୍ତି । ହୃଦୟର ଆଲୋଡ଼ନକୁ ପୋଷାକୀ ହସରେ ଢାଙ୍କି ରଖି ସେଇ ସଫଳ ମଣିଷଟିର ଯୋଗ୍ୟ ସହଧର୍ମିଣୀ ବୋଲାଇଛନ୍ତି । ସୁଖ ପାଇଁ ତ ତାଙ୍କର

ଜନ୍ମ ।

ଅଥଚ ସେ ଜାଣନ୍ତି, ତାଙ୍କର ଏଇ ଆଲୁଅ ଝଲମଲ ମଣିଷ ସତ୍ତା ତଳେ କେଉଁ ଦୁଃଖୀ ମଣିଷଟିଏ ଟିକିଏ କାନ୍ଦିବାକୁ କି ହସିବାକୁ ବିକଳ ହୋଇ ସଦାବେଳେ ଚିତ୍କାର କରିଛି । ମାତ୍ର ସେ ତା'ର ତଣ୍ଟି ଚିପି ତାକୁ ହୃଦୟର ନିଭୃତ କୋଣରେ ବନ୍ଦୀ କରି ରଖିଛନ୍ତି । ସେ ତ ମଣିଷ ନୁହନ୍ତି, ପଥର ଖଣ୍ଡେ । ପଥରରେ କ'ଣ ପ୍ରାଣ ଥାଏ ?

ଦଳେ ପିଲାଙ୍କୁ ନେଇ କଳରବ କରି କରି ସର୍ବଦମନ ତଳକୁ ଓହ୍ଲାଇ ଯାଉ ଯାଉ ଜଣେ ପଦସ୍ଥ ଅଫିସରଙ୍କୁ ଦେଖି ଜଣାଇ ଦେଇଗଲେ – Do you know ? Four thousands so far - still coming. କେତେଟା ଘଣ୍ଟାରେ ଚାରିହଜାର Telegram ସଫଳ ମଣିଷ ହେବାରେ ଆଉ ବାକିଟା କ'ଣ ରହିଲା ?

ପିଲାମାନଙ୍କୁ ସାଙ୍ଗରେ ନେଇ ମେଘମାଳା ସେଇ ରୁମ୍‌ରେ ପହଞ୍ଚିଗଲେ । ଶୁଭେନ୍ଦୁ ବିନୀତ ଭାବରେ ସେଠାରେ ରୁଣ୍ଡ ହୋଇଥିବା ଜନତାଙ୍କୁ ବାହାରକୁ ଚାଲିଯିବା ପାଇଁ ଅନୁରୋଧ ଜଣାଇଲେ ।

ମେଘମାଳା ଯନ୍ତ୍ର ଭଳି ଆଗେଇ ଗଲେ । ଫୁଲରେ ଢାଙ୍କି ହୋଇ ଯାଇଥିବା ଲଲାଟେନ୍ଦୁଙ୍କ ମ୍ଳାନ ମୁଖମଣ୍ଡଳ ଆଡ଼କୁ ମୁହୂର୍ତ୍ତେ ଅନାଇଲେ । ତା' ପରେ ସେ ତାଙ୍କ ପାଦ ପାଖରେ ବସିପଡ଼ି ମୁଣ୍ଡ ନୁଆଇଁ ଦେଲେ ।

ତାଙ୍କର ଦେହ ଥର ଥର ହୋଇ କମ୍ପିବାକୁ ଲାଗିଲା । କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । ବଡ଼ କରୁଣ କଣ୍ଠରେ ସେ ଲଲାଟେନ୍ଦୁଙ୍କୁ ଅନାଇ କହିଲେ – ମତେ ତମେ ଏକା କରି ଦେଇ ଚାଲିଗଲ ।

ତା' ପରେ ସେ ଚେତା ହରାଇ ସେଇଠି ଲୋଟିପଡ଼ିଲେ ।



## କୁକୁର

ଜିନିଷଟି ଯେତେ ଅଦରକାରୀ ହେଉ ପଛେ, କିଛି ଦିନ ରହିଯିବା ପରେ ମଣିଷ ମନରେ ତା' ପାଇଁ ଗୋଟାଏ ମୋହ ସୃଷ୍ଟି ହୋଇଯାଏ । ପାଖରେ ଥିଲା ବେଳେ ତାହା ସେ ସବୁବେଳେ କାମରେ ଲାଗୁଥାଏ, ଏପରି ନୁହେଁ । 'ମୋର ଅଛି' ଏଇ ଭଳି ଗୋଟିଏ ଅହଙ୍କାରରେ ମଣିଷ ବାଟ ଚାଲୁଥାଏ । ଦେଖେଇ ହବା ପଣିଆର ଏ ହଉଚି ଏକ ଜୈତ୍ର ପତାକା ।

ବିଲ୍ଲ ଯେତେବେଳେ ସୁଦୂର ଚନ୍ଦ୍ରଗିରି ଶରଣାର୍ଥୀ ଶିବିରରୁ ଗାଡ଼ି ଚଢ଼ି ଘରକୁ ଆସିଲା, ସେତେବେଳେ ଏଇଆ ମନେ ହୋଇଥିଲା । ଆଖପାଖ ଅଭିଜାତ ପରିବାରରେ ସମସ୍ତଙ୍କର ଥିଲା, ଆମର ନ ଥିଲା, ଏଇ ଭଳି ଏକ ନିପାରିଲା ପଣିଆର ଅନ୍ଧାରରୁ ବାହାରି ସାରା ପରିବାର ଯେମିତି 'ସବୁ ପାଇଛୁ'ର ହିମାଳୟ ଚୂଡ଼ାରେ ଠିଆ ହୋଇ ଯାଇଥିଲେ ।

ସଦ୍ୟ ମା ଛାଡ଼ି ଆସିଥିବା ଦୁଇମାସର ଛୁଆଟି କିନ୍ତୁ ଏ ସବୁ କିଛି ବୁଝି ନ ଥିଲା । ବହଳ ଝାମ୍ପୁଲା ବାଳ ଭିତରୁ ଲୁଳୁ ଲୁଳୁ କରି ଅନାଉଥିଲା । ବେଳେବେଳେ କୁଁ କୁଁ ହୋଇ ବୋବାଉଥିଲା।ଜାଗା ଠଉରେଇବାକୁ ଚେଷ୍ଟା କରୁଥିଲା ।

କେହି ଜଣେ କହିଲେ – ଆରେ ତାକୁ ଭୋକ କଲାଣି ।

ଦୁଇମାସର ପିଲା – କ'ଣ ଖାଇବ, ପୁଣି କେମିତି ଖାଇବ – ଏ ବିଷୟରେ ପରିବାରର ସମସ୍ତଙ୍କ କିଛି ନା କିଛି କହିବାର ଥିଲା । ଛୁଆ ଯେତେବେଳେ ଦୁଧ ତ ଖାଇବ । ତେବେ ଖାଇବ କେମିତି ?

କେହି କହିଲେ – ଫିଡ଼ିଂ ବଟଲ୍ ଆଣି ତାକୁ ଧରାଇ ଦେଲେ, ସେ ତା ର ଆପେ ପିଇବ । ଆଉ କେହି କହିଲେ – ଏଡ଼େ ବଢ଼କଟେ ଛୁଆ ସେ କେମିତି ରବର

ନିପଲ ଟାଣିବ ? ତାକୁ ଚାମଚରେ ପିଆଇ ଦିଆଯାଉ, କି ତୁଳାରେ ବୁଡ଼ାଇ ତା' ପାଟିରେ ଚିପୁଡ଼ି ଦିଆଯାଉ ।

ବୋଉ କହିଲେ – ସେ ଯଦି କାମୁଡ଼ି ଦିଏ ? ତମେ ଜାଣିନ, ଛୋଟ ଛୁଆଙ୍କ ଦାନ୍ତରେ ବିଷ ଥାଏ । ସେମିତି ହେଲେ ନାହି ମୁଣ୍ଡାରେ ଷୋଳଟା ଇଞ୍ଜେକ୍‌ସନ୍ ।

କିଏ ପିଆଇବ ?

କେହି ବାହାରିଲେ ନାହିଁ । ଯିଏ ଆଣିଚି, ସିଏ ତା'ର ବୁଝୁ । ବାପା ଛୁଆଟି ଆଡ଼କୁ ସନ୍ଦେହୀ ଦୃଷ୍ଟିକର ଅନାଇ କହିଲେ – ଆରେ ରନି ରିପ୍ଟୀଙ୍କି ତତେ ଠକି ଦେଇଚି । ଏଇଟା ● ମିଶା ପଡ଼ିବ ନା କ'ଣ !

ଆଗନ୍ତୁକର ସ୍ୱର ଧୀରେ ଧୀରେ ବଢୁଥିଲା । 'ମୋର ଦରକାର – ମୋତେ ଦିଅ' । ଏଇ ଦାବୀ ବାରମ୍ବାର ସୋଚ୍ଚାର ହେଉଥିଲା । ପରିବାରର ସମସ୍ତେ ବିମୂଢ଼ ହୋଇ ବସିଥିଲେ । ଦୁଇମାସର ଏଇ କ୍ଷୁଧିତ ପ୍ରାଣୀଟିକୁ କିଭଳି ଶାନ୍ତ କରିବେ, କେହି ଜାଣି ନ ଥିଲେ ।

ସାତ ବର୍ଷର ପିଣ୍ଟୁ ଥାଳିଆରେ ଦୁଧ ନେଇ ତା' ଆଗରେ ରଖିଲା । ଛୁଆଟି ଥରେ ଚାରିଆଡ଼କୁ ସତର୍କ ଦୃଷ୍ଟିରେ ଦେଖି ନେଲା । ତା' ପରେ ଥାଳିଆରେ ମୁହଁ ମାରିଲା । ଚୁକ୍ ଚୁକ୍ ଶବ୍ଦ କରି ଖାଇବାକୁ ଲାଗିଲା ।

ସମସ୍ତେ ସ୍ୱସ୍ତିର ନିଃଶ୍ୱାସ ପକାଇଲେ ।

ବାପା କହିଲେ– ଆଉ ଟିକିଏ ବଡ଼ ହୋଇଗଲେ ଆକୁ ନେଇ ମୁଁ ମର୍ଣ୍ଣିଂ ଓ୍ୱାକରେ ଯିବି । ସକାଳୁ ବୁଲିଲେ, ତା' ଦେହ ଭଲ ରହିବ । ପୁଣି ସକାଳୁଆ କାମ ଗୁଡ଼ାକ ସେଇଁ ଆଡ଼େ ସାରି ଦେଇ ଆସିଲେ ଗୋଟାଏ ଝାମେଲାରୁ ମୁକ୍ତି ମିଳିବ ।

ବାପାଙ୍କ ଆଖିରେ ହୁଏତ ଭାସୁଥିଲା, ଧୋତି ପଞ୍ଜାବୀ ପିନ୍ଧି ଗୋଟାଏ ହାତରେ ବଙ୍କୁଲିବାଡ଼ି ଆଉ ଆର ହାତରେ ଚେନ୍ ଧରି ସେ ଯେତେବେଳେ ରାସ୍ତାରେ ଚାଲୁଥିବେ, ସେତେବେଳେ ଦଶ ପାଞ୍ଚ ଆଖି ନିଶ୍ଚୟ ତାଙ୍କ ଉପରେ ପଡୁଥିବ । ଲୋକେ ଧରି ନେଉଥିବେ, ସେ ଜଣେ ସଫଳ ମଣିଷ । ସଫଳତା ପକେଟରେ ରଖିବା ପଦାର୍ଥ ନୁହେଁ, ଆଧୁନିକ ଯୁଗର ସଚଳ ବିଜ୍ଞାପନ । ଅନ୍ୟ ଆଖିରେ ଯଚେଇ ନ ହେବା ପର୍ଯ୍ୟନ୍ତ ସେ ସଫଳତାର ମୂଲ୍ୟ କ'ଣ ?

ରାମ ରତନବାବୁ ତିନି ହାତ ଉଚ୍ଚର ହେଟା ଭଳି ଆଲ୍‌ସିସିଆନ୍ ଧରି ମର୍ଣ୍ଣିଂୱାକ୍‌ରେ ବାହାରନ୍ତି । ଫେନିର ଦେହ ଖରାପ ହେଲେ ତାଙ୍କୁ ଦଶ ଦିଗ ଅନ୍ଧାର ଦିଶେ । ଗାଡ଼ିରେ ବସି ଫେନି ଡାକ୍ତରଖାନା ଯାଏ । ଡଗ୍ ବିସ୍କୁଟ, ସୋପ୍, ବ୍ରସ, ପାଉଡ଼ର, ମେଡ଼ିସିନ୍, ଡାଏଟ୍‌ରେ ତାଙ୍କର ହଜାର ହଜାର ଉଡ଼ିଯାଏ । ଏଇ କଥା ସେ ବାରମ୍ବାର ଜଣାଇ ଦିଅନ୍ତି ।

ଜଗଦାନନ୍ଦ ବାବୁଙ୍କର କହିବାର କିଛି ନ ଥାଏ । ତଥାପି ସେ କହନ୍ତି, ଜାଣିଲ ରାମବାବୁ, ପିଲାଛୁଆ ଘରେ କୁକୁର ବିଲେଇ ପାଳିବା ଭଲ ନୁହେଁ । ହ୍ୟାପ, ବାର ଜାଗାରେ ମୁହଁ ମାରିବେ । ବାର ରୋଗ ଆଣି ଘରେ ପୂରେଇବେ । ସେଇଥିପେଇଁ ପରା ଯିଏ ଯେତେ କହିଲେ ବି ମୁଁ ସେଥିରେ ପଶି ନାଇଁ ।

ରାମରତନଙ୍କ ଫେନି ରାସ୍ତା ମଝିରେ ପ୍ରାତଃକୃତ୍ୟ ସମାପନ କରେ । ପାଖରେ ଚେନ୍ ଧରି ଖୋଦ୍ ମାଲିକ ତାକୁ ଇଂରାଜୀରେ ନିର୍ଦ୍ଦେଶ ଦେଉଥାଆନ୍ତି । ବିଦେଶୀ ପ୍ରାଣୀ କେଜାଣି ଦେଶୀ ଭାଷା ବୁଝିପାରିବ କି ନାହିଁ । ଏଇଥିପାଇଁ ଜଗଦାନନ୍ଦଙ୍କ ସହିତ ତାଙ୍କର ମନ କଷାକଷି । କୁକୁରଟାକୁ ରାସ୍ତା ମଝିରେ ଝାଡ଼ା ଫେରାଇ ରାମରତନ ନାଗରିକ ଦାୟିତ୍ୱର ଖିଲାପ କରୁଛନ୍ତି ବୋଲି ଜଗଦାନନ୍ଦ ଜଣାଇ ଦିଅନ୍ତି ।

ରାମରତନଙ୍କ ପାଇଁ ହଜାର ପ୍ରିସିଡେନ୍ସ୍ ଅଛି । ଜଗଦାନନ୍ଦଙ୍କର ଅଛି କେବଳ ବ୍ୟକ୍ତିଗତ ସ୍ୱାସ୍ଥ୍ୟ ଚିନ୍ତା ।

ଜଗଦାନନ୍ଦ ଏଥର ରାମରତନଙ୍କୁ ମୁହେଁ ମୁହେଁ ଜବାବ ଦେଇ ପାରିବେ । ମାତ୍ର ଆଉ ମାସ କେଇଟାର କଥା ।

ଖାଇବା ସମସ୍ୟାର ସମାଧାନ ହୋଇଗଲା ପରେ ପରିବାରର ସଦସ୍ୟମାନେ ଫେରି ଯାଉଥିଲେ । ସମସ୍ତଙ୍କର ନିଜ ନିଜର କର୍ମବୃତ୍ତ ଅଛି । ବଡ଼ମାନଙ୍କର ଅଫିସ ଅଛି ସାନମାନେ ସ୍କୁଲ କଲେଜ ଯିବେ ।

ଜଗଦାନନ୍ଦ କହିଲେ – ଭଲ କରି ଗୋଟାଏ ନାଁ ବାଛ ତ ।

ମାଆ ଦୂରରେ ବସି ପରିବା କାଟୁଥିଲେ । ବିଲେଇ ହେଲେ କଥା ଥିଲା । କୁକୁରକୁ ସେ ଅସୁଖ ପାଆନ୍ତି । ଚାରିଆଡ଼ ବୁଲିବ । ସବୁଥିରେ ମୁହଁ ମାରିବ । ହଗିବ ମୁତିବ । ବିଛଣାପତ୍ର ମାରା କରିବ । କହିଲେ କିଏ ଶୁଣିବ ? ନିଜ ମର୍ଯ୍ୟାଦା ଜଗି ତୁନି ରହିଲେ ଭଲ ।

ଜଗଦାନନ୍ଦ ତାଙ୍କ ଆଡ଼କୁ ଅନାଇ କହିଲେ – ବୋଉ କିଛି କହୁନାହିଁ କାହିଁକି ।

ମାଆ କହିଲେ – କୁକୁରଟାଏତ – ତା' ପେଇଁ ଏତେ ପଞ୍ଚାୟତ ବସେଇବା କ'ଣ ଦରକାର ? ବୁଧବାର ଘରକୁ ଆସିଚି – ବୁଧିଆ ବୋଲି ଡାକିଲେ ଚଳିବ ।

ପରିବାରର ଯୁବ – ସଦସ୍ୟମାନେ ହସି ଉଠିଲେ । ଜଗଦାନନ୍ଦଙ୍କ ମୁହଁରେ ମଧ୍ୟ ଦ୍ୱିତୀୟା ଚନ୍ଦ୍ର ଭଳି ବଙ୍କା ହସ ଧାରେ ଫୁଟି ଉଠିଲା । ସେ କିଛି କହିଲେ ନାହିଁ । କଲେଜ ପଢୁଆ ଯତୀନ ବ୍ୟଙ୍ଗ କରି କହିଲା – ହଁ, ତୋ ନାଁ ସେମିତି ମୋତା ଦେଇ ! ମାଆ ଖର ଖର ସ୍ୱରରେ କହିଲେ – ସେଇ ନାଁକୁ ନେଇ ଅଶୀ ବରଷ କଟେଇ ଦେଲି । ଘର ଦୁଆର ପିଲାଛୁଆ କୋଉ ପଦରେ କାଳିଆ ମତେ ଊଣା କରିଛି କହ...

ନାଆଁରୁ ବ୍ୟକ୍ତିତ୍ୱ ଫୁଟେ – ପରିବାରର ଓଜନ କଳି ହୁଏ । ଭୁଷାମାଲିକଓ୍ୱାଲା ଟଙ୍କାର ପାହାଡ଼ ଉପରେ ବସିଲେ ବି କଲ୍‌ଚର୍ ପାଇବ କୋଉଠୁ ? ଏ ପୁଣି ବିଲାତି ଜନ୍ତୁ । ଦେଶୀ ଭାଷା ଯଦି ନ ବୁଝିଲା, ତେବେ କଥା ସରିଲା । ରାମରତନ ତାଙ୍କ ଫେନି ସାଙ୍ଗରେ ଇଂଲିଶରେ କଥାବାର୍ତ୍ତା ହୁଅନ୍ତି । ବୋଉ ଏସବୁ ବୁଝିବ ନାହିଁ ।

ଯତୀନ୍ କହିଲା, ଜାଣିଚ ଜେଜେ, ଜଣେ ରାଷ୍ଟ୍ରପତି କୁଆଡ଼େ ବିଲେଇଟିଏ ପାଳିଛନ୍ତି– ତା ନାଁ ଦେଇଛନ୍ତି 'ଇଣ୍ଡିଆ' । ଆମେ ବି କୁକୁର ନା ଦେବା 'ବିଲ୍ ।'

ଆଜି କାଲିକା ପିଲା କେତେ ଖବର ରଖୁଚନ୍ତି !

ବିଲ୍ ନାଁ ଧରି କୁକୁର ଛୁଆ ରହିଗଲା ।

ଚନ୍ଦ୍ରଗିରିରୁ କୁକୁର ଛୁଆ ଧରି ଆସିଥିବା ରଞ୍ଜନବାବୁ ଓରଫ ରନି ଡାଏଟ ଚାର୍ଟ ଧରାଇ ଦେଲେ । ସକାଳୁ ଗ୍ଲାସେ ଦୁଧ ଆଉ ଦୁଇ/ଚାରିଖଣ୍ଡ ଡଗ୍ ବିସ୍କୁଟ । ଖାଇବା ବେଳେ ଶହେ ଗ୍ରାମ୍ ଚାଉଳ ଭାତ –ସେଥିରେ ହଳଦି ପଡ଼ିଥିବ– ଲୁଣ ଦିଆଯିବ ନାହିଁ ଆଉ କିଛି ମାଂସ ଛେଅଡ଼ା– ଏକାଠି ସିଝା ହୋଇ ଦିଆଯିବ–ରାତିରେ ଦୁଧ ଆଉ ଦୁଇଖଣ୍ଡ ରୁଟି ଇଏତ ଗଲା – ଖାଇବା କଥା... ସପ୍ତାହରେ ଥରେ ସାବୁନ ଲଗାଇ ଗାଧୋଇ ଦେବାକୁ ହେବ । ବାକି ଶୁଖିଗଲା ପରେ ପାଉଡର ପକାଇ ବ୍ରସ ମାରି ଦେଲେ ଦୁଇ ମାସରେ ଥରେ ପଶୁଡାକ୍ତର ଦେଖିବ ।

ସକାଳୁ ଆଉ ଉପରବେଳା ତାକୁ ବାହାରେ ଘେରାଏ ଲେଖା ବୁଲେଇ ଆଣିବାକୁ ହେବ । ବାହାରେ ପ୍ରାକୃତିକ କ୍ରିୟା ସାରିବାର ଅଭ୍ୟାସ କରାଇବାକୁ ହେବ। ନ ହେଲେ ଘରଦ୍ୱାର ଅପରିଷ୍କାର କରିବ.... ।

ଲୁହାର ଚଣା ଚୋବାଇବା ଯାହା କୁକୁର ରଖିବା ସେଇଆ । ଇଏ କ'ଣ ପିଲାଖେଳ ହେଇଚି !

ଅପୁଆ ଘରର ପୁଅ ଭଳି 'ବିଲ୍' ଦିନା କେତେ ବଡ଼ ଆଦର ଯତ୍ନ ପାଇଲା । ପିଙ୍କି ତା ଆଗ ଦି' ଗୋଡ଼ ଟେକି ଧରି ତାକୁ ଚାଲିବା ଶିଖାଇବାକୁ ଗଲାବେଳେ ରିଙ୍କି ସେଠି ହଠାତ୍ ପହଞ୍ଚିଯାଇ ତାକୁ ଧମ୍‌କାଇଲା... ହେଡ୍, ସେମିତି ତାକୁ ଘୋଷାଡୁଚୁ କାହିଁକି ? ଜାଣିନୁ ତା'ର କଅଁଳ ହାଡ଼ - ଭାଙ୍ଗିଯିବ ଯଦି ?

ବୁଲୁ ତା'ର ଗୋଟିଏ ଗୋଡ଼କୁ ଟେକି ଧରି ତାକୁ ଶିଖାଇଲା - ହେଇ ବିଲ୍, ସଲାମ୍ କର...

ଲୁଲୁ କୁଆଡୁ ଆସି ସେଠି ପହଞ୍ଚିଯାଇ ତାକୁ ବଡ଼ ବଡ଼ ଆଖିରେ ଅନାଇ କହିଲା - ବୁଲୁଭାଇ, ସିଏ କ'ଣ ଓଡ଼ିଆ କୁକୁର କି, ତାକୁ ଇଂଲିଶରେ ଶିଖେଇଲେ ସିଏ ବୁଝିବ ନା ! କହ ସାଲ୍ୟୁଟ୍ .....

ବିଲ୍‌ର ବାଳଲୀଳା ଆରମ୍ଭ ହୋଇ ଯାଇଥିଲା... ରିଙ୍କି କଲେଜ ଯିବାକୁ ସାଣ୍ଡଲରେ ପାଦ ଗଳାଇବାକୁ ଯାଇ ଦେଖିଲା... ସର୍ବନାଶ... ଆରେ ମୋ ଷ୍ଟ୍ରାପ୍ ଏମିତି କିଏ ଛିଣ୍ଡେଇଲା ? ଇଏ ନିଶ୍ଚେ ବିଲ୍‌ର କାମ.... କୁଆଡ଼େ ଗଲା ସେ....

ଶୀତ ରାତିରେ ଯେଝା ଘରେ ଯେଝା କବାଟ ଦେଇ ଶୋଇପଡ଼ନ୍ତି । ବିଲ୍ ଆଖିକୁ ନିଦ ଆସେ ନାହିଁ । ନିଜର ଅଖା ବିଛଣା ଉପରେ ଶୋଇ ସେ ବିକଳରେ କୁଁ କୁଁ ହେଉଥାଏ ।

ସେଦିନ ରାତି ଏଗାରଟାରେ ଦେଖାଗଲା ବିଲ୍ ତା ବିଛଣାରେ ନାହିଁ । ଖୋଜ - ଖୋଜ- ଗଲା କୁଆଡ଼େ ? ଘରର କବାଟ ସବୁ ବନ୍ଦ ହୋଇଗଲାଣି - କେଉଁଠି କୋଉ ରୁମ୍‌ରେ ପଶିଚି... ବଳେ ସକାଳୁ ବାହାରିବ....

ରାତି ଅଧରେ ବୁଲୁ ପରିସ୍ତ୍ରା ଉଠିଲା । ଲାଇଟ ଲିଭାଇ ଶୋଇବା ବେଳକୁ ଗୋଡ଼ ପାଖରେ ନରମ ନରମ କ'ଣଟେ ? ଲାଇଟ ଜଳାଇ ଦେଖିଲା ବେଳକୁ ବିଲ୍... ଇଏ ନିଶ୍ଚେ ଲୁଲୁର କାମ... କୁକୁରକୁ ଆଣି ବିଛଣାରେ ପୂରେଇଚି... ବୁଲୁ ଗର୍ଜନ କରି ଉଠିଲା ... ଲୁ....ଲୁ...

ଆଖି ମଳି ମଳି ଲୁଲୁ କହିଲା - କ'ଣ ହେଲା ? ବିଲ୍‌କୁ ଶୀତ କରୁଥିଲା - ତା'ର ଆମ ଭଳି ରେଜେଇ ନାହିଁ, ସିଏ ଏଇଠି ଶୋଇବ... ମୋ ପାଖରେ...

ଗୋଟାଏ କଣରେ ଚୁଲି ଉପରେ ଥୁଆ ହୋଇଥାଏ ମୋତା ଦେଈଙ୍କ କୋଥଳି.... ତହିଁରେ ନିର୍ମାଲ୍ୟ, ଶିରୀ କାପଡ଼ାଠୁ ଆରମ୍ଭ କରି ହରେକ ରକମର ଦେବତାଙ୍କର ଧଣ୍ଡା, ତିଳକ, ରୁଦ୍ରାକ୍ଷମାଳ, ଦର୍ପଣ, ବିଷ୍ଣୁ ସହସ୍ରନାମ, ଶାରଳା ଜଣାଣଠୁଁ ଆରମ୍ଭ କରି ଆଉରି କେତେ କଣ ରହିଥାଏ । ଦି'ପହରେ ଗାଧୋଇ ସାରି ପାଣି ନୋଟାଏ ଥୋଇ ମୋତା ଦେଈ କୋଥଳି ଧେଵାରେ ବସନ୍ତି । ଦର୍ପଣ ଧରି ଛୋଟ ଚନ୍ଦନ ପେଡ଼ିରେ ତିଳକ ଘୋରି ନାକ ଅଗରୁ କପାଳ ପର୍ଯ୍ୟନ୍ତ ଟାଣିବା ବେଳେ କି ହାତରେ ରୁଦ୍ରାକ୍ଷ ଧରି ଗୁଣୁ ଗୁଣୁ ହୋଇ ନାମ ଜପିବାବେଳେ ବି ତାଙ୍କ ସତର୍କ ଦୃଷ୍ଟି ସଂସାର ଆଡ଼େ ରହିଥାଏ । କେଉଁଠି ବେଆଡ଼ା କାମ କିଛି ଦେଖିଲେ, ସେ ସାମୟିକ ଭାବରେ ଧର୍ମକାର୍ଯ୍ୟ ସ୍ଥଗିତ ରଖି ସଂସାର କାର୍ଯ୍ୟ ଭିତରକୁ ଆପେ ଡେଇଁ ପଡ଼ନ୍ତି କି, କାହାକୁ ବରଗି ଦିଅନ୍ତି । ଅର୍ଥ ଏବଂ ପରମାର୍ଥ-ଉଭୟର ତାଙ୍କ ଜୀବନରେ ସହାବସ୍ଥାନ ।

ଛୋଟବେଳୁ ମୋତା ଦେଈଙ୍କର ଏଇ କାର୍ଯ୍ୟ ପ୍ରତି ବିଲ୍‌ର ଆକର୍ଷଣ ବହୁତ । ମୋତାନ୍ଦେଈ ଶାରଳା-ଜଣାଣ ବୋଲୁଥିବା ବେଳେ ବିଲ୍‌ପଛ ଗୋଡ଼ରେ ଭରା ଦେଇ ପାଖରେ ଲାଙ୍ଗୁଳକୁ ଆସ୍ତେ ଆସ୍ତେ ହଲାଉଥାଏ ।

ମୋତା ଦେଈଙ୍କର ଭ୍ରୂକୁଟି ଧୀରେ ଧୀରେ କୁଟିଳ ହୋଇଉଠେ । ଏ ସଂସାରରେ ଧର୍ମକର୍ମ ସବୁ ଯେ ଚୁଲୀରେ ପଶିଲାଣି ଏଥିରେ ତାଙ୍କର ସନ୍ଦେହ ନଥାଏ । ଲକ୍ଷ୍ମୀ ଯେ ଏଇ ଅନ୍ୟାଚାର ଗ୍ରସ୍ତ ସଂସାରରୁ ଗୋଡ଼ଟେକି ଚାଲି ଯିବାକୁ ବସିଲେଣି, ଏକଥା ତାଙ୍କୁ ଜଳ ଜଳ ହୋଇ ଦେଖାଯାଏ । ସେଇଥି ପାଇଁ ତ ଲକ୍ଷେ ଅରଜିଲେ ବି ପକ୍ଷେ ଯାଉ ନାହିଁ । ଠିକିଲେ ବଳେ ଶିଖିବେ ଯେ, ସେତେବେଳକୁ ନେଡ଼ିଗୁଡ଼ ଯାଇ କହୁଣୀରେ ହୋଇଥିବ । ହଉ, ବଂଚିଥିଲେ ଦେଖିବେ ଯେ – ଏ କୁକୁର ସୁଆଗ କେତେଦିନ ଯାଏ ରହୁଚି ।

ମାଳ ଉପରେ ତାଙ୍କର ଆଙ୍ଗୁଠି ଜୋର୍‌ରେ ଚାଲେ । ସେ ତୀବ୍ର ଦୃଷ୍ଟିରେ ବିଲ୍ ଆଡ଼େ ଅନାଇ ତାକୁ ଭସ୍ମ କରି ଦେବାରେ ରହନ୍ତି । ବିଲ୍ ଏତେ କଥା ବୁଝେ ନାହିଁ । ସେ ତା'ର ସେମିତି ବସି ଝୁଲୁଥାଏ ।

ବୁଲୁ ଆଉ ଲୁଲୁ ସ୍କୁଲରୁ ଫେରିବା ମାତ୍ରେ ବ୍ୟାଗ ଫୋପାଡ଼ି ଦେଇ ଦଉଡ଼ା ଦଉଡ଼ି ହୋଇ ବିଲ୍ ପାଖକୁ ଆସନ୍ତି । ବିଲ୍ ବି ସେମାନଙ୍କୁ ଦେଖିବା ମାତ୍ରେ ଧାଇଁ ଆସି ଗୋଡ଼ ଭିତରେ ପଶିଯାଏ । ଦି' ଗୋଡ଼ରେ ଠିଆ ହୋଇ ଜିଭରେ ଚାଟି ପକାଏ । କୁଁ କୁଁ ହୋଇ କୋଳକୁ ନେବାକୁ ଅନୁରୋଧ କରେ ।

କୁନ୍ତଳା ଦେବୀ ଭାରି ବିକ୍ଦାର ହୋଇଯାଆନ୍ତି । ସ୍କୁଲରୁ ଫେରି ଖାଇବା ପିଇବା କୁଆଡ଼େ ଗଲା, ଲାଗିଲେ ସେଇ ଅଲକ୍ଷଣା କୁକୁରଟା ପଛରେ । ଯେତେବେଳେ ଦେଖ ତା'ରି ସାଙ୍ଗରେ ଖେଳ । ପାଠ ଶାଠ ସବୁ କୁଆଡ଼େ ଗଲା – ହଉ ଏଥର ରେଜଲ୍ଟ ଆସୁ, ସେତେବେଳେ ଯାଇ କଥାବାର୍ତ୍ତା ।

ଗୋଟାଏ ହାତରେ ବଲ୍ ଆଉ ଆର କାଖରେ ବିଲ୍‌କୁ ଧରି ପିଲା ଦିହେଁ ବଗିଚାକୁ ବାହାରି ଯାଆନ୍ତି । ବଲ୍ ଫୋପାଡ଼ି ବିଲ୍‌କୁ ଇଂଲିସ୍‌ରେ ନିର୍ଦ୍ଦେଶ ଦେବେ । ସେ ପାଟିରେ କାମୁଡ଼ି ଯାହା ପାଖକୁ ଯିବାକୁ ତାକୁ ନିର୍ଦ୍ଦେଶ ଦିଆଯିବ, ତା' ପାଖକୁ ଯିବ । ବଲ୍‌କୁ ଲୁଚାଇ ତାକୁ ଖୋଜିବାକୁ ପଠାଯିବ । ସନ୍ଧ୍ୟାବେଳ ପର୍ଯ୍ୟନ୍ତ ଏଇ ଖେଳ ଚାଲିବ ।

ତା' ପରେ ଆଲୋଚନା ଚାଲିବ । ବିଲ୍‌ଟା ଭାରି ବୁଦ୍ଧିଆ । 'ଗୋ ଟୁ ଲୁଲୁ' କହିଲେ ଠିକ୍ ଲୁଲୁ ପାଖକୁ ଚାଲି ଯାଉଛି । 'ଗୋ ଟୁ ବୁଲୁ ଭାଇ' କହିଲେ ବୁଲୁ ପାଖରେ ପହଞ୍ଚିଯାଉଛି । ଲୁଚାଇଥିବା ବଲ୍‌କୁ ଶୁଙ୍ଘିଶଙ୍ଘି ଖୋଜି ଆଣୁଚି । ଘରସାରା ଲୋକେ ଶୁଣନ୍ତି । ଶୁଣି ଶୁଣି ଥକି ପଡ଼ନ୍ତି । ଯେତେ ହେଲେ ବିଲାତି କୁକୁର ନା !

ବିଲ୍ ଧୀରେ ଧୀରେ ବଡ଼ ହେଉଛି । ରାସ୍ତା ଉପରେ ବୁଲା କୁକୁର କି ଗାଈ ଛେଳି ଦେଖିଲେ କାନ ଟେକି ଲାଙ୍ଗୁଡ଼ ହଲାଇ ଭୁକିବାକୁ ଶିଖିଲାଣି । ''ବିଲ୍ ଗୋ' – କହି ଦେଲେ ସେମାନଙ୍କ ପଛରେ ଧାଇଁବାକୁ ଆଗ୍ରହ ଦେଖାଇଲାଣି । ବଗିଚାର ଗୁଣ୍ଡୁଚି ମୂଷା, ପିଢ଼ାର କାଉମାନେ ବି ତା'ର ପ୍ରତାପ ବୁଝିଲେଣି ।

ସକାଳ ଓଳି ଜଗଦାନନ୍ଦ ତାକୁ ଧରି ବାହାରନ୍ତି । ସେଇଟା ତାଙ୍କର ମର୍ଣ୍ଣିଂଓ୍ୱାକର ବେଳ । ଚେନ୍‌ରେ ବନ୍ଧା ହୋଇ ବିଲ୍ ଆଗେ ଆଗେ ଦଉଡୁଥାଏ । ଆଗରୁ ଅଚିହ୍ନା କୁକୁର ଆସୁଥିବା ଦେଖିଲେ, ପଛକୁ ଫେରି ଜଗଦାନନ୍ଦଙ୍କ ଦୁଇ ଗୋଡ଼ ମଝିରେ ପଶିଯାଏ । ସେଇଠୁ ତା'ର ପ୍ରତିବାଦ ମୃଦୁ ସ୍ୱରରେ ଜଣାଇଦିଏ ।

ନାଃ – ଏଇଟା ମାନ୍ଦା କୁକୁରଟାଏ । ଇଏ କ'ଣ ଘର ଜଗିବ ? ଛାର ଢିଅ କୁରାଟା ପିମ୍ପୁଡ଼ିଗାତ ଖୋଳୁଚି । ଏମାନେ ଯେତେ ଯାହା କହନ୍ତୁ ଇଏ ନିରାଟ ମିଶା କୁକୁରଟାଏ । ଯେତିକି ବଡ଼ ହଉଚି, ସେତିକି ଗୁଣ ବାହାରୁଚି ।

ଜଗଦାନନ୍ଦ ଚାରିଆଡ଼କୁ ଅନାଇ ଦେଖନ୍ତି । କେହି ଦେଖୁନାହାନ୍ତି ତ ! ରାମରତନ ଯଦି ଦେଖି ପକାଏ ନା, ତାହା ହେଲେ କଥା ସଇଲା । ଫେନିର ଜାତକ ଯେମିତି ସେ

ମୁଖସ୍ଥ ରଖିଚି, ବିଲ୍ର ବଂଶଲତା ତାଙ୍କୁ କୋଉ ଜଣା ? ଫେନିର ପଣ – ଗୋସେଇଁ ମା କୁଆଡ଼େ କୁଇନ୍ ମେରୀଙ୍କର କେନେଲରେ ଦୋର୍ଦ୍ଦଣ୍ଡ ପ୍ରତାପରେ ରାଜପଣ କରୁଥିଲା ବୋଲି ରାମରତନ ଜାଣିଛନ୍ତି... ।

ଆଚ୍ଛା, ଗୋଟାଏ କୁକୁରର ଲାଇଫ୍–ସ୍ପାନ୍ କେତେ ? ରାମରତନଠୁ ବୁଝିବାକୁ ହେବ । ଶୀଘ୍ର ଗୋଟାଏ ଭଲ ପେଡ଼ିଗ୍ରୀର କୁକୁର ଖୋଜିବାକୁ ହେବ । ଏଇଟା ନ ମଲେ ତ ତା' ହୋଇ ପାରିବ ନାହିଁ ।

ବିଲ୍ ବଡ଼ ହେଉଚି । କେତେ ଶୀଘ୍ର ନିଜ ନାଁ ମନେ ରଖି ନେଲା ଘରର ସବୁ ଲୋକଙ୍କୁ ଚିହ୍ନିଲାଣି । କୋଉଠି ଆଦର କେଉଠି ଅନାଦର – ଏସବୁ ବି ବୁଝିଗଲାଣି । କାହାର ଚଟି କାଟୁଚି, କାହାର ମୋଜା ନେଇ କୋଉଠି ପକାଉଛି । କାହା ବିଛଣାରେ ଶୋଇଲାଣି... କୋଉଠି ସୋଫା ଉପରେ ବସିଲାଣି.... ଏମିତି ହଜାର ଅଭିଯୋଗ ଶୁଣାଗଲାଣି.... 'ବିଲ୍ ଗୋ' ? 'ବିଲ୍ କମ୍ ବ୍ୟାକ୍' 'ବିଲ୍ ଷ୍ଟପ୍'... ଦିନଯାକ ଏମିତି ହଜାର ପାଟି ଶୁଣାଯାଏ... ।

କୁନ୍ତଳା ଦେବୀ କଥାଟା ଏ ପର୍ଯ୍ୟନ୍ତ କାହାକୁ କହି ନାହାନ୍ତି, ସହଜେ ତ ମୋତା ଦେଈ ବିଲ୍ ଉପରେ ପ୍ରସନ୍ନ ନୁହନ୍ତି । ସେ ଯଦି ଜାଣିପାରନ୍ତି ଯେ, ସେଦିନ ସକାଳଟାରୁ ବିଲ୍ ତାଙ୍କର ଚଉରା ଉପରେ ଗୋଡ଼ ଟେକି.... କୁନ୍ତଳାଙ୍କର ପିଣ୍ଡରୁ ପ୍ରାଣ ଛାଡ଼ି ଯାଉଥିଲା । ସେ ଛନ ଛନ ହୋଇ ଚାରିଆଡ଼କୁ ଅନାଇ ଦେଖିଥିଲେ । ବାରଣ୍ଡା ଉପରୁ ଜଗଦାନନ୍ଦ ଏଇ ବିରଳ ଦୃଶ୍ୟ ଦେଖୁଥିଲେ । କୁନ୍ତଳାଙ୍କୁ ଜଣାଗଲା, ତାଙ୍କ ମୁହଁରେ ଯେମିତି ଦୁଷ୍ଟାମିପୂର୍ଣ୍ଣ ହସ ଫୁଟି ଉଠିଚି.... ସେ କୁନ୍ତଳାଙ୍କ ଆଡ଼କୁ ଅନାଇ ମୁଣ୍ଡ ଟୁଙ୍ଗାରି ଥିଲେ । ଶ୍ୱଶୁର ବୋହୂଙ୍କ ମଧ୍ୟରେ ଏକ ଅଲିଖିତ ଗୋପନୀୟ ଚୁକ୍ତି ସମ୍ପାଦିତ ହୋଇ ଯାଇଥିଲା ।

କୁନ୍ତଳା ଶୀଘ୍ର ପାଣି ବାଲ୍‌ଟିର ସନ୍ଧାନରେ ଯାଇ ଥିଲେ । ମାଆ ଚଉରା ପାଖକୁ ଆସିବା ପୂର୍ବରୁ ସବୁଆଡ଼ ଧୋଇ ଦେବାକୁ ହେବ ।

ଦୁର୍ଘଟଣାଟି ସେଇଦିନ ସନ୍ଧ୍ୟାବେଳେ ଘଟିଗଲା । ସଞ୍ଜ ବୁଡ଼ିଗଲାଣି । ପିଲାମାନେ ପଢ଼ିବାକୁ ବସିଲେଣି । ରୋଷେଇ ଆରମ୍ଭ ହେଲାଣି । ଏଇ ସମୟଟାରେ ମୋତାଦେଈଙ୍କ ହାତରେ କିଛି କାମ ନ ଥାଏ । ପିଲାଛୁଆଙ୍କୁ ଧରି ବୁଢ଼ୀ ଅସୁରୁଣୀ କି କେଶବତୀ କନ୍ୟା କଥା କହିବା ଯୁଗ ଆଉ ନାହିଁ... ସେମାନେ ଶୁଣିବାକୁ ରାଜି ହୁଅନ୍ତି

ନାହିଁ । ମୋତା ଦେଈ ବି ସେ ସବୁ ଭୁଲି ଗଲେଣି । ସଞ୍ଜ ହେବା ମାତ୍ରେ ତାଙ୍କର ଦେହ କସମସ ହେବାକୁ ଲାଗେ । ତିନି ଚାରି ମାସରେ ଥରେ ବାତଜ୍ୱର ହୋଇ ଡାହାଣ ଗୋଡ଼ଟା ଫୁଲା ପଡ଼ିବା ଦିନଠୁଁ ସେ ଟିକିଏ ଅଫିମ ଧରିଛନ୍ତି । ବେଶୀ ନୁହେଁ, ଏଇ ହରଡ଼ ପ୍ରମାଣେ ଗୁଳିଟିଏ ପାଟିକି ପକାଇ ଦେଲେ ମନଟା ଚେଙ୍ଗା ହୋଇଯାଏ । ମାସକ ପାଇଁ କିଣେଇ ଆଣି କରାଟରେ ରଖି ଶୋଇବା ଘର ଥାକରେ ଥୋଇ ଦେଇଥାଆନ୍ତି । ସଞ୍ଜ ବେଳେ ହାଇ ଉପରେ ହାଇ କୁଟି ଦେବାକୁ ଆରମ୍ଭ କଲା ମାତ୍ରେ ସେ ଗୁଳି ଦାଗନ୍ତି । ତା' ପରେ ଖଟ ପାଖରେ ଗୋଡ଼ ଲମ୍ୱାଇ ବସି ମାଳିଟିକୁ ଉଠାଇ ନିଅନ୍ତି । ମାଳ ଘୁରୁଥାଏ, ତା' ସହିତ କୋଉ ପିଲା ନ ଖାଇ ଶୋଇ ପଡ଼ିଲା, ଗୁହାଳରେ ଧୂଆଁ ଦିଆ ହେଲା କି ନାହିଁ, ଗାଈ କେତେବେଳେ ଦୁହାଁ ହେବ – ଏଇସବୁ କଥା ତାଙ୍କ ମନ ଭିତରେ ଓଲଟ ପାଲଟ ହେଉଥାଏ । ମୋତିଆବିନ୍ଦୁ ହେଲା ଦିନୁଁ ଆଖିକି ଆଉ ସେତେ ଦୃଶ୍ୟ ହେଉ ନାହିଁ । ସଞ୍ଜ ପହରେ ଆଗଭଳି ସେ ବୁଲାବୁଲି କରିପାରନ୍ତି ନାହିଁ ।

ସେଦିନ ବି ସେମିତି ସିଏ ଅଫିମ କରାଟ ଖୋଜିବା ପାଇଁ ଥାକ ଆଡ଼କୁ ହାତ ବଢ଼େଇ ଥିଲେ । ଥାକ ଉପରେ ଥୁଆ ହେଇଚି କୋଥଳି । ତା' ଉପରେ ଧଳାଟାଏ କଣ ଦେଖା ଯାଉଚି ? ଆଲୁଅ ସ୍ୱିଚ୍‌ରେ ସେ କେବେ ବି ହାତ ମାରନ୍ତି ନାହିଁ । କାହାର ଲୁଗା କି ଡଉଲିଆ କୋଥଳି ଉପରେ ଥୁଆ ହୋଇଗଲାଣି । ଠାକୁର ଦେବତାଙ୍କ ପ୍ରତି ଏଗୁଡ଼ାକଙ୍କର ଟିକେ ହେଲେ ଭକ୍ତି ନାହିଁ । ମନେ ମନେ ସମସ୍ତଙ୍କୁ ଗାଳି ଦେଉ ଦେଉ ମୋତା ଦେଈ କୋଥଳି ଉପରୁ ଧଳା ଲୁଗାଟାକୁ ଉଠାଇ ଆଣିବାକୁ ହାତ ବଢ଼େଇଲେ... ତାଙ୍କ ହାତରେ ଲାଗିଲା... ହଇରେ ଅଲକ୍ଷେଣା ତୁ ! ତୁ ଆସି ମୋ କୋଥଳି ଉପରେ ବଇଚୁ । ମରିବାକୁ ତତେ ଆଉ ଜାଗା ମିଳିଲା ନାଇଁ ?

ବୁଢ଼ୀଙ୍କର କିଳିକିଳା ରଡ଼ି ଶୁଣି ବିଲ୍ ତିନି ଖେପାରେ ଡେଇଁ ବାହାରକୁ ପଳାଇଲା । ପାଟି ଶୁଣି ଘରୁ ସମସ୍ତେ ଆସିଲେ । ଆଲୁଅ ଜଳାଇ ଦେଖିଲେ ମୋତାଦେଈ କାଳିସୀନାଚ ନାଚୁଛନ୍ତି । ଏ ସତ୍ୟାନାଶିଆ ଘରେ ଧର୍ମ କର୍ମ ସବୁ ଗଲା.... ତାଙ୍କର କାୟା ଭ୍ରଷ୍ଟ ହୋଇଗଲା । କୁକୁର ତାଙ୍କର ଏତେ ଦିନର ଠାକୁର ଦେବତାଙ୍କୁ ଚାଟି ମାରା କରି ଦେଲାଣି । କୁକୁର ସଉକି ଦେଖୋଉଚନ୍ତି ! ଆଜି ଏ ଘରୁ ସେ ପୋଡ଼ ପାଡ଼ କୁକୁର ବିଦା ନ ହେଲେ ସେ ପାଣି ଛୁଇଁବେ ନାଇଁ । ଗଙ୍ଗା ଜଳରେ ଘର ଧୁଆ

ହେବ, ଚାରିଆଡ଼େ ଗଙ୍ଗା ପାଣି ଛିଞ୍ଚା ହେବ.... ତେବେ ଯାଇ ଘର ପ୍ରତିଷ୍ଠା ହେବ ମୋତାଦେଈ ସେଦିନ ଘରକୁ ନିଷ୍କଳୁଷ କରିବାକୁ ଆହୁରି ଅନେକ ବିଧାନ ଦେଇଥିଲେ ।

ଛଗଦାନନ୍ଦ ଚୁପ୍‌ଚାପ ସବୁ ଦେଖିଲେ । ରାଗିଯାଇ ଚିତ୍କାର କଲେ ବୁଲୁ ! ସଙ୍ଗେ ସଙ୍ଗେ ଉତ୍ତର ଆସିଲା.... ଆଗିଁଆ...

କୁକୁରକୁ କିଏ ଖୋଲିଲା ?

ଆମେ ଜାଣିନୁ– ଉତ୍ତର ଏଥର ଦ୍ୱୈତ କଣ୍ଠରୁ ଆସିଲା ।

ବିଲ୍ କୁଆଡ଼େ ଗଲା ?

ଆମେ ଦେଖିନୁଏ ଉତ୍ତର ମଧ୍ୟ ଦୁଇଟି କଣ୍ଠର ।

ଫେର୍ ଯଦି ତାକୁ ସଞ୍ଜ ପରେ ଖୋଲିବ, ତାହା ହେଲେ ତମର ଦିନେ କି ମୋର ଦିନେ । ପିଲାଙ୍କୁ ଧମକ ଦେବା ପରେ ଛଗଦାନନ୍ଦ ବୋଉଙ୍କୁ ବୁଝାଇବାକୁ ଆରମ୍ଭ କଲେ । ମୋତା ଦେଈ କାଉଁରିଆ କାଠି । ଥରେ ପାଟିରୁ ଯାହା ବାହାରିଗଲା ତ ଗଲା... ତାଙ୍କର ବାପ ଗୋଟାଏ କଥା ଗୋଟାଏ....

କଥା ସେ ଦିନ ବହୁତ ବାଟଯାଏ ଗଡ଼ିଥିଲା । ମୋତା ଦେଈ ପୁରୀ ଚାଲି ଯିବାର ଧମକ ଦେଇଥିଲେ । ଏମାନେ ଯଦି ଭାବୁଥାଆନ୍ତି, ବୁଢ଼ା ତାଙ୍କୁ ବାଟରେ ବସାଇ ଦେଇଯାଇଚି ବୋଲି, ଯେମିତି ନଚେଇବେ ସେମିତି ନାଚିବ – ସେ କଥାଟି ହେବାର ନୁହେଁ.... ଯୋଉ ଖୁଦକୁଣ୍ଡା ଟିକିଏ ପଡ଼ିଚି ସେଥିରେ ତାଙ୍କର ସାତଜନ୍ମ ଚଳିଯିବ.... ନ ହେଲେ ପଛେ ସେ ଭିକ ମାଗିବେ ଏ ଅନିଆଚାରୀ ଘରେ ରହିବେ ନାଇଁ ।

ଦ୍ୱିପାକ୍ଷିକ ଆଲୋଚନା ବହୁତ ବେଳଯାଏ ଚାଲିଲା । ଘରର ସମସ୍ତ ସଦସ୍ୟ ଭାଗ ନେଲେ । ଗୋଟିଏ ପକ୍ଷ ସର୍ତ୍ତ ପରେ ସର୍ତ୍ତ ବାଢ଼ିଲେ ଆରପକ୍ଷ ପ୍ରତଶ୍ରୁତି ପରେ ପ୍ରତିଶ୍ରୁତି ଦେଇ ଚାଲିଲେ । ଧୀରେ ଧୀରେ ଦୂରତ୍ୱର ଯେଉଁ ଖାଇ ସୃଷ୍ଟି ହୋଇଥିଲା, ତାହା ଭରି ଯିବାକୁ ଲାଗିଲା । ଦୁଇପକ୍ଷ ସହମତିର ଗୋଟିଏ ବିନ୍ଦୁରେ ପହଞ୍ଚିଗଲେ । କୁକୁର ମୋତା ଦେଈଙ୍କର ତ୍ରିସୀମାରେ ଦେଖା ପଡ଼ିବ ନାଇଁ... ଏଇ ସର୍ତ୍ତରେ ଦ୍ୱିପାକ୍ଷିକ ରାଜିନାମା ହୋଇଗଲା ।

କୁନ୍ତଳାଙ୍କୁ ସାକ୍ଷୀ ରଖି ମୋତା ଦେଈ ପ୍ରତିଜ୍ଞା ଭାଙ୍ଗିଲେ ।

ଏସବୁ ହେଲା ବେଳକୁ ରାତି ଅଧକୁ ବଳି ପଡ଼ିଥିଲା.. ।

ବିଲ୍ ଠାକିଗଲା । ପ୍ରତିଶ୍ରୁତି ଅନୁଯାୟୀ ଘର ଲୋକେ ତାକୁ ଯଥା ସମ୍ଭବ ଆକଟରେ ରଖିଲେ । ସେ ବି ବୁଝିଗଲାଣି ଘରର କେଉଁ ଅଂଶ ତା' ପାଇଁ ବିପଦ–ପୂର୍ଣ୍ଣ ଅଞ୍ଚଳ ଆଉ କେଉଁ ଜାଗା ନିରାପଦ... ବିଲ୍ ବଡ଼ ହେଉଚି... ।

ତାକୁ ଏବେ ଅଧିକ ସମୟ ବାନ୍ଧି ରଖାଯାଉଚି । ଡ୍ରଇଁରୁମ୍ ଝରକାରୁ ତା' ଚେନ୍ ଝୁଲୁଥାଏ । ସେଇଆକୁ କେନ୍ଦ୍ର କରି ଗୋଟିଏ ଅର୍ଦ୍ଧବୃତ୍ତ ଅଞ୍ଚଳ । ବିଲ୍ ପାଇଁ ଲକ୍ଷ୍ମଣଗାର । ସୀମା ଭିତରେ ସବୁ ସୁରକ୍ଷିତ । ସେଇଠୁ ବିଲ୍ ରାସ୍ତାର ବୁଲା ଗୋରୁଗାଈ, ବୁଲାବିକାଳୀଙ୍କ ଉପରେ ତମ୍ଭି ଦେଖାଏ । କୌଣସି ଦୁଃସାହସୀ କାଉ ତା'ର ଥାଳିଆଡ଼କୁ ମାଡ଼ି ଆସୁଥିବାର ଦେଖିଲେ, ଗୋଟାଏ ଗର୍ଜନରେ ତାକୁ ପାଭିଲିୟନକୁ ଫେରାଇ ଦିଏ । ନାଚପ୍ରିୟ ଗୁଣ୍ଡୁଚିଟି ଦୂରରୁ ତା'ର କାରଧାନି ଦେଖେ... ।

ପିଲାମାନେ ବଡ଼ ହେଉଥାଆନ୍ତି । ସେମାନଙ୍କର ପୃଥିବୀ ଧୀରେ ଧୀରେ ବିସ୍ତୃତ ହେଉଥାଏ । ପାଠର ଚାପ ବି ବଢୁଥାଏ । ସେମାନେ ଆଉ ବେଶୀ ସମୟ ବିଲ୍‌କୁ ଦେଇପାରନ୍ତି ନାହିଁ, ବିଲ୍ କିନ୍ତୁ ନିଜର କର୍ତ୍ତବ୍ୟ ଭୁଲେ ନାହିଁ । ସ୍କୁଲରୁ ଫେରି ବାରଣ୍ଡାକୁ ଉଠିବା ମାତ୍ରେ ସେ ଦୁଇ ଗୋଡ଼ରେ ଠିଆ ହୋଇଯାଇ ସେମାନଙ୍କୁ ସ୍ୱାଗତ କରେ । ସବୁ ଦିନେ ତାକୁ ନେଇ ପାର୍କରେ ବୁଲାଇବା ବି ସମ୍ଭବ ହୁଏ ନାହିଁ । ବନ୍ଧୁମାନେ ଆସିଯାଆନ୍ତି, କୋଉଠି କ'ଣ ଜରୁରୀ କାମ ପଡ଼ିଯାଏ । ବିଚରା କୁକୁରଟି ଭୁଲି ହୋଇଯାଏ ।

ଜଗଦାନନ୍ଦ କିନ୍ତୁ ନିଜ କର୍ତ୍ତବ୍ୟରେ ହେଳା କରନ୍ତି ନାହିଁ । ମର୍ଣ୍ଣିଂଓ୍ୱାକ୍‌ରେ ବାହାରିବା ମାତ୍ରେ ବିଲ୍ ତାଙ୍କ ସାଙ୍ଗ ଧରେ । କେବେ କେମିତି ଡେରି ହୋଇଗଲେ ଭୁକି ଭୁକି ମନେ ପକାଇଦିଏ । ବଉଁଶଟାଯାକ ବିଛଣାରେ ଥାଇ ଦାନ୍ତ କଡ଼ମଡ଼ କରନ୍ତି । ଓଃ–କି ବଦମାସ୍ କୁକୁରଟା ! ଶୁଆଇ ଦେବ ନାହିଁ ମଣିଷକୁ !

ବିଲ୍ ଏବେ ଶୋଇ ଶୋଇ ଘୁମାଏ । ନିୟମିତ ଭାବରେ ତାକୁ ଗାଧୋଇ ଦେବାକୁ କି ଟିଙ୍କ ଛଡ଼େଇବାକୁ କେହି ଆଗେଇ ଆସନ୍ତି ନାହିଁ । ଜଗଦାନନ୍ଦ ବୁଲୁକୁ ଡାକି ତାକୁ ଡାକ୍ତର ପାଖକୁ ନେବାକୁ କହନ୍ତି । ଆଜି ନେବି, କାଲି କୋଚିଂ କ୍ଲାସରୁ ଫେରିଲେ – ଏମିତି ହଉ ହଉ ଡେରି ହୋଇଯାଏ ।

ବିଲ୍ ଏବେ ଭଲ କରି ଖାଉ ନାହିଁ । ତା' ଦେହରୁ ରୁମ୍ ଝଡୁଚି... ବିଟିକିଟିଆ ଗନ୍ଧ ବାହାରୁଚି । ଡାକ୍ତର ପାଖକୁ ନେବା ଦରକାର, ଇଏ ତାକୁ ସିଏ –ଆଉ କାହାକୁ

ବରାଦ କରି ଦେଇ ଆପଣା କାମରେ ବାହାରି ଯାଆନ୍ତି । ଆଦେଶ, ଉପଦେଶ ବହୁତ ମିଳେ – କାମ ହୁଏ ନାହିଁ.... ।

ଘରେ କଥା ଉଠେ । ବିଲ୍‌ଟା ଏବେ ବୁଢ଼ା ହୋଇ ଗଲାଣି । ଭଲ କରି ଭୋକି ପାରୁନାହିଁ । ଚବିଶ ଘଣ୍ଟାରୁ ବାଇଶ ଘଣ୍ଟା ଶୋଉଚି.... ଏଇଟାକୁ ପୋଷି ଆଉ ଲାଭ ନାହିଁ । କୁଆଡ଼େ ଛାଡ଼ି ଦେଇ ଆସିଲେ ନୂଆଟାଏ ଆଣିବା ।

କୁନ୍ତଳାଙ୍କ ମନ ବିକଳ ହୁଏ । ବିଚରା ଅବୋଲା ଜୀବଟିଏ । ତା' ବେଳରେ ଯଥେଷ୍ଟ ସେବା କରିଚି । କାମ ଥିବାଯାଏ ଆଦର । ଯେମିତି ନି ପାରିଲା ହୋଇଗଲା । ସେମିତି ସମସ୍ତେ ତା' ଆଡୁ ମୁହଁ ଫେରେଇ ନେବେ... ମଣିଷର ଏଇ ହେଲା ଦସ୍ତୁର । କୁନ୍ତଳା ବ୍ୟସ୍ତତା ଭିତରେ ବି ବିଲ୍ କଥା ମନରେ ରଖନ୍ତି । ତା' ଖାଇବା ପିଇବା ଆଡ଼େ ଧ୍ୟାନ ଦିଅନ୍ତି । କାହା ଉପରେ ରାଗି କି କାହାକୁ ଖୋସାମଦ୍ କରି ବିଲ୍‌କୁ ଡାକ୍ତର ପାଖକୁ ପଠାନ୍ତି ।

ମୋଟା ଦେଇ ଆହୁରି ଦୁର୍ବଳ ହୋଇଗଲେଣି । ଦି'ଜଣ ଦୁଇଡେଣା ଧରି ନେଇ ଗୋଟିଏ ଜାଗାରେ ବସାଇ ଦିଅନ୍ତି । ବୁଢ଼ୀ ସେଇଠି ସେମିତି ଖରାରେ ବସିଥାଆନ୍ତି କି ମେଞ୍ଚାଟିଏ ହୋଇ ସପ ଖଣ୍ଡିକରେ ପଡ଼ିଥାଆନ୍ତି । ଖାଇବା ବେଳ ହେଲେ କିଏ ଆସି ଥାଳିଟିଏ ତାଙ୍କ ଆଗରେ ଥୋଇ ଦେଇ 'ମାଆ : ଉଠ, ଖାଅ' କହି ଦେଇ ଚାଲିଯାଏ । ମୋଟା ବଡ଼ କଷ୍ଟରେ ଉଠନ୍ତି । ଚଢ଼େଇ ଟୋକିଲା ପରି କ'ଣ ଦି'ଥର ପାଟିକି ନେଇ ପୁଣି ଗଡ଼ି ପଡ଼ନ୍ତି । ଦିନେ ଦିନେ ଥାଳି ସେମିତି ଥୁଆ ହୋଇଥାଏ । କାଉ କି ବିଲେଇ ଆସି ମୁହଁ ମାରନ୍ତି । କାହା ଆଖିରେ ପଡ଼ିଲେ, କିଏ ପାଟି କରି ଉଠେ । ଦୋଷ ହୁଏ ମୋଟା ଦେଈଙ୍କର । ଖାଇବାର ଇଚ୍ଛା ନ ଥିଲେ ସେଇଆ କହି ଦେଲେ ହୋଇଥାଆନ୍ତା.... ଆଜିକାଲି ଏ ମଲା ମାଇଲା ଯୁଗରେ ଖାଇବାର ନଷ୍ଟ ! ଯିଏ କମେଉଛି ସିଏ ସିନା ବୁଝିବ !

ଘର ଲୋକେ କଥାବାର୍ତ୍ତା ହୁଅନ୍ତି । ମାଆର ବୟସ ହେଲାଣି । ଅଣନାତି ଦେଖିଲାଣି । ଆଉ କଣ ଦେଖିବ ବୋଲି ଅନେଇ ବସିଚି ? ଜୀବନ ଯାଉ ନାଇଁ... କ'ଣ ପାଇଁ ଆଉ ଅଟକିଚି କିଏ ଜାଣେ ? ଦଶଦାନ ନେଇ ବଂଚି ରହିବା କେଡ଼େ ଖରାପ କଥା, କୁଳକୁ ହାନି ଏ କଥା ବୁଝିଲେ ସିନା !

ମୋଟା ଦେଇ ବୁଝିପାରନ୍ତି । ଏଇ ଘର ସେ ନିଜେ ଗଢ଼ିଥିଲେ । ଛିଣ୍ଡା କନା ଖଣ୍ଡକ ପାଟକନା କରି ଘରେ ସାଇତୁ ଥିଲେ । ଉପର ମନ୍ଦାକ ପିଇ ତକ ତକ ଥୋଇ

ଦେଉଥିଲେ । କଣନା ପିଲାଏ ଖାଇବେ । କାଉ କା ନ କରୁଣୁ ଉଠି ରାତି ଅଧଯାଏ ଚର୍କି ପରି ଘୁରୁଥିଲେ । ସବୁଠୁ ସବୁ ସମ୍ପାଦି ଘର ଠିଆ କରି ଥିଲେ ବୋଲି ଆଜି ପିଲାମାନେ ଘର ପରିଚୟରେ ଛାତି ଫୁଲେଇ ବାଟ ଚାଲୁଛନ୍ତି ଏମାନେ ବୁଝନ୍ତି ନାହିଁ ସିଏ ଖାଲି ମଣିଷଟିଏ ନୁହନ୍ତି– ପରମ୍ପରାର ଗୋଟାଏ ବଳିଷ୍ଠ ଧାରା–ଅନନ୍ତକାଳରୁ ଏମିତି ବହି ଚାଲିଛନ୍ତି । ଯୋଉ ଦିନ ସେ ବିଦାୟ ନେବେ ସେଦିନ ସେତକ ସବୁଦିନ ପାଇଁ ଶୁଖିଯିବ ।

ମୋତାଙ୍କ କାନରେ ବିଲ୍‌ର କାନ୍ଦ କେତେବେଳେ କେମିତି ଶୁଣାଯାଏ । ଶୁଣନ୍ତି, ତାକୁ କୁଆଡ଼େ ରୋଗ ହୋଇଚି ଦେହସାରା ଘା' ଚରିଗଲାଣି... ରୁମ ଝଡ଼ିଯାଇ କେଡ଼େ ଭୟଙ୍କରିଆ ଦେଖାଯାଉଚି । ଖିଆପିଆ ଛାଡ଼ି ଦେଲାଣି ଯେ ଭଲମନ୍ଦ ଖାଇବାକୁ ଭାରି ମନ । ମରୁ ନାହିଁ ଅଲକ୍ଷେଣା ଦହଗଞ୍ଜ କରୁଚି ଖାଲି... ।

କୁକୁର ଆଉ ମଣିଷ... ଗୋଟିଏ ସମୟରେ ପରିବାର ସେମାନଙ୍କ ମୁଣ୍ଡରେ ବସେଇଥିଲା । ସେମାନେ ବି ପତ୍ରଫୁଲ ଫଳ ଆଉ ଛାଇ ଦେଇ ପରିବାରକୁ ଘୋଡ଼ାଇ ରଖିଥିଲେ । ଛାଇ ତଳିଆ ଶାନ୍ତିରେ ଘର ଲୋକେ ପୁଲକିତ ଥିଲେ । ଦୂରରୁ କେବେ ଦେଖିଥିଲେ ସିନା ସେମାନେ ତାଙ୍କର ବିସ୍ତାର ଦେଖିଥାଆନ୍ତେ !

କୁନ୍ତଳା କାମଦାମ ସାରି ପାଖରେ ବସନ୍ତି । ଗୋଡ଼ରେ ମୁଣ୍ଡରେ ହାତ ମାରିଦିଅନ୍ତି । କୁକୁର ବି ତାଙ୍କ ବେକରେ ବନ୍ଧା । ସିଏ ଥୋଇ ନ ଦେଲେ ଗୁଣମଣି ଆଉ କାହା ହାତରୁ ପାଣି ନ ଛୁଅନ୍ତି । କୁନ୍ତଳାଙ୍କ ମନ ବି ତା' ପାଇଁ ତଟେ । ପଶୁ ଜାତି କଥା କହି ପାରୁଥିଲେ ସେ ନିଜକୁ ଜାହୀର କରୁଥାଆନ୍ତା, ଉପକାରର ପ୍ରତ୍ୟୁପକାର ଦାବୀ କରୁ ଥାଆନ୍ତା । ଅଧିକାର ଦେଖାଉ ଥାଆନ୍ତା । ନୀରବତାକୁ ସୁନା ପାଣିରେ ଧୋଇ ଖଟୁଲିରେ ଥୋଇ ପୂଜା କରାଯାଇ ପାରେ । ଠାକୁରଙ୍କର କୋଉ ମର୍ଜି ଥାଏ ?

ଦୁଇଦିନ ପାଇଁ ସାନ ଯାଆ ହାତରେ ଘରର ଦାୟିତ୍ୱ ଦେଇ କୁନ୍ତଳା ଭାଇ ପାଖକୁ ଯାଇଥିଲେ । ଆସି ଶୁଣିଲେ ବିଲ୍ ମରିଯାଉଚି । କୁନ୍ତଳାଙ୍କୁ କାନ୍ଦ ମାଡ଼ିଲା... ସେ ବାହାରକୁ ଯାଉଛନ୍ତି ବୋଲି ବିଲ୍ ବୋଧହୁଏ ଜାଣି ପାରିଥିଲା । ସେଥିପାଇଁ କେଡ଼େ କଷ୍ଟରେ ଦି' ଗୋଡ଼ରେ ଠିଆ ହୋଇ ତାଙ୍କୁ ଆଗୁଳିବାକୁ ଚେଷ୍ଟା କରୁଥିଲା । ଯେମିତି କହିବାକୁ ଚାହୁଁଥିଲା ତମେ ଯାଅ ନାହିଁ... ଏମାନେ ମୋତେ ପାଣି ଟୋପାଏ ଦେବେ ନାହିଁ..... ।

କୁନ୍ତଳା ଯିବା ପରେ ପରେ ଖୋଲାଫାଟକ ବାଟେ ବାହାର କୁକୁର ପଶି ବିଲ୍‌କୁ ଖଣ୍ଡିଆ ଖାବରା କଲେ । ତା'ର କରୁଣ କାନ୍ଦଣା କାହାରି କାନରେ ପଡ଼ିଲା ନାହିଁ.... ପୁରୁଷମାନେ ଯେଝା କାମରେ ଯିଏ.... ବାହାରେ – ନାରୀମାନେ ଯେଝା ଘରେ ଯିଏ ବିଛଣାରେ, ଶୁଣନ୍ତା କିଏ ?

ପାଞ୍ଚଟା ବେଳେ ଲହୁଲୁହାଣ ବିଲ୍ କାହା ଆଖିରେ ପଡ଼ିଲା.... ଖୋଳତାଡ଼ ହେଲା । ଖରାବେଳେ ସେ ଭଲ ଥିଲା.... ସମସ୍ତେ ଦେଖିଛନ୍ତି.... ତା' ପରେ ନିଶ୍ଚେ ବାହାରର ବୁଲା କୁକୁର ହତାରେ ପଶିଛନ୍ତି... ଘରେ ଏତେ ଲୋକ–କାହାରି ଆଖିରେ କି କାନରେ ପଡ଼ିଲା ନାହିଁ ?

ଦ୍ୱିତୀୟ ବୋହୂ କାମିନୀ ଗର୍ଜି ଗର୍ଜି ଆସିଲେ । ଘର ସମ୍ଭାଳିବାକୁ ସେ କିଛି ଠିକା ନେଇ ନାହାନ୍ତି । ଏଠି ସକାଳୁ ସଞ୍ଜଯାଏ ଖଟି ଖଟି ତାଙ୍କର ପ୍ରାଣ ଗଲାଣି ଘର ଭିତରେ ଗୋଟାଏ ଦରମଲା ବୁଢ଼ୀ ଆଉ ବାହାରେ ଗୋଟାଏ ରୋଗଣା କୁକୁର । ପାଖକୁ ଗଲେ ପେଟର ଭାତ ବାହାରକୁ ବାହାରି ଆସୁଚି । ସେ କାହାରି ଚାକରାଣୀ ନୁହନ୍ତି... ଯାହାର ମନ ହଉଚି, ସେ ସେମାନଙ୍କୁ କୋଳରେ ପୂରାଇ ବସୁ... ।

କଥା ବଢ଼ିଯାଏ । ଜଗଦାନନ୍ଦ ରାଗିଯାଆନ୍ତି । ମୋତା ଦେଇ ତାଙ୍କର ମାଆ... ତାଙ୍କ ପାଇଁ କାହାର କିଛି କରିବାର ଦରକାର ନାହିଁ । ଯେତିକି ପାରିବେ ସେ ନିଜେ କରିବେ... ରାତିରେ କିଛି ଖାଆନ୍ତି ନାହିଁ । ପୁଅମାନେ ଆଲୋଚନା କରନ୍ତି । ବାପା – ବୁଢ଼ା ହେଲେଣି । କିଛି ବୁଝୁ ନାହାଁନ୍ତି । ପାନରୁ ଚୂନ ଖସିଲେ ଘରେ ଅଶାନ୍ତି କରୁଛନ୍ତି । ଏମିତି ହେଲେ କେମିତି ଚଳିବ ?

ବିଲ୍ କଥା କାହାରି ମନେ ପଡ଼େ ନାହିଁ । ସେ ବାରଣ୍ଡାରେ ତା' ନିଜ ଜାଗାରେ ଶୋଇ ରହେ । ଏ ଘରେ ପାଦ ଦେଲା ଦିନୁ ତାକୁ ଚୌହଦୀ ଚିହ୍ନାଇ ଦିଆଯାଇଥିଲା... ସେ ବାହାରର ଲୋକ, ଭିତର ଆଡ଼କୁ ନଜର ପକାଇଲେ ସମସ୍ୟା ହେବ... ନିଜ ସୀମା ବୁଝି ସେ ଏ ଘରେ କାରବାର ହେଉଥିଲା... ଥରେ ଅଧେ ଛଡ଼ା ତା' ପାଇଁ ପରିବାରରେ ସମସ୍ୟା ହୋଇନାହିଁ.... ।

ମୋତା ଦେଇଙ୍କି ବିଲ୍ ଭଳି ଚେନରେ ବାନ୍ଧି ବାହାର ବାରଣ୍ଡାରେ ରଖି ହୁଏ ନାହିଁ । ସେ ଘର ଭିତରର ମଣିଷ । ତାଙ୍କର ଗୋଟାଏ ଘର ଅଛି । ଘରୁ ତାଙ୍କୁ ଏ ପର୍ଯ୍ୟନ୍ତ ବି ହଟା ଯାଇ ପାରି ନାହିଁ । ପରିବାର ବଢ଼ିବା ସାଙ୍ଗେ ସାଙ୍ଗେ ଘର ଅକୁଳାଣ

ହେଉଛି । ମୋତା ଦେଇ ଚାଲିଗଲା ପରେ ସେ ଘରଟି କେମିତି ଉପଯୋଗ କରାଯିବ, ସଂସାରୀ ମଣିଷ କେବେଠୁଁ ତା'ର ଛକ କାଟି ରଖିଚି । ହେଲେ ସେ ଯାଉ ନାହାନ୍ତି ପରିବାରର ଛୋଟ ବଡ଼ କଥାରେ ମୁଣ୍ଡ ପୁରେଇ ଘରେ ଅଶାନ୍ତି କରୁଛନ୍ତି । ବାପା ବି ସେମିତି । କଥା କଥାକେ ରାଗ ରୁଷା, ଅନଶନ... ଏମିତିରେ କେତେ ଦିନ ଚଳିବ ?

ରାତି ଅଧରେ ଲୁଲୁର ମନେପଡ଼େ । ଗୋଳମାଳ ଭିତରେ ବିଲ୍ କଥା ସମସ୍ତେ ଭୁଲି ଯାଇଛନ୍ତି । ରୋଗଣା କୁକୁରଟି ନ ଖାଇ ନ ପିଇ ଶୀତ କାକରରେ ପଡ଼ିଚି । ଅସହାୟ ଶୈଶବ କାନ୍ଦ କାନ୍ଦ ହୋଇ ଆଖି ଆଗରେ ଆସି ଠିଆ ହୁଏ । ତାକୁ କୋଳକୁ ନେବା ପାଇଁ କାତର କଣ୍ଠରେ ଅନୁରୋଧ କରେ ।

ଲୁଲୁର ଆଖି ଛଳ ଛଳ ହୋଇଯାଏ । ସେ ବିଛଣା ଛାଡ଼ି ଉଠିଯାଏ । ବିଲ୍ ଠିକ୍ ଦୁଇଟି ଦିନ ବଂଚିଥିଲା । କୁନ୍ତଳା ରିକ୍‌ସାରୁ ଓହ୍ଲାଇ ତା' ପାଖକୁ ଗଲେ । ବିଲ ବଡ଼ କଷ୍ଟରେ ମୁଣ୍ଡ ଉଠାଇ ତାଙ୍କ ଆଡ଼କୁ ଅନାଇଲା.... କୁନ୍ତଳାଙ୍କ ପ୍ରାଣ ମନ୍ଥି ହୋଇଗଲା.... ।

ଶୁଣିଲେ ଦୁଇଦିନ ହେବ ବିଲ୍ ପେଟରେ କିଛି ରହୁନାହିଁ । ଯାହା ଖାଇଲେ ବି ବାନ୍ତି ହୋଇଯାଉଚି । ପଶୁ ଡାକ୍ତରଙ୍କୁ ଖବର ଦିଆଯିବ ବୋଲି ଠିକ୍ ହୋଇଚି । ଆଜି ଯେମିତି ହେଲେ ତାଙ୍କୁ ଧରି ଆଣିବାକୁ ହେବ ।

ବିଲ୍ କିନ୍ତୁ ସେଯାଏ ଅପେକ୍ଷା କଲା ନାହିଁ । କୁନ୍ତଳାଙ୍କ ହାତରୁ ଗରମ ଦୁଧ ଚାମୁଚେ ଢୋକୁ ଢୋକୁ ତା'ର ମୁଣ୍ଡ ଗୋଟିଏ ପଟକୁ ଢଳିଗଲା । କୁନ୍ତଳାଙ୍କ ଆଖିରୁ ଲୁହ ଝରି ପଡ଼ିଲା.... ।

ସାତ ବର୍ଷ ତଳର ଗୋଟିଏ ଉଜ୍ଜଳ ଦିନ ତାଙ୍କର ମନେ ପଡ଼ିଲା । ମେଞ୍ଚାଏ ପିଞ୍ଜା ତୁଳା ଭଳି ଏଡ଼େ ଟିକିଏ ଜନ୍ତୁ, କୋଉ ପାହାଡ଼ିଆ ମୂଳକରୁ ଏ ଘରକୁ ଆସିଥିଲା.... ଜୁଳୁଜୁଳୁ କରି ଅନାଉଥିଲା... ଘର ଭିତରେ ଏଠୁ ସେଠିକି ଦଉଡ଼ିଗଲା ବେଳେ ଜଣା ଯାଉଥିଲା ସତେ ଯେମିତି ଉଲଗୁଳାଟିଏ ଗଡ଼ିଯାଉଚି ।

ସେଦିନ ଘରସାରା ଲୋକେ ତାକୁ ଘେରି ଠିଆ ହୋଇଥିଲେ । ଆଜି କେହି ପାଖ ପଶୁ ନାହାନ୍ତି । ମେହେନ୍ତରକୁ ଖବର ଦେବା କଥା ବିଚାର କରାଯାଉଚି ।

କୁନ୍ତଳା କେମିତି ଅସ୍ୱସ୍ତି ଅନୁଭବ କରୁଛନ୍ତି । କିଛି ନ ହେଲେ ଉପକାରୀ ପ୍ରାଣୀଟିଏତ । ସାତବର୍ଷ ଏ ଘରର ସେବା କରିଚି । ପିଢ଼ାରେ ବାଉଁଟିଏ ବସାଇ

ଦେଇନାହିଁ । ଶେଷରେ ତାକୁ ଶାଗୁଣା ଖାଇବେ ? ଏଇଆ ଏମାନଙ୍କର ବୁଦ୍ଧି !!

ମୋତାଦେଈଙ୍କୁ କେହି ବିଲ୍ କଥା କହିନାହାନ୍ତି । ଏବେ କୋଉ କଥା ବା ତାଙ୍କୁ କିଏ କହୁଚି ? ଖଟୁଲୀରେ ବସିଥିବା ଦେବତା ବି ସକାଳେ ପାଣି ଛୁଇଁଲାଏ, ସଞ୍ଜରେ ଧୂପ କାଠିଟାଏ ପାଉବନ୍ତି । ତାଙ୍କ ଭାଗ୍ୟରେ ସବୁ ଦିନେ ତା'ବି ଜୁଟୁଚି କୁଆଡ଼ୁ ?

ମୋତାଦେଈ କୁନ୍ତଳାଙ୍କୁ ପାଖକୁ ଡାକିଲେ । ଥର ଥର କଣ୍ଠରେ କହିଲେ, ବୋହୂ କୁକୁରଟାକୁ ବିଲପଡ଼ିଆରେ ଫୋପାଡ଼ି ଦବାକୁ ସେମାନଙ୍କୁ ମନା କର । ଏ ଘରର ଜଣେ ହେଇ ଏତେ ବରଷ ସେ ଏଠି ଚଳିଲା.... ଆଜି ତାକୁ ଏମିତି ଅଭେକା ପରି ଫୋପାଡ଼ି ଦେଲେ, ତା'ର ଅପଶାଇପ ପଡ଼ିବ ନାହିଁ ?

ମୋତାଙ୍କ କାଠୁଆ ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ ।



## ଶତ୍ରୁ

ପିଲାଟି ଦିନରୁ ଅନ୍ୟକୁ ଯନ୍ତ୍ରଣା ଦେଇ ତା'ର ପ୍ରତିକ୍ରିୟା ଲକ୍ଷ୍ୟ କରିବାରେ ଦୁଃଖୀଶ୍ୟାମଙ୍କର ଭାରି ଆନନ୍ଦ । ଦୁଇ ଚାରିଥର କୁକୁରର କାମୁଡ଼ା ଆଉ ବିଲେଇର ଆଞ୍ଚୁଡ଼ା ଖାଇ ଏ କଥା ମଧ୍ୟ ବୁଝିଯାଇଥିଲେ ଯେ, ଯେଉଁମାନଙ୍କର ନଖ, ଦାନ୍ତ କି ଶିଙ୍ଗ ଅଛି, ସେଭଳି ବଳୁଆ ଜନ୍ତୁଙ୍କ ସାଙ୍ଗରେ ଲାଗିବାରେ ବିପଦ ଅଛି । ଦୁଧ ପିଉଥିବା ବାଛୁରୀକୁ ମାଆ ପାଖରୁ ଟାଣି ଆଣି ଗୋଟିଏ ଶକତ ଲାତ ଖାଇବା ପରେ ତାଙ୍କର ଏହି ମହା ଶିକ୍ଷା ହୋଇଥିଲା ଯେ, ବଳବାନ୍ ଶତ୍ରୁ ପାଖରୁ ସତର୍କ ଦୂରତ୍ୱ ରକ୍ଷା କରି ଚାଲିବାରେ ହିଁ ଜୀବନର ସାର୍ଥକତା ।

ଦୁଃଖିଶ୍ୟାମ ତେଣୁ ନିଜ ସାମ୍ରାଜ୍ୟର ପ୍ରଜାମାନଙ୍କୁ ବଦଳାଇ ଦେଇଥିଲେ । ଯେଉଁଠି ପ୍ରତିବାଦ କିମ୍ବା ଜବାବ୍ ଦେହି କରିବାର ପ୍ରଶ୍ନଉଠେ, ସେଠି ପ୍ରଜା ଶାସନ ବଡ଼ କଷ୍ଟକର ହୋଇପଡ଼େ । ହାତରେ ସରୁ କଣି ଖଣ୍ଡେ ଧରି ବାଡ଼ି ବଗିଚାର ମୂକ ଗୁଳ୍ମ ଲତାଙ୍କୁ ବୀରରସପୂର୍ଣ୍ଣ ଓଜସ୍ୱିନୀ ଭାଷାରେ ସେମାନଙ୍କ କଳ୍ପିତ ଅପରାଧର ବିବରଣୀ ଶୁଣାଇ ଯେତେ ଦଣ୍ଡ ଦେଇଗଲେ ବି ସେମାନେ ପାଟି ଫିଟାନ୍ତି ନାହିଁ । ଜଙ୍ଗିଟିଏ କି ପ୍ରଜାପତିଟିଏ ଧରି ସେମାନଙ୍କର ପକ୍ଷଚ୍ଛେଦନ କରି ଫୋପାଡ଼ି ଦେଲେ କେହି କିଛି କହନ୍ତି ନାହିଁ । ପିମ୍ପୁଡ଼ି, ଜହ୍ଲାଙ୍କୁ ଗୋଡ଼ରେ ଯେତେ ଦଳିଲେ ବି ସେମାନଙ୍କ ପିଠିରେ ପଡ଼ିବାକୁ କେହି ନ ଥାଏ । କୁକୁର କି ବିଲେଇ ଛୁଆ, ବଣି କି ପାରା.... ଏମାନେ ଆପାତତଃ ନିରୀହ ପ୍ରଜା । ତେବେ ବିରୁଡ଼ି କି ମହୁମାଛି ? ସେମାନଙ୍କର ନାହୁଡ଼କୁ ଦୂରୁ ଜୁହାର... ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ଦୁଃଖୀଶ୍ୟାମଙ୍କର ସାମ୍ରାଜ୍ୟ ବିସ୍ତାର ଚାଲିଥାଏ । କ୍ରମଶଃ ସେଥିରେ ବିଛା (କଙ୍କଡ଼ା ବିଛା ନୁହେଁ), ତେଲୁଣିପୋକ, ଗଉଡୁଣୀ ପୋକ,

ସାଧବବୋହୂ, ଢିଆ, ମଶା, ମାଛି... ଇତ୍ୟାଦି ଯୋଗଦେଇ ଏକ ବିଶାଳ ସାମ୍ରାଜ୍ୟର ପତ୍ତନ କରନ୍ତି । ଏଇମାନଙ୍କ ସେବାରେ ଲାଗି ରହି ଦୁଃଖୀଶ୍ୟାମଙ୍କୁ ଦିନରାତି ଅଣ୍ଟେ ନାହିଁ । ତାଙ୍କ ଦରବାରରେ ସବୁ ଅପରାଧର ଶାସ୍ତି ଗୋଟିଏ । ଖାଇଲାବେଳେ ତାଙ୍କୁ ହଇରାଣ କରିଥିବା ମାଛିଟିକୁ ଚରମ ଦଣ୍ଡ ଶୁଣାଇ ବିଚିତ୍ର କୌଶଳରେ ସମଗ୍ର ମାଛିକୁଳକୁ ପ୍ରଲୋଭନ ଦ୍ୱାରା ଏକତ୍ରିତ କରାଇ ସଂହାର କରିବା କିମ୍ବା ନିଦ୍ରିତ ଦୁଃଖୀ ଶ୍ୟାମଙ୍କ କାନରେ ଅକସ୍ମାତ ପ୍ରବେଶ କରି ତାଙ୍କୁ ପୀଡ଼ା ଦେଇଥିବା କୌଣସି ପଥଭୁଲା ପିମ୍ପୁଡ଼ିର ଅପରାଧରେ ସମଗ୍ର ପିମ୍ପୁଡ଼ି ସୃଷ୍ଟିକୁ ନିପାତ କରିବା ପାଇଁ ପରଶୁରାମଙ୍କ ଭଳି ଶପଥ ଗ୍ରହଣ କରିବା.... ଏହାରି ଭିତରେ ତାଙ୍କର ସମଗ୍ର ବାଲ୍ୟ ଓ କୈଶୋର କଟିଯାଏ ।

ବୋଉ କେତେବେଳେ କେଜାଣି ଥରେ ତାଙ୍କୁ କହିଥିଲେ – ତୁ କେଡ଼େ ନିଷ୍ଠୁରଟାଏରେ ! ବୋଉ ସହଜେ ନାରୀ ଜାତି– ପୁଣି ନିରୀହ, ମୂକ, ଘରକଣରେ ରହୁଥିବା ଜୀବଟିଏ । ହୃଦୟଟି ଏକେବାରେ ପାଚିଲା ଆମ୍ବ ଭଳି ଲୁତୁପୁତୁ । ଆଖିରେ ଲୁହ ଅଛି, କିନ୍ତୁ ପାଟିରେ ପ୍ରତିବାଦ ନାହିଁ । ପ୍ରଜା ହିସାବରେ ଏକେବାରେ ଆଦର୍ଶ ସ୍ଥାନୀୟ । ବିଚାରକ ଆସନରେ ବସି ସେତ ଆଉ ବୋଉ ବୋଲି ପକ୍ଷପାତ ଦେଖାଇ ପାରିବେ ନାହିଁ । ଭୁଲ୍ କଲେ ଦଣ୍ଡ ଅବଶ୍ୟ ଭୋଗିବାକୁ ହେବ । ବିଚାରକ ପାଖରେ ଆଖି ପାଣିର ବା ମୂଲ୍ୟ କ'ଣ ?

ଏହାରି ଭିତରେ ଯୌବନ ଆସିଗଲା । ଏତେ ଦିନର ପ୍ରତିଷ୍ଠିତ ସାମ୍ରାଜ୍ୟ ଛାଡ଼ି ଦୁଃଖୀଶ୍ୟାମଙ୍କୁ ନୂତନ ସାମ୍ରାଜ୍ୟର ଅନୁସନ୍ଧାନରେ ସହରକୁ ଆସିବାକୁ ପଡ଼ିଲା । ଏଠାରେ ପ୍ରତ୍ୟେକଙ୍କର ସାମ୍ରାଜ୍ୟ ଅତ୍ୟନ୍ତ ସୁରକ୍ଷିତ । ସୀମା ମଧ୍ୟ ସୁନିର୍ଦ୍ଦିଷ୍ଟ । ଅନ୍ୟର ଅନୁପ୍ରବେଶକୁ କେହି ନୀରବରେ ସହି ନିଅନ୍ତି ନାହିଁ ! ସେ ଭଳି କ୍ଷେତ୍ରରେ ବିରୋଧ ହୁଏ, ଯାହାର ଶେଷ ହୁଏ ଶତ୍ରୁତାରେ ।

ଦୁଃଖୀଶ୍ୟାମ ଆହୁରି ବୁଝିଲେ, ଦୁନିଆ ହେଉଛି ଏକ ବିରାଟ ଶତ୍ରୁ ରାଜ୍ୟ । ଦୁଇ ପ୍ରକାର ଶତ୍ରୁ ଏଠି ଚଳପ୍ରଚଳ ହୁଅନ୍ତି । କିଛି ଅଛନ୍ତି, ନିଜର ମନୋଭାବକୁ ମୋଟେ ଲୁଚାଇ ରଖିପାରନ୍ତି ନାହିଁ । ସେମାନଙ୍କ ହିସାବରେ ଯେତେବେଳେ ଦୁଇରେ ଦୁଇ ମିଶି ପାଞ୍ଚ ହୁଏ, ସାରା ଦୁନିଆ ତାକୁ ମାନି ନେବାକୁ ବାଧ୍ୟ । ଅନ୍ୟ କେହି ଏମାନଙ୍କର ବାଟ କାଟନ୍ତୁ, ଏମାନେ କଦାପି ତାହା ଚାହାନ୍ତି ନାହିଁ । ଏମାନଙ୍କ ଦର୍ଶନରେ 'ଠେଙ୍ଗା ସର୍ବାର୍ଥ ସାଧିକାଃ' – ଏମାନେ ଦୃଶ୍ୟମାନ । ଆଉ ଥୋକେ ଅଛନ୍ତି, ବିନୟର ଏକେବାର

ସାକ୍ଷାତ୍ ଏକାଦଶ ଅବତାର । ଦିନରେ ଦଶଥର ପାଦ ଧରୁଥିବେ, ପୁଅମୁଣ୍ଡରେ ହାତ ଥୋଇ ନିୟମ କରୁଥିବେ– ଅଥଚ ଠିକଣା ଜାଗାରେ ଠିକ୍ ବେଳରେ ଏଭଳି ସୁଇଚ୍‌ଟିଏ ଟିପିଦେବେ ଯେ, ଅସତର୍କ ବିଚରା ଏପରି କଂସ କଚଡ଼ା ଖାଇବେ ଯେ ଜୀବନସାରା ଆଉ ଉଠି ପାରିବେନି । 'ଆତ୍ମା କୁଶଳେ ସର୍ବସିଦ୍ଧି' – ଏହା ହେଲା ସେମାନଙ୍କ ଜୀବନର ମୂଳମନ୍ତ୍ର । 'ବଚନମଧୁର ତିଳକ ସରୁ' ପ୍ରଭୃତି ଅନେକ ଭଲ ଭଲ ବିଶେଷଣ ଏମାନଙ୍କ ପାଇଁ ଖୋଜାଯାଇଛି । ପଛରୁ ଛୁରୀ ଚଳୋଉଥିବା– ଏମାନେ ଅଦୃଶ୍ୟ ହୋଇଥିବାରୁ ଅଧିକ ଭୟଙ୍କର । କାହାର କିଛି ଟିକିଏ ଭଲ ହେଉଥିବାର ଶୁଣିଲେ, ଏମାନେ ବିଷର୍ଣ୍ଣ ହୋଇପଡ଼ନ୍ତି । ଅନ୍ୟର କ୍ଷତି ଦର୍ଶନ ଶ୍ରବଣ ବା କରଣରେ ଏମାନଙ୍କର ପ୍ରଭୂତ ଆନନ୍ଦ ।

ଏହିଭଳି ଦୁନିଆରେ ପାଦ ଚିପି ଚିପି ଆଗେଇବାକୁ ପଡ଼ିବ । ତା' 'ଯସ୍ମିନ୍ ଦେଶେ ଯଦାଚାର ।' ଦୁଃଖୀଶ୍ୟାମ ବାବୁ ବି ଆଗୋଉଛନ୍ତି । ଶିକ୍ଷାୟତନ, କର୍ମକ୍ଷେତ୍ର ପ୍ରଭୃତିରେ ଜୀବନ ସମ୍ପର୍କରେ ଯେଉଁ ଅନୁଭବ ହୋଇଛି, ସେ ଅନ୍ୟ ଏକ ମହାଭାରତ । ଚାକିରିରୁ ଅବସର ନେବାପରେ ଭାବୁଥିଲେ, ବାକିତକ ଜୀବନ ନିର୍ଦ୍ୱନ୍ଦ୍ୱରେ କଟାଇଦେବେ । ଜୀବନସାରାତ ଲଢ଼ିଲେ । ଏଥର ଆଉ ସଂଗ୍ରାମ ପାଇଁ ଶକ୍ତି ନାହିଁ । ରୁଚି ବି ନାହିଁ । ଅସ୍ତ୍ର ସମ୍ବରଣର ବେଳ ଆସିଯାଇଛି । ବିଶାଳ ଏଇ ଶତ୍ରୁ ପୁରୀରେ ଧ୍ୟାନମଗ୍ନ ଗୋଟିଏ ଦିନ କଟାଇବା ଯେ କିଭଳି ଦୁଷ୍କର ତାହା ଏବେ ସେ ବୁଝୁଛନ୍ତି । ଅଥଚ ଏଇ ସମୟ ପାଇଁ ସେ କର୍ମ ଜୀବନର ଆରମ୍ଭରୁ ଉନ୍ମୁଖ ହୋଇଥିଲେ ।

ଶତ୍ରୁ ପୁଣି ନୂତନ ରୂପରେ ତାଙ୍କର ଜୀବନକୁ ଦୁର୍ବିସହ କରିଦେଇଛି । ସକାଳ ଆରମ୍ଭ ହେବା ମାତ୍ରେ ଆରମ୍ଭ ହୋଇଯାଉଛି ତା'ର ଦୌରାତ୍ମ୍ୟ । କେତେବେଳେ ଗ୍ରୀଲ୍ ବାଟେ, କେତେବେଳେ ଝରକା ବାଟେ, କେତେବେଳେ ଅବା ଖୋଲା ଦ୍ୱାର ବାଟେ ଏଇ ଦୁର୍ଦ୍ଧର୍ଷ ଶତ୍ରୁ ପରିବାରର ଶାନ୍ତିକୁ ହତ୍ୟା କରିବା ପାଇଁ ଅକ୍ଳାନ୍ତ ଉଦ୍ୟମ ଚଳାଇ ଯାଉଛି । ଜିନିଷପତ୍ର ଫିଙ୍ଗା ଫୋପଡ଼ା ଯାଉଛି, ଖାଦ୍ୟଦ୍ରବ୍ୟ ଆତ୍ମସାତ୍ କରାଯାଉଛି କିମ୍ବା ନଷ୍ଟ କରିଦିଆଯାଉଛି । ଶତ୍ରୁ ଜାତୀୟ ଏଇ ଜୀବଟିର 'ଫ୍ରିଜ୍' ନାମକ ଶୀତଳ ଭଣ୍ଡାର ପ୍ରତି ବିଶେଷ ଦୁର୍ବଳତା । ସେ ଜାଣେ ଗୃହସ୍ଥ ତା'ର ସମସ୍ତ ଭୋଜ୍ୟ ଏଇ ଭଣ୍ଡାରଟିରେ ଠୁଳ କରି ରଖେ । ତେଣୁ ଘର ଭିତରେ ପଶିବା ପରେ ସେ ସିଧା ତାରି ପାଖକୁ ଚାଲିଯାଉଛି । ଅଭ୍ୟସ୍ତ ହାତରେ ତାକୁ ଖୋଲି ଯାହା ଖାଇବାର ଖାଇ, ଯାହା ନେବାର ନେଇ ବାକିତକ ନଷ୍ଟ କରି ଚାଲିଯାଉଛି । ପରିବାରରେ କିଏ ଏବେ ସବୁବେଳେ ସତର୍କ ହୋଇ ବସିଚି ଯେ, ଏଭଳି ଏକ

ଅତର୍କିତ ଆକ୍ରମଣକୁ ପ୍ରତିହତ କରିଦେବ ?

ଶତ୍ରୁପକ୍ଷ ଯେ ଗୃହସ୍ଥର ଗତିବିଧି ଉପରେ କଡ଼ା ନଜର ରଖିଚାଲିଛି ଏହା ତା'ର କାର୍ଯ୍ୟ ପ୍ରଣାଳୀରୁ ଜଣାଯାଉଛି । ଗୃହସ୍ଥ ବିଚରା ତା'ର ସଂସାରୀ ଜୀବନର ସମସ୍ତ ଅଭିଜ୍ଞତାକୁ କାମରେ ଲଗାଇ ଏଇ ଗରିଲା ଆକ୍ରମଣକୁ ପ୍ରତିହତ କରିବା ପାଇଁ ଉଦ୍ୟମ ଚଳାଇଯାଉଚି । ମାତ୍ର ପରିଣାମରେ ଦେଖାଯାଉଛି, ଦୁଇପକ୍ଷର ଏଇ ଛକାପଞ୍ଝା ଭିତରେ ଶତ୍ରୁପକ୍ଷର ହିଁ ଜିତାପଟ ହୋଇଯାଉଛି ।

ପରିବାରରେ ଏକ ଉଚ୍ଚସ୍ତରୀୟ ଦ୍ୱିପାକ୍ଷିକ କମିଟି ବସି ପ୍ରତିରୋଧର ସମସ୍ତ ବ୍ୟବସ୍ଥାକୁ ଆହୁରି କଡ଼ାକଡ଼ି କରିବା ନିମନ୍ତେ ନିଷ୍ପତ୍ତି ନିଆଯାଇଥିଲା । ମାତ୍ର କାର୍ଯ୍ୟକ୍ଷେତ୍ରରେ ଦେଖାଗଲା ଯେ, ଶତ୍ରୁ ତାହା ଦ୍ୱାରା ପ୍ରତିହତ ନ ହୋଇ ଦ୍ୱିଗୁଣ ଉତ୍ସାହରେ ଆକ୍ରମଣ ଆରମ୍ଭ କରିଦେଇଛି । କବାଟ - ଝରକା ବନ୍ଦ କରି ମଣିଷ କେତେବେଳ ଯାଏ ନିଜକୁ ଘରଟା ଭିତରେ ବନ୍ଦୀ କରି ରଖିବ ?

ଦୁଃଖୀ ଶ୍ୟାମବାବୁ ସମସ୍ତ ଦୋଷ ପତ୍ନୀଙ୍କ ଉପରେ ଢାଳିଦେଇ କହିଲେ, ''ମୁଁ କିନ୍ତୁ ସେତେବେଳେ ତମକୁ କହିଥିଲି, ଏଭଳି ଗୋଟାଏ ପାଣ୍ଡବ - ବର୍ଜିତ ଅଞ୍ଚଳରେ ଫ୍ଲାଟ ନ ନେବା ହିଁ ଉଚିତ । ବାବା-ମା'ଙ୍କ ପାଖାପାଖି ରହିବ ବୋଲି ତମେ ସେତେବେଳେ ମୋ କଥା କାନକୁ ନେଇ ନାହିଁ । ଏଇନେ ଭୋଗ ।''

ଫିକା ହସ ହସି ପତ୍ନୀ କହିଲେ - କ'ଣ ଆଉ କରିଥା'ନ୍ତି କହ । ଆମେ ଏଠି ଅଛୁଁ ବୋଲି ତାଙ୍କର କେତେ ଭରସା ! ବୁଢ଼ା ମଣିଷ....

ତମ ଉପରେ ବା ସେମାନଙ୍କର ସବୁ ଆଶା ଭରସା ଠୁଳ ହେବ କାହଁକି ? ଦି'ଦିଟା ଧନୁର୍ଦ୍ଧର ପୁଅ... ବାହାରେ ଚାକିରି କରିବା ଆଳରେ କେଡ଼େ ଚମତ୍କାର ଭାବରେ ଡୁବ ମାରିଲେ । ଏବେ ସମ୍ଭାଳ...

ଦୁଃଖୀ ଶ୍ୟାମ ବାବୁଙ୍କର ସବୁ ରାଗ ପତ୍ନୀଙ୍କ ଉପରେ ଠୁଳ ହୁଏ । ରାଗ ରୋଷରେ କୋଉ ସମସ୍ୟା ଦୂର ହୁଏ ।

ଏ ଭିତରେ ଦିନେ ଦୁଃଖୀ ଶ୍ୟାମବାବୁଙ୍କର ଶତ୍ରୁ ସହିତ ମୁହାଁମୁହିଁ ହୋଇଗଲା । ଶତ୍ରୁ କାଚ ଝରକା ସେପଟେ - ବାହାରେ । ଦୁଃଖୀଶ୍ୟାମବାବୁ ଘରେ । ଦୁଇପକ୍ଷ ଦୁହିଁଙ୍କୁ ନିରେଖି ଦେଖୁଛନ୍ତି । ଦୁଃଖୀଶ୍ୟାମ ପ୍ରଥମେ ଭାବିନେଲେ, ଏଇଟା ତାଙ୍କରି ପ୍ରତିବିମ୍ବ । ହଠାତ୍ ଖିଆଲ ହେଲା- ଏମିତି କେମିତି ହେବ ? ତାଙ୍କ ନାକଟା ତ

ଏମିତି ନୁହେଁ । ନାକତଳେ ପୌରୁଷ ବ୍ୟଞ୍ଜକ ନିଶ ଅଛି – ପ୍ରତିବିମ୍ବର ତା' ନାହିଁ । ଯେଉଁ ଯୋଡ଼ା ଭ୍ରୁରୁ ତାଙ୍କ ବ୍ୟକ୍ତିତ୍ୱର ଅଭିନ୍ନ ଅଙ୍ଗ ହୋଇଯାଇଛି – ଯା'ର ତା' କାହିଁ ? ରଙ୍ଗ, ଆଖି କାନ – ଏମିତି କେତେ କେତେ ପାର୍ଥକ୍ୟ ବାହାରିଲା... ନାଃ– ଓରକା ଆରପଟର ପ୍ରାଣୀଟି ସେ ନୁହନ୍ତି । ସାଙ୍ଗେ ସାଙ୍ଗେ ସେ ଚିତ୍କାର ଆରମ୍ଭ କରିଦେଲେ । ଶତ୍ରୁ ଲଜ୍ଜାରେ ଡିଆଁ ମାରି ଅଦୃଶ୍ୟ ହୋଇଗଲା । ତା'ର ଦୋଷ କେହି ଦେଖିଲେ ନାହିଁ । ପତ୍ନୀ ସିଦ୍ଧାନ୍ତ କରିନେଲେ, ତାଙ୍କ ଭଳି ଛେଲୁଆ ଲୋକ ଆଉ କ'ଣଟା ବା କରିଥାଆନ୍ତା ?

ଦୁଃଖୀଶ୍ୟାମ ଏବେ ବଡ଼ ଅଶାନ୍ତିରେ ଅଛନ୍ତି । ନା ଖାଇବାରେ ମନ, ନା ଆଉ କୋଉଥିରେ । ନିଦରେ ବି ଶତ୍ରୁର ତାଚ୍ଛଲ୍ୟ ମଣ୍ଡିତ ବକ୍ର ହସର ଧ୍ୱନି ତାଙ୍କ କାନରେ ବାଜୁଛି ଆଉ ସେ ହାଉଳି ଖାଇ ଉଠି ପଡୁଛନ୍ତି । ତାଙ୍କର ସମଗ୍ର ସତ୍ତା.... ଆଉ ଚେତନାକୁ ଆଚ୍ଛନ୍ନ କରି ରଖିଛି, ସେଇ ଦେଢ଼ ହାତର ଜୀବଟି । ଦୁଃଖୀଶ୍ୟାମ ପ୍ରଥମେ ଭାବିଲେ – କୌଶଳକ୍ରମେ ଶତ୍ରୁକୁ ବନ୍ଦୀ କରି ତାକୁ ପାଣିରେ ବୁଡ଼େଇ ମାରିବେ । ଗଛରେ ବାନ୍ଧି ପକେଇ କୁକୁର ଲଗେଇଦେବେ । ନ ହେଲେ ଅଣ୍ଟା ପର୍ଯ୍ୟନ୍ତ ପୋତି ପିଲାମାନଙ୍କୁ ଢେଲା ମାରିବାକୁ କହିବେ । ଏ ସବୁ କରିବାକୁ ହେଲେ ପ୍ରଥମେ ତାକୁ ଧରିବା ଆବଶ୍ୟକ । ଏହା କିଭଳି ସମ୍ଭବ ?

ଏହାର ପୁଣି ଗୋଟିଏ ଆଇନ୍ ଗତ ଦିଗ ଅଛି । ସରକାର ପଶୁ – ପକ୍ଷୀଙ୍କ ସୁରକ୍ଷା ପାଇଁ କଣ ଗୋଟିଏ ନିୟମ କରିଛନ୍ତି । ଏହାକୁ ଉଲ୍ଲଂଘନ କରୁଥିବାର ପ୍ରମାଣ ମିଳିଲେ, ଜେଲ ଜୋରିମାନା ଉଭୟ ଭୋଗିବାକୁ ପଡ଼ିବ । ପୁଣି ହିନ୍ଦୁମାନେ ପୃଥିବୀର କିଛି ପଶୁପକ୍ଷୀଙ୍କୁ ଦେବତାର ମାନ୍ୟତା ଦେଇଛନ୍ତି କିମ୍ବା କୌଣସି ଦେବତାଙ୍କ ସହିତ ସେମାନଙ୍କର ସମ୍ପର୍କ ଯୋଡ଼ିଛନ୍ତି । ଏଇମାନେ ଦୁର୍ଗଷଣ୍ଢଙ୍କୁ ଲଢ଼ାଇଦେଇ ସେମାନଙ୍କର ରକ୍ତରଞ୍ଜିତ ଚେହେରା ଦେଖି ଆନନ୍ଦରେ ଉଦ୍‌ଫୁଲ୍ଲିତ ହୋଇଉଠନ୍ତି । ଲଢ଼େଇ ଧିମେଇ ଗଲେ, ଏମାନଙ୍କର ମନ ମରିଯାଏ ଏବଂ ପୁଣି ସେମାନେ ଦୁଇପକ୍ଷକୁ ଉତ୍ତେଜିତ କରିବାକୁ ଚେଷ୍ଟା କରନ୍ତି । ଆଉ କିଏ ଯଦି ବାଡ଼ି ଦେଖାଏ, ତେବେ ଠେଙ୍ଗା ଧରି ତାକୁ ମାରିବାକୁ ଧାଇଁ ଆସନ୍ତି । ଏଭଳି ଅବସ୍ଥାରେ ଶତ୍ରୁ ଦମନ ବଡ଼ ସହଜ କଥା ନୁହେଁ ।

ଦୁଃଖୀଶ୍ୟାମ ପୁଣି ଚିନ୍ତାରେ ପଡ଼ିଗଲେ । ଜୀବନ ସାରା କଟିଗଲା ମୁହଁ ବୁଜି

ଅନ୍ୟାୟ ସହିବାରେ । ପାହାଚ ହୋଇ ଅନ୍ୟର ଗୋଇଠା ଖାଇ ଖାଇ ବଞ୍ଚିବାର ଯନ୍ତ୍ରଣା ସେ ଜାଣନ୍ତି । ଆଉ ସେ ଏ ଅତ୍ୟାଚାର ସହିବେ ନାହିଁ । ବୁଦ୍ଧିଟା ଆସିଲା ପତ୍ନୀଙ୍କ ଆଡୁ । "ମୂଳ ମାରିଲେ ଯିବ ସରି" ନ୍ୟାୟ ଯେ ବିଶେଷ ଭାବରେ ଏଇଭଳି ପରିସ୍ଥିତି ପାଇଁ ଲେଖାଯାଇଛି, ତାହା ସେ ଦୁଃଖୀଶ୍ୟାମଙ୍କୁ ବୁଝାଇଲେ । ତାଙ୍କର ଯୋଜନା ପ୍ରସ୍ତୁତ ହୋଇଛି । ପ୍ରଥମେ କଦଳୀ ଫେଣାଟିଏ ଦେଖାଇ ଜନ୍ତୁଟିକୁ ପ୍ରଲୋଭିତ କରିବାକୁ ପଡ଼ିବ । ତହିଁରେ ପୂର୍ବରୁ ଭରି ଦିଆଯାଇଥିବ ଉତ୍କଟ ମୂଷାମରା ବିଷ । ଏ ଫାନ୍ଦରେ ଗୋଡ଼ ଦେଲେ ଶତ୍ରୁର ବିନାଶ ନିଶ୍ଚିତ । କାହା ଘରୁ ବିଷ ଦିଆଗଲା, ସେ କଥା କିଏ ଏବେ ଜାଣୁଚି ? ଜାଣିଲେ ବି ପ୍ରମାଣ କାହିଁ ?

ଦୁଃଖୀଶ୍ୟାମଙ୍କର ପିଲାଦିନର ଗୋଟିଏ କଥା ମନେ ପଡ଼ିଗଲା । ସ୍ୱାଧୀନତା ପରେ ପରେ ଦେଶର ଖାଦ୍ୟଶସ୍ୟ ଉତ୍ପାଦନ ବଢ଼ାଇବା ପାଇଁ ସରକାର 'ଗ୍ରୋମୋର ଫୁଡ୍' ଯୋଜନା ଚାଲୁ କରିଥାଆନ୍ତି । ବିଲବାଡ଼ିରେ ଯାହା ହୁଏ, ତା'ର ଚାରିପଣ କିନ୍ତୁ ଯାଏ, ଏଇ ଜନ୍ତୁଙ୍କ ପେଟରେ । ଦିକ୍‌ଦାର ହୋଇ ସରକାର ଗୋଟିଏ 'ଅପରେସନ୍ – କିଲିଂ' ବ୍ୟବସ୍ଥା ଆରମ୍ଭ କଲେ । ଗାଁ ଗାଁକୁ ବନ୍ଧୁକଧାରୀ ସିପାହୀମାନେ ଖେଦିଗଲେ । ଯିଏ ଯେତେ ମାରିବାର ପ୍ରମାଣ ଦେଖାଇ ପାରିଲା, ସେତେ ଟଙ୍କା ପକେଟରେ ପୁରାଇ ଘରକୁ ବାହୁଡ଼ିଲା । ଗୁଳି ବାଜିବା ଅବସ୍ଥାରେ ଏଇ ଜନ୍ତୁମାନେ କୁଆଡ଼େ ଊର୍ଦ୍ଧ୍ୱନେତ୍ର ହୋଇ ଦୁଇହାତ ଯୋଡ଼ି କାହାକୁ ନମସ୍କାର କରି ଗଛରୁ ତଳକୁ ଖସିପଡୁଥିଲେ ବୋଲି ପ୍ରଚାର ହୋଇଗଲା । ଅବସ୍ଥା ଏମିତି ହେଲା ଯେ, ଯେଉଁ ଦସ୍ୟୁମାନେ ତାଳ ଫୋଟକା କି 'ଧର ଧର' 'ହେଇଗଲା', 'ଭାଲୁଆ– ଧ' ପ୍ରଭୃତି ପରୁଷବାଣୀକୁ ଭ୍ରୂକ୍ଷେପ ନ କରି ନିର୍ବିକାର ଭାବେ ଲୁଣ୍ଠନ ଚଳାଇ ଯାଉଥିଲେ, ସେଇମାନେ ଏବେ ଟୋପି–ଧାରୀ ଦେଖିଲେ, ଆତ୍ମଗୋପନ କରିବାକୁ ନିର୍ଜ୍ଜନ ସ୍ଥାନ ଖୋଜୁଥିଲେ, ଆଉ ତାହାରି ଫାଇଦା ଉଠାଇ ଗାଁ ଲୋକେ ମୁଣ୍ଡରେ ଠେକାଟାଏ ଗୁଡ଼ାଇ ବନ୍ଧୁକ ମାର୍ଗେ ଠେଙ୍ଗା କି ନଡ଼ିଆ ଫାଉଣ୍ଡା ଖଣ୍ଡେ ଲକ୍ଷ୍ୟ କରି ଧରିଲେ ଦସ୍ୟୁ ମହଲରେ ଆତଙ୍କ ସୃଷ୍ଟି ହୋଇଯାଉଥିଲା । ଯାହା ହେଉ, ଲୋକେ ସଂଘବଦ୍ଧ ହୋଇ ସରକାରଙ୍କର ଏଇ ଧର୍ମଛଡ଼ା ନୀତି ବିରୁଦ୍ଧରେ ସ୍ୱର ଉଠାଇଲା ବେଳକୁ ଦସ୍ୟୁକୁଳ ଦଶ'ଣା ଛ'ଣା ହୋଇଯାଇଥିଲେ । ପରିସ୍ଥିତି ଥଣ୍ଡା ପଡ଼ିଯାଇଥିଲା ।

ଦୁଃଖୀ ଶ୍ୟାମ ଭାବନ୍ତି, ସେମାନଙ୍କର ଅପରାଧ କ'ଣ ? ପେଟ ପୁରାଇବା ପାଇଁ ଗଛଲତାରେ ପତ୍ରଟିଏ ଯେତେବେଳେ ନାହିଁ ସେମାନେ ଆଉ କ'ଣ କରନ୍ତେ ?

କ୍ଷୁଧା କ'ଣ ନୀତି ନିୟମ ମାନେ ? ସାତ ପୁରୁଷକୁ ଅଏସ କରିବାକୁ ଥୋଇ ଆଜିର କ୍ଷମତାଶାଳୀ ମଣିଷ ଯାହା କରୁଛି ତା' ତୁଳନାରେ ଏମାନଙ୍କ ଦୋଷ କେତେ ? ଦୁନିଆର ଆଉ ପାଞ୍ଚଟା ଜୀବ ଭଳି ସେମାନେ ତ ପୁଣି ରହିବେ, ନା ନାହିଁ ?

ଦୁଃଖୀଶ୍ୟାମ ନିଜକୁ ଆଉ ସମ୍ଭାଳି ରଖିପାରିଲେ ନାହିଁ । ବାଲକୋନିର ନରମ ଖରାରେ ଆର୍ମଚେୟାରରେ ବସି ଖବର କାଗଜ ପଢୁ ପଢୁ କେତେ ବେଳେ ଟିକିଏ ଆଖି ଲାଗିଯାଇଛି ସେତିକି ବେଳେ ଦସ୍ୟୁ ଆସି ବିସ୍କୁଟ ପ୍ଲେଟରୁ ସବୁଯାକ ମାଲ ଧରି ପଳାଇ ପଳାଉ ଗୋଡ଼ ବାଜି ଟି. ପଏ ଟି ଓଲଟି ପଡ଼ିବାରୁ ଦୁଃଖୀଶ୍ୟାମଙ୍କ ତନ୍ଦ୍ରା ଭାଙ୍ଗିଗଲା । ଚା ଢାଳି ପ୍ଲେଟ ଭାଙ୍ଗି ସେ ଏକ ନାରକୀୟ ଅବସ୍ଥା । ଏଥିରେ କୋଉ ସ୍ଥିତିପ୍ରଜ୍ଞ ନିଜକୁ ସ୍ଥିର ରଖି ପାରିବ ?

ନାଃ – କିଛି ଗୋଟାଏ କରିବାକୁ ପଡ଼ିବ ।

ଶେଷକୁ ସେଇଆ ସ୍ଥିର ହେଲା । ତା' ଛଡ଼ା ବାଟ ବା ଆଉ କ'ଣ ଥିଲା ? ଚବିଶ ଘଣ୍ଟା ଟେନ୍‌ସନ୍ ଭିତରେ ରହିବାକୁ କାହାକୁ ଭଲ ଲାଗେ ! ଅଥଳ ପାଣିରେ ଭାସି ଯାଉ ଯାଉ ହଠାତ୍ ପାଦ ତଳେ ମାଟି ମିଳିଗଲେ ମନର ଯେଉଁ ଅବସ୍ଥା ହୁଏ, ସ୍ୱାମୀ– ସ୍ତ୍ରୀ ଦୁଇ ଜଣଙ୍କୁ ଠିକ୍ ସେମିତି ଲାଗିଲା । ଶତ୍ରୁକୁ କୌଣସି ମତେ ନିପାତ କରିବାକୁ ହେବ । ଖାଦ୍ୟ ଦ୍ରବ୍ୟ ଦ୍ୱାରା ତାକୁ ପ୍ରଲୋଭିତ କରି ଫାନ୍ଦରେ ପକାଇବା ଏମିତି କିଛି କଷ୍ଟ କର କାମ ନୁହେଁ । ସେଇ ଖାଇବା ହେବ ତାର ଶେଷ ଖାଇବା । ବୁଲା ଜନ୍ତୁ– କାହିଁ କୁଆଡ଼େ ବୁଲିଛି, କୋଉଠି କ'ଣ ଖାଇ ମହାନିଦ୍ରାରେ ଶୋଇଗଲା, ସେ କଥା କିଏ ଜାଣିବ ? ଯଦି କୌଣସି କାରଣରୁ ସନ୍ଦେହର ଆଙ୍ଗୁଳି ସେମାନଙ୍କ ଆଡ଼କୁ ଉଠେ, ତେବେ କହି ଦିଆଯିବ ଯେ, ସେମାନେ ଏ ବିଷୟରେ କିଛି ଜାଣନ୍ତି ନାହିଁ । ଅବଶ୍ୟ ଯଥା ସମ୍ଭବ ସ୍ୱାଭାବିକ ଭାବେ ରହିବାକୁ ଚେଷ୍ଟା କରିବାକୁ ହେବ । କାମ ଛିଣ୍ଡିଗଲା ବାସ୍ ।

କାମ ହୋଇଗଲା ଯୋଜନା ପ୍ରକାରେ । ପ୍ରିୟ ଖାଦ୍ୟ ଦେଖି ଶତ୍ରୁ ତଡ଼ିତ୍‌ଗତିରେ ଧାଇଁ ଆସି ଉପସିତ ବସ୍ତୁଟିକୁ ଧରି ଦୁଇଖେପାରେ ଡେଇଁପଡ଼ି ଅଦୃଶ୍ୟ ହୋଇଗଲା । ସ୍ୱାମୀ, ସ୍ତ୍ରୀ ରୁଦ୍ଧଶ୍ୱାସରେ ଦେଖିଲେ, ଚାରି ମହଲା ଛାତରେ କାର୍ଣ୍ଣିସ୍ ଧାରରେ ଆରାମରେ ବସି ଚୋପା ଛଡ଼ାଇ ଗୋଟିକ ପରେ ଗୋଟିଏ ଗଳାଧଃକରଣ କରିବାରେ ଲାଗିଲା । କଦଳୀ ସରିଲା । ଶତ୍ରୁ ସେଇଠି ବସି ଘୁମେଇବାକୁ ଲାଗିଲା । ସେତେବେଳକୁ ସନ୍ଧ୍ୟା

ଆସନ୍ନ ।

ରାତିରେ ବିଛଣାରେ ବସି ସରୋଜିନୀ କହିଲେ – ମତେ କିଛି ଭଲ ଲାଗୁନାହିଁ । ମାଙ୍କଡ଼ଟାକୁ ବିଷ ନ ଦେଇଥିଲେ ବି ଚଳିଥାନ୍ତା । କ'ଣ ବା ଏମିତି କରୁଥିଲା ?

ବାରୁଦରେ ନିଆଁ ଲାଗିବା ପରି ଜଳି ଉଠି ଦୁଃଖୀ ଶ୍ୟାମ କହିଲେ – ବାଜେକଥା କହ ନାହିଁ ତ । ସକାଳୁ ସଞ୍ଜ ଯାଏ ମାଙ୍କଡ଼ ପୁରାଣ ଗାଉ ଗାଉ ବେଳଅଣ୍ଟୁ ନ ଥିଲାଟି ! ଏଇନେ ପୁଣି ଏକଥା !

ସରୋଜିନୀ ବି ତେଜି ଉଠି କହିଲେ – ଆପାର୍ଟମେଣ୍ଟରେ ତ ତିରିଶ ଘର ବାସିନ୍ଦା । ମାଙ୍କଡ଼ ସବୁରି ଘରେ ନାଟ କରୁଥିଲା । ଯା' ବୋଲି କେହି କ'ଣ ତାକୁ ବିଷ ଦେଇ ମାରିବା କଥା ଭାବିଛନ୍ତି ? କ'ଣ ଯେ ହେବ !

କ'ଣ ଆଉ ହେବ ? ମାଙ୍କଡ଼କୁ ଯେ ବିଷ ଦେଇ ମରାଯାଇଚି ସେ କଥା ବିନା ପୋଷ୍ଟମର୍ଟମରେ ବି ଜାଣି ହେବ । ଆପାର୍ଟମେଣ୍ଟର ସମସ୍ତେ ଜାଣନ୍ତି, ଆମେ ମାଙ୍କଡ଼ଟାକୁ ହଟାଇବାକୁ ଚାହୁଁଥିଲେ । କିଏ ଯଦି ଯାଇଁ ପୋଲିସ୍‌କୁ କହିଦେଲା !

ସରୋଜିନୀ ଚମକି ପଡ଼ିଲେ । ଇଲୋ ମୋ ମା'ଲୋ, ପୁଲିସ୍ । ହେଇତି ତମେ ଏ କେଇଦିନ କୁଆଡ଼େ ଯା' ନାହିଁ, କିଏ କେତେବେଳେ ଆସି କ'ଣ ପଚାରିବ ଯଦି ? ତାଙ୍କର ନିଃଶ୍ୱାସ ଦ୍ରୁତରୁ ଦ୍ରୁତତର ହେଉଥିଲା ।

ଦୁଃଖୀଶ୍ୟାମଙ୍କର ଉତ୍ତେଜନା କିଛି କମ୍ ନ ଥିଲା । ତଥାପି ସେ କହିଲେ – ଘର ଭିତରେ କବାଟ କିଳି ରହିଲେ, ବିପଦ ଏଡ଼ାଇ ହୁଏ ନାହିଁ । ଦେଖାଯାଉ ।

ଗୋଟିଏ କଥା କଲେ ହୁଅନ୍ତା ନାଇଁ ? ଦିନେ ଦି' ଦିନ ଚାଲ କୁଆଡ଼େ ବାହାରେ କଟାଇ ଆସିବା । ପଚରା ଉଚରା ହେଲେ କହିଦେବା – ଆମେ କେତେଦିନ ହେବ ଘରେ ନ ଥିଲୁ, ସରୋଜିନୀ ବୁଦ୍ଧି ଦେଲେ ।

ଦୁଃଖୀଶ୍ୟାମ ନୀରବ ରହିଲେ ।

କାନ୍ଦ କାନ୍ଦ ହୋଇ ସରୋଜିନୀ କହିଲେ – ଗୋଟାଏ ଆହାରମୁଖା ଜିଅନ୍ତା ପ୍ରାଣୀକୁ ଆମେ ବିଷ ଦେଇ ମାରିଦେଲେ । କେହି ନ ଜାଣନ୍ତୁ, ଆମର ବିବେକ ତ ସବୁ ଜାଣେ.... ଏ ଦୁର୍ବୁଦ୍ଧି ଆମକୁ କିଏ ଦେଲା.... ତାଙ୍କର କଣ୍ଠ ରୁଦ୍ଧ ହୋଇଗଲା ।

ଦୁଃଖୀଶ୍ୟାମ ଭୋରୁ ନିଦରୁ ଉଠିପଡ଼ିଲେ । ଅଥଚ ଏତେ ସକାଳୁ ଉଠିବା

ତାଙ୍କର ଅଭ୍ୟାସ ନୁହେଁ । ସରୋଜିନି ଯେ ରାତିସାରା ଶୋଇନାହାନ୍ତି, ତା' ଜଣା ପଡୁଥିଲା । ବାଲ୍‌କୋନିରେ ଠିଆ ହୋଇ ପ୍ରଥମେ ମାଙ୍କଡ଼ର ସମ୍ଭାବ୍ୟ ବସିବା ସ୍ଥାନ ଆଡ଼େ ଆଖି ବୁଲେଇଲେ । ତା'ର ଚିହ୍ନ ବର୍ଣ୍ଣ ନାହିଁ ।

ମର୍ଣ୍ଣିଂଓ୍ୱାକ୍ ନାଁରେ ଘରୁ ବାହାରି ଘଣ୍ଟାଏ ଖଣ୍ଡେ ଏଣେତେଣେ ବୁଲି ଘରକୁ ଫେରିଲେ । କହିଲେ – ନାଃ... କୋଉଠି ତ ଦେଖିବାକୁ ମିଳିଲା ନାହିଁ । ପବନରେ ମିଳେଇଗଲା ନା କ'ଣ ?

ଚା' ଟେବୁଲ୍‌ରେ ବସି ସରୋଜିନୀ ପୁଣି ଆରମ୍ଭ କଲେ – ମନଟା କାଲିଠୁ ଗୁଡ଼େଇ ତୁଡ଼େଇ ହଉଚି । କୋଉ ଭୋକିଲାକୁ କେବେ ତ ମୁଠାଏ ଖାଇବାକୁ ଦେଇ ନାଇଁ – ଆହାରମୁଖା ନିରୀହ ଜୀବଟାକୁ ବିନା କାରଣରେ ବିଷ ଦେଇ ମାରିଛି । ସେତ କିଛି ଅନ୍ୟାୟ କରୁ ନଥିଲା । ବଞ୍ଚିବା ପାଇଁ ଖାଲି ମୁଠାଏ ଖାଦ୍ୟ ଖୋଜୁଥିଲା । ଯାହା ହେଲେ ମୁଠାଏ । କେତେ ଜିନିଷ ତ ନଷ୍ଟ ହଉଚି ।

ଦୁଃଖୀଶ୍ୟାମ ବାହାରୁ ବୁଲି ଫେରିବା ପରେ ରାତିର ଶଙ୍କା ଅନେକଟା କଟିଯାଇଛି । ଆଖପାଖରେ କୋଉଠି ମାଙ୍କଡ଼ର ମୃତ ଦେହ ତାଙ୍କ ଆଖିରେ ପଡ଼ିନାହିଁ । ଦୂରରେ ଯଦି କୋଉଠି ମରିପଡ଼ିଥାଏ, କିଏବା ତାଙ୍କୁ ସନ୍ଦେହ କରିବ ? ସେଇ ଆତ୍ମବିଶ୍ୱାସ ନେଇ ସେ ସରୋଜିନୀଙ୍କୁ ବୁଝାଇଲେ । କହିଲେ – ଏକେବାରେ ମରିଯାଇଥିବ ବୋଲି ତମେ ଭାବୁଛ କାହିଁକି ? କୋଉ କାଳର ଗମରା ବିଷ । କାଲି ହୁଏତ ଦେଖିବ, ଶ୍ରୀମାନ୍ ପୁଣି ଆସି ତାଙ୍କର ଚନ୍ଦ୍ରବଦନ ଦେଖେଉଛନ୍ତି । ନିଜର ରସିକତାରେ ସେ ନିଜେ ହସି ଉଠିଲେ । ସେଥିରେ ପ୍ରାଣ ନ ଥିଲା ।

ଦିନଟା କୌଣସି ମତେ କଟିଲା । ଘର ଭିତରେ କେମିତି ଗୁମ୍‌ସୁମ୍ ଭାବ । ସ୍ୱାମୀ–ସ୍ତ୍ରୀ କେହି ସ୍ୱାଭାବିକ ହୋଇ ପାରୁ ନାହାନ୍ତି । ମନରେ ଶଙ୍କା – କେତେବେଳେ କ'ଣ ହୋଇଯିବ । କେହି ଯେମିତି ହଠାତ୍ ଘର ଭିତରକୁ ପଶିଆସି ତାଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ କହିବ ତମେ ଜଣେ ହତ୍ୟାକାରୀ । ଦୁଃଖୀଶ୍ୟାମ ବାବୁ ଶୂନ୍ୟ ଦୃଷ୍ଟିରେ ଛାତକୁ ଅନାଇ ବସିଥିଲେ । ତାଙ୍କର ମନେ ହଉଥିଲା, ସେ ଯେମିତି ଗୋଟାଏ ଦୁଃସ୍ୱପ୍ନ ଦେଖୁଛନ୍ତି । ହଠାତ୍ ନିଦ ଭାଙ୍ଗିଯାଇଛି ଆଉ ସେ ଦେଖୁଛନ୍ତି ସବୁ ଆଗରୁ ଯେମିତି ଥିଲା, ଠିକ୍ ସେମିତି ଅଛି । ନିଦରୁ ଉଠି ସେ ବାଲ୍‌କୋନିରେ ଠିଆ ହେଉଛନ୍ତି । ଖବର କାଗଜବାଲା ପିଲାଟି କାଗଜକୁ ମୋଡ଼ି ଅବ୍ୟର୍ଥ ଲକ୍ଷ୍ୟରେ ତାଙ୍କ ଆଡ଼କୁ ଫୋପାଡ଼ି

ଦେଉଛି । ସେଇଆକୁ ଧରି ସେ ରୁମ୍‌କୁ ଫେରୁଛନ୍ତି । ତା' ଉପରେ ଟିକିଏ ଆଖି ପକେଇ ବ୍ୟାଗ୍ ଧରି ପରିବା ପାଇଁ ବାହାରୁଛନ୍ତି । ଜନ୍ତୁଟି ପଡ଼ିଶା ଘର କାନ୍ଥ ଉପରେ ମୁଣ୍ଡ ବଙ୍କାଇ ଗୋଡ଼ ଜାକି ସେଇ ଅଭ୍ୟସ୍ତ ମୁଦ୍ରାରେ ବସି ରହିଛି.... ତାଙ୍କର ତନ୍ଦ୍ରା ଭାଙ୍ଗିଯାଉଛି ।

ଆଠଟା ବାଜିବ । ଗୋଟାଏ ଦିନ ହଜିଯିବ, ମାତ୍ର ଆଉ କେଇଘଣ୍ଟା ପରେ । ଦୁଃଖୀଶ୍ୟାମ ଚାରିଆଡ଼କୁ ଅନାଇଲେ । ସରୋଜିନୀଙ୍କୁ କେଉଁଠି ଦେଖିବାକୁ ପାଇଲେ ନାହିଁ । ହୁଏତ ସେ ବାଲ୍‌କୋନିରେ ଅଛନ୍ତି । ଦୁଃଖୀଶ୍ୟାମ ଉଠିବାକୁ ଚେଷ୍ଟା କଲେ । ଅବସନ୍ନ ମନ ଯେ ଦେହକୁ ଏତେ କ୍ଳାନ୍ତ କରିଦିଏ, ଏ ଅନୁଭବ ତାଙ୍କର ହୁଏତ ପ୍ରଥମଥର ପାଇଁ ହେଉଥିଲା । ଦୁଶ୍ଚିନ୍ତା ହେଉଛି ସକଳ ପ୍ରକାର ଦୁର୍ବଳତାର ମୂଳ । ଡୋର୍ ବେଲ୍ ବାଜିଉଠିଲା । ଲାଗ୍ ଲାଗ୍ ଚାରିଥର । ଆଗନ୍ତୁକ ନିଶ୍ଚୟ ଅଧୈର୍ଯ୍ୟ ଅବସ୍ଥାରେ ଅଛନ୍ତି ।

ଦୁଃଖୀଶ୍ୟାମ ନିଶାଗ୍ରସ୍ତ ଭଳି ଉଠି ଠିଆ ହେଲେ । ସ୍ଖଳିତ ପାଦରେ ଯାଇ ଦରଜା ଖୋଲିଦେଲେ । ଆଗନ୍ତୁକଙ୍କୁ ଦେଖି ତାଙ୍କର ନିଶା ଛାଡ଼ିଗଲା । ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଗୋଟାଏ ଶୀତଳ ପ୍ରବାହ ବହିଗଲା ଭଳି ଲାଗିଲା । ମୁଣ୍ଡ ଭିତରଟା ଝିମ୍ ଝିମ୍ କରି ଉଠିଲା । ମନେ ହେଲା ଯେମିତି ଭୂତ ଦେଖୁଛନ୍ତି ।

"ଭିତରକୁ ଆସିବି କି ?" ଅଳ୍ପ ବୟସୀ ଜଣେ ପୁଲିସ୍ ଇନ୍‌ସ୍‌ପେକ୍ଟର ଦୁଃଖୀଶ୍ୟାମ ବାବୁଙ୍କର ଅନୁମତି ମାଗିଲେ ଏବଂ ଅନୁମତି ପାଇବାର ଅପେକ୍ଷା ନ ରଖି ଘର ଭିତରକୁ ପ୍ରବେଶ କରି ଆରାମ୍‌ରେ ଗୋଟିଏ ସୋଫାରେ ବସିଲେ । ଟୋପି ବାଡ଼ି ସମ୍ଭାଳୁ ସମ୍ଭାଳୁ କହିଲେ ଗୋଟାଏ ପ୍ରିଲିମିନାରୀ ଇନ୍‌କ୍ୱାରୀ ଅଛି–"

ଏଭଳି ନର୍ଭସ୍ ଦୁଃଖୀଶ୍ୟାମ ତାଙ୍କ ଜୀବନରେ କେବେ ହୋଇନାହାନ୍ତି । ମନେ ହେଲା, ସେ ଯେମିତି ଆଉ ଅନ୍ଧକରେ ପଡ଼ିଯିବେ । ନିଜକୁ କୌଣସି ମତେ ସମ୍ଭାଳିନେଇ କହିଲେ – ଟିକିଏ ବସନ୍ତୁ, ମୁଁ ଆସୁଛି – ନିଜ ସହିତ ବୁଝାପଡ଼ା କରିବା ପାଇଁ ତାଙ୍କର କିଛି ଅନ୍ତରାଳର ପ୍ରୟୋଜନ ଥିଲା ।

ଡୋର ବେଲ୍ ଶୁଣିବାବେଳକୁ ସରୋଜିନୀ ଏଇଆଡ଼େ କାନେଇ ଥିଲେ । ଦୁଃଖୀଶ୍ୟାମ ତାଙ୍କୁ ଘରର ଗୋଟାଏ କୋଣ ଆଡ଼କୁ ଟାଣିନେଲେ । ତାଙ୍କ ମୁହଁ ଆଡ଼େ ଅନାଇ ସରୋଜିନୀ ବହୁତ ଡରିଗଲେ । କିଏ ? ଏଇ ଶବ୍ଦଟି ଚାପା ଆର୍ତ୍ତନାଦ ଭଳି

ତାଙ୍କ ମୁହଁରୁ ବାହାରି ଆସିଲା ।

ନିମ୍ନ କଣ୍ଠରେ ଦୁଃଖୀଶ୍ୟାମ କହିଲେ– ପୁଲିସ୍ । ମାଙ୍କଡ଼ ମାରିବା ବିଷୟରେ ପଚରା ଉଚୁରା କରିବାକୁ ଆସିଛନ୍ତି ।

ସରୋଜିନୀ ବିଛଣା ଉପରେ କଚାଡ଼ି ହୋଇ ପଡ଼ିଲେ । ତାଙ୍କ ଆଖିରୁ ଲୁହ ବୋହିବାରେ ଲାଗିଲା । 'ହେ ଭଗବାନ୍, ଇଏ ତମେ କ'ଣ କଲ ! ଶେଷକୁ ଆମେ ଗୋଟାଏ ନିରୀହ ଜନ୍ତୁକୁ ହତ୍ୟା କରିବା ଅପରାଧରେ...

ଧୈର୍ଯ୍ୟ ଧର ସରୋଜିନୀ ! ପରିସ୍ଥିତି ବଡ଼ ଭୟଙ୍କର । ନିଜକୁ ସମ୍ଭାଳି ନ ରଖିଲେ, ଯେ କୌଣସି ମୁହୂର୍ତ୍ତରେ ହାତ କଡ଼ି ପଡ଼ିଯାଇପାରେ । ବିଷ ଦେଇ ହତ୍ୟା କରିବା କିଛି ସାଧାରଣ ଅପରାଧ ନୁହେଁ । ଯାହା ପଚାରୁ – କହିବ କିଛି ଜାଣି ନାହିଁ ।"
ସରୋଜିନୀ ପରିସ୍ଥିତିର ଗୁରୁତ୍ୱ ବୁଝିଲେ । ମୁହଁ ଉପରେ କାନିଟା ବୁଲାଇ ନେଇ ଉଠି ଠିଆହେଲେ ।

ପାଖ ଘରୁ ଡାକରା ଆସିଲା... ଚୌଧୁରୀ ବାବୁ, ମୋ ହାତରେ କିନ୍ତୁ ବେଶି ସମୟ ନାହିଁ । ଆପଣ ଆଉ ଶ୍ରୀମତୀ ଚୌଧୁରୀ, ଦୟାକରି ଦୁହେଁ ଆସନ୍ତୁ । ନ ହେଲେ....

ଦୁହେଁ ଧୀର ପଦକ୍ଷେପରେ ଡ୍ରଇଁ ରୁମ୍‌କୁ ଆସିଲେ । ଗୋଟିଏ ସୋଫାରେ ପାଖାପାଖି ବସିଲେ । ଇନ୍‌ସପେକ୍ଟର କହିଲେ, ମୁଁ ଲୋକାଲ ଥାନାର ଓ.ସି. । ପ୍ରାଇମେରୀ ଇନ୍‌କ୍ୱାରୀ କରି ରିପୋର୍ଟ ପଠାଇ ଦେବି । ବାକି ସବୁ ଟାଉନ୍ ଥାନାରୁ ହେବ ।

ଦୁଃଖୀଶ୍ୟାମ ଅନୁଭବ କଲେ– କପାଳର ଦୁଇ ପାଖର ଶିରା ଦୁଇଟା ଯେମିତି ଧକ୍ ଧକ୍ କରୁଚି । ଯେକୌଣସି ମୁହୂର୍ତ୍ତରେ ଫାଟି ଯାଇପାରେ ।

ଇନ୍ସପେକ୍ଟର କହି ଚାଲିଲେ – ମୁଁ ଦେଖିଲି, ଥାନାରେ ଆପଣଙ୍କ ନାଁରେ କୌଣସି ପାଷ୍ଟ କ୍ରିମିନାଲ୍ ରେକର୍ଡ଼ ନାହିଁ ।

କ୍ରିମିନାଲ କଥାଟା ଶୁଣି ସରୋଜିନୀ କେମିତି ଚଞ୍ଚଳ ହୋଇ ଉଠିଲେ । ତାଙ୍କର ଧୈର୍ଯ୍ୟର ବନ୍ଧ ଭାଙ୍ଗି ଭାଙ୍ଗି ଆସୁଥିଲା । ହଠାତ୍ ଭୀଷଣ ଉତ୍ତେଜିତ ଗଳାରେ ସେ ଚିତ୍କାର କରି ଉଠିଲେ–ବିଶ୍ୱାସ କରନ୍ତୁ, ଆମେ....

ଦୁଃଖୀଶ୍ୟାମ ସରୋଜିନୀଙ୍କୁ ବାଧା ଦେଇ କହିଲେ – ଓଃ, ତମେ ରହତ, ଇନ୍ସପେକ୍ଟରଙ୍କୁ ପ୍ରଶ୍ନ କରିବାକୁ ଦିଅ... ।

ପୁଲିସ୍ ବାବୁଙ୍କ ଓଠ କୋଣରେ ଧୀରେ ବଙ୍କା ହସ ଫୁଟିଉଠିଲା । 'ଭଦ୍ର ମହିଳାମାନେ ପୁଲିସ୍‌କୁ ଦେଖିବା ମାତ୍ରେ ଆଲାର୍ଜି ରୋଗରେ ପୀଡ଼ିତ ହୋଇପଡ଼ନ୍ତି । ଏକଥା ମୁଁ ଆଗରୁ ବି ଦେଖିଚି । ମାଡ଼ମ୍, ଆପଣମାନେ ପାସ୍‌ପୋର୍ଟ ପାଇଁ ଆପ୍ଲିକେସନ୍ ଦେଇଛନ୍ତି । ଫରେନ୍ କଣ୍ଟ୍ରି ବୁଲିଯିବେ । ଆମେ ଦି' ଚାରିଟା ନିରୀହ ପ୍ରଶ୍ନ କଲେ, ଏଥିରେ ଏତେ ଉତ୍ତେଜିତ ହେବାର କ'ଣ ଅଛି ? ଅବଶ୍ୟ ଥାନାରେ ଆପଣମାନଙ୍କ ସମ୍ପର୍କରେ ଯଥେଷ୍ଟ ଖବର ରହିଚି– ତଥାପି କର୍ତ୍ତବ୍ୟ ଦୃଷ୍ଟିରୁ....

ଛାତିଫଟାଇ ଏକ ସ୍ୱସ୍ତିର ଦୀର୍ଘଶ୍ୱାସ ସରୋଜିନୀଙ୍କ ଠାରୁ ବାହାରି ଆସିଲା । ସେ ସୋଫାକୁ ଆଉଜି ପଡ଼ିଲେ । ଦୁଃଖୀଶ୍ୟାମ ବାବୁଙ୍କର ରୁଦ୍ଧଶ୍ୱାସ ଧୀରେ ଧୀରେ ସ୍ୱାଭାବିକ ହୋଇଗଲା । ମନେପଡ଼ିଲା, ଝିଅ ପାଖକୁ କାନାଡ଼ା ଯିବେ ବୋଲି ସେ କିଛି ଦିନ ତଳେ ପାସ୍‌ପୋର୍ଟ ପାଇଁ ଦରଖାସ୍ତ ଦେଇଥିଲେ । ସେଇ ସଂକ୍ରାନ୍ତରେ ଆଉ କିଛି ପ୍ରଶ୍ନ ପଚରା ପଚରି କରି ପୁଲିସ୍ ଅଫିସର ବିଦାୟ ହୋଇଗଲେ ।

ମୁକ୍ତି ! ମୁକ୍ତି ! ସରୋଜିନୀଙ୍କର ମନେ ହେଲା, ଦୀର୍ଘ ଦିନ ଗୋଟିଏ ଅନ୍ଧାର କୋଠରୀରେ ବନ୍ଦ ରହିବା ପରେ, ହଠାତ୍ ଯେମିତି ଆଲୋକର ସନ୍ଧାନ ପାଇ ଯାଇଛନ୍ତି । ସେ ଟଳି ଟଳି ଯାଇ ବିଛଣାରେ ଗଡ଼ିପଡ଼ିଲେ । ଦୁଃଖୀଶ୍ୟାମ ପାଖକୁ ଆସିଲେ । ମମତାଭରା ହାତ ସରୋଜିନୀଙ୍କ ଉପରେ ରଖି ଡାକିଲେ – ସରୋଜିନୀ... ସରୋ....

ସରୋଜିନୀଙ୍କର ମନେ ହେଉଥିଲା, ଯେମିତି ଅନେକ ଭୋକିଲା ମୁହଁ ତାଙ୍କ ଚାରିପଟେ ଭାସି ବୁଲୁଛନ୍ତି । କହୁଛନ୍ତି, ଆମେ ପୁଣି ଆସିବୁ ! ଆମ ଠାରୁ ତମେ ଏତେ ସହଜରେ ମୁକ୍ତି ପାଇପାରିବ ନାହିଁ ।

ତାଙ୍କ ଆଖିରୁ ଧାର ଧାର ଲୁହ ବୋହି ଯାଉଥିଲା ।



# ଧୂସର ଆକାଶ

କଥାଟା ଆଗରୁ ଶୁଣାଯାଉଥିଲା ।

ଆଦିତ୍ୟ ସାମନ୍ତରାୟ ନାଁରେ ଗୁରୁତର ଅଭିଯୋଗ । ପ୍ରତ୍ୟେକ ବିଲ୍ ପାଶ୍ କଲାବେଳେ ବଟି ଆଦାୟ କରୁଛି । ଯେଉଁମାନେ ଦେଉନାହାନ୍ତି, ଏଣୁ ତେଣୁ Objection ଉଠାଇ ବିଲ୍ ଫେରାଇ ଦେଉଛି । ଅବ୍‌ଜେକ୍‌ସନ୍ comply କଲେବି ନୂଆ ନୂଆ Objection ମାନ କାହିଁ କୋଉଠୁ ମାଡ଼ି ଆସୁଛନ୍ତି । କମ୍ପ୍ଲାଏନସ୍ ଦେଇ ଦେଇ ଲୋକେ ନାକେ ଦମ ହେଲେଣି ।

ଯେଉଁମାନଙ୍କ ସହିତ ଭିତିରିଆ ବୁଝାମଣା ସେମାନଙ୍କ ଗୋଡ଼ରେ ମଳି ଲାଗୁନାହିଁ । ବିଲ୍ ଯେଉଁ ଦିନ ଡିପୋଜିଟ୍ ହେଉଛି ସେଇଦିନ ପାଶ୍ ହୋଇ ବ୍ୟାଙ୍କ୍‌କୁ ଚାଲିଯାଉଛି ।

ଆଦିତ୍ୟ ଏସବୁ ଜାଣେ । ତା' ବିରୁଦ୍ଧରେ ଏଯେଉଁ ଗୁଞ୍ଜନ, ସେ ସବୁ ବି ବେଳେ ବେଳେ କାନରେ ବାଜେ । ଯିଏ ଯେତେ ଯାହା କହିଲେ ବି କିଛି କୁହେ ନାହିଁ । ହସି ଦିଏ ଖାଲି ।

ସେ ଜାଣେ, ଟ୍ରେଜେରୀର ଚାକିରୀମାନେ ଖଣ୍ଡାଧାରର ବାଟ । ମାପି ଚୁପି ପାଦ ପକାଇବାକୁ ପଡ଼ିବ । ଟିକିଏ ବେପରୁଆ ହେଲେ ଆଣ୍ଠୁ ମାଡ଼ି ପଡ଼ିବ । ଲହୁ ଲୁହାଣ ହେବ । ସେତେବେଳେ ପିଠିରେ ପଡ଼ିବାକୁ କେହି ନ ଥିବେ । ଦୂରରେ ଥାଇ ଟିକିଏ ଆହା ଉହୁ ଅବଶ୍ୟ ହେବେ । ତା' ପରେ ଯେ ଝା ବାଟରେ ଯିଏ । ଯାହା ମୁଣ୍ଡ ଉପର ବିଧବା ମା' ଅବିବାହିତା ଭଉଣୀ, ଅବୋଧ ସ୍ତ୍ରୀ, ଆଉ ଦୁଇଦୁଇଟା ନାବାଳକ ପିଲାର ଦାୟିତ୍ୱ, ଯାହାର ନିଜର ବୋଲି ବାଡ଼ି ଗୋବରେ ଗୋବେ ଜମି ନାହିଁ, ତାର ବେପରୁଆ ହେଲେ ଚଳେ ନାହିଁ । ପାଦ ଚିପି ଚିପି ଆଗେଇବାକୁ ହୁଏ ।

ଆଗକୁ ପଛକୁ ଦେଖିବାକୁ ପଡ଼େ । ସେଥିପାଇଁ ବିଲ୍ ପାଇବା ମାତ୍ରେ ସେ ତା'ର ନଖ ଠାରୁ ଶିଖ ପର୍ଯ୍ୟନ୍ତ ତନ୍ନ ତନ୍ନ କରି ଦେଖେ । ବିଲ୍‌ର ହେଡ୍ ଠାରୁ ଆରମ୍ଭ କରି Drawing officerଙ୍କ ଦସ୍ତଖତ, ଅଫିସର ମୋହର ଇତ୍ୟାଦିକୁ ଥରେ ଥରେ କରି ପରଖେ । ପୁରା ସନ୍ଦେହ ମୁକ୍ତ ନ ହେବାଯାଏ, ସେ ତାକୁ ପାଶ୍ କରେ ନାହିଁ ।

ଲୋକେ ଏଣେ ଉଚ୍ଛନ୍ନ ହୁଅନ୍ତି । ପାଟି ତୁଣ୍ଡ କରି କାଉଣ୍ଟର ଭାଙ୍ଗନ୍ତି । ଅଫିସରଙ୍କ ପାଖକୁ ତା ନାଁରେ ଅଭିଯୋଗ ଯାଏ । ଅଫିସର ତାକୁ ଡକାଇ ପଠାନ୍ତି । ବେଳେବେଳେ ତାଗିଦ୍ ବି କରନ୍ତି । ଏମିତି ଚାଲୁଥାଏ ତା' ଜୀବନ ।

କେଉଁଠି ପୁଣି Bill ଆସି ପହଞ୍ଚିବା ଆଗରୁ ସୁପାରିଶ ପହଞ୍ଚି ସାରିଥାଏ । କୋଉ ମନ୍ତ୍ରୀଙ୍କ ଦପ୍ତରରୁ କି ଯନ୍ତ୍ରୀଙ୍କ ପି. ଏ. ପାଖରୁ ତାଗିଦ୍ କରାଇ ଦିଆଯାଇଥାଏ । ବିଲ୍ ଯାଉଛି, ବୁଝି ଖବର ଦାର – ତା' ପାଇଁ ଯେମିତି Red Carpet treatment ଦିଆଯାଏ । ମନ୍ତ୍ରୀଙ୍କ Bill ବୋଲି କଥା–ସାଇରନ୍ ବାଜୁଥିବ । ସିକ୍ୟୁରିଟୀ ଭାନ୍ ବାଟ କଢ଼ାଇ ଯାଉଥିବ । ଆଡ଼େଇ ଯାଅ – ଆଡ଼େଇ ଯାଅ – ମନ୍ତ୍ରୀ ଆସୁଛନ୍ତି ତାଙ୍କ ସମୟର ମୂଲ୍ୟ ଅଛି । ଲକ୍ଷ ଲକ୍ଷ ଜନତା ତାଙ୍କୁ ଅନେଇ ବସିଥିବେ । କେଉଁଠି ପୋଲର ଫିତା କାଟିବେ, କେଉଁଠି ଖାଲର ଶୁଭ ଦେବେ । କାମର କ'ଣ ଶେଷ ଅଛି ? ତାଙ୍କ ବିଲ୍ ବି ତ ସେମିତି ଜରୁରୀ । ବିଲ୍ ଅଟକି ଗଲେ ସେଣେ ଦେଶର ଚକା ଗଡ଼ିବା ବନ୍ଦ ହୋଇଯିବ ।

ଆଦିତ୍ୟ ଏତେ କଥା ବୁଝେ ନାହିଁ । କୋଉଟା ଭି.ଆଇ. ପି. କାଗଜ ଆଉ କୋଉଟା ଖଟିଖିଆ କାଗଜ ଏସବୁ ପରଖି ଦେଖିବା ପାଇଁ ତା'ର ବେଳ ନ ଥାଏ । ସେଇ ଦଶଟା ବେଳେ ଆସି ସିଟ୍‌ରେ ବସେ । ଛାଡ଼ିଲା ବେଳକୁ କେଉଁ ଦିନ ସନ୍ଧ୍ୟା ସାତ ତ କେଉଁ ଦିନ ଆଠ । ଯେଉଁ ଦିନ ଯେମିତି କାମ ।

ତଥାପି ବିଲ୍‌ର ପାହାଡ଼ ଗଦା ହେଉଥାଏ । ତାରି ଭିତରେ ମୌନୀ ବାବା ଭଳି ଆଦିତ୍ୟ ସାଧନାରେ ବସିଥାଏ । କୁବ୍‌ଜପୃଷ୍ଠ, ନ୍ୟୁବ୍‌ଜ ଦେହ, ଧ୍ୟାନୀ ବଗଟିଏ ପାଣି ଭିତରକୁ ଅନେଇ ବସିଥିଲା ଭଳି ସେ ବିଲ୍ ଉପରେ ଆଖି ଦେଇ ବସି ଥାଏ ।

ଆଦିତ୍ୟ ଜାଣେ, ଏଇ କାମ କରୁ କରୁ ଦିନେ ତା'ର ମେରୁଦଣ୍ଡ ବଙ୍କା ହୋଇଯିବ । ଆଖିରୁ ପାଣି ମରିବ । କାହୁଁ କାହୁଁ ମାଡ଼ି ଆସିବ ଗ୍ୟାସଟ୍ରିକ୍, ଅଲସର୍, ଡାଏବେଟିସ୍, ଆଜ୍‌ମା ଭଳି ରୋଗମାନ । ତା ପରେ ଦିନେ ସବୁ ଶେଷ ହୋଇଯିବ ।

ଆଦିତ୍ୟ ନିଜର କାମ ବୁଝେ । ଯାହାକୁ ସିଏ ପାସ୍ କରି ଛାଡ଼ିଦିଏ, ହର, ବ୍ରହ୍ମା ଆସିଲେ ବି ସେଥିରେ କିଚ୍ଛି ଓଲମ୍ ବିଲମ୍ ପାଇବେ ନାହିଁ । ଆଦିତ୍ୟର ବିଲ୍ ଛାଣିଲେ ଅଫିସର୍ ବି' ଆଖିବୁଜି ଦସ୍ତଖତ ମାରନ୍ତି ।

ସେଇ ଆଦିତ୍ୟକୁ ଆଜି ସସ୍‌ପେଣ୍ଡ କରି ଦିଆଯାଇଛି ।

ସେ ଦିନ ବି ତ ଅନ୍ୟ ଦିନ ପରି ଆଦିତ୍ୟ ଠିକ୍ ସମୟରେ ଆସି ନିଜ ଚେୟାର୍‌ରେ ବସିଥିଲା । ଆଜିର କାମ ବିଷୟରେ ମନେ ମନେ ଗୋଟାଏ ତାଲିକା କରି ନେଇଥିଲା ତା' ପରେ କାମ ଭିତରେ ବୁଡ଼ିଯାଇଥିଲା ।

ହଠାତ୍ ଅଫିସର୍‌ଙ୍କ ଚାମ୍ବରରୁ ଜରୁରୀ ତଲବ ଆସିଲା ।

ଆଦିତ୍ୟ ବୁଝିପାରିଲା ନାହିଁ । ଗତ କାଲି କ'ଣ କୋଉଠି କିଛି ଏପଟ ସେପଟ ହୋଇଛି ? ମନେ ପକାଇବାକୁ ଚେଷ୍ଟା କଲା । ଗତ କାଲି ଦରମା ବିଲ୍‌ର ତାରିଖ ଥିଲା । ଏ ସବୁଥିରେ ପ୍ରାୟ କିଛି ଭୁଲ୍ ନ ଥାଏ ।

ତା' ହେଲେ କ'ଣ ହୋଇପାରେ ଏ ଅସମୟଡ଼ାକରାର ଅର୍ଥ । ଆଦିତ୍ୟ ଅଫିସରଙ୍କ ଚ୍ୟାମ୍ବରରେ ପଶିଲା । ବାତାବରଣ କେମିତି ଅନ୍ୟ ଦିନମାନଙ୍କଠାରୁ ଅଲଗା ଲାଗିଲା । ଅଫିସର୍ ସବୁଦିନ ଭଳି ତାକୁ ଥଟ୍ଟାଳିଆ ଭାଷାରେ ସ୍ୱାଗତ କରୁନାହାଁନ୍ତି । ବରଂ ଟେବୁଲ୍ ଉପରେ ପଡ଼ିଥିବା ଖଣ୍ଡେ ଟାଇପ୍ କରା ଚିଠି ଆଡ଼କୁ ଗମ୍ଭୀର ଭାବରେ ଅନାଇ ମୁଁଣ୍ଡ ପୋତି ବସିଛନ୍ତି ।

ତାଙ୍କ ପାଖରେ ଖଣ୍ଡେ ଫାଇଲ୍ ଧରି ଠିଆ ହୋଇଛନ୍ତି, ବଡ଼ବାବୁ । ସେ ମଧ ତା' ଆଡ଼କୁ ଅନାଉ ନାହାନ୍ତି ।

ଆଦିତ୍ୟ ଆଶ୍ଚର୍ଯ୍ୟ ହେଲା । କଥା କ'ଣ ? ଦି' ଜଣ ଯାକଙ୍କୁ ସେ ଉଇସ୍ କଲା । ଅଥଚ କାହାରି ପାଟିରୁ ପଦେ ହେଲେ କଥା ବାହାରୁ ନାହିଁ । ପଥର ମୂର୍ତ୍ତି ଭଳି ଦୁହେଁ' ଯାକ ସ୍ଥିର ।

ହଠାତ୍ ଅଜଣା ଆଶଙ୍କାରେ ଆଦତ୍ୟର ଛାତି ଥରି ଉଠିଲା । ନିଶ୍ଚୟ ଗୁରୁତର କିଛି ଘଟିଛି ଏବଂ ତା'ର କେନ୍ଦ୍ରରେ ଅଛି ସେ ନିଜେ ।

ଅଗତ୍ୟା ସେ ଡାକିଲା – ସାର୍ । ତା କଣ୍ଠସ୍ୱର ଥରି ଉଠିଲା ।

ବଙ୍କିମ ବାବୁ ଗତ ପାଞ୍ଚ ବର୍ଷ ହେଲା ଏ ଟ୍ରେଜେରୀର ଦାୟିତ୍ୱରେ ଅଛନ୍ତି ।

ଆଦିତ୍ୟକୁ ସେ ଶ୍ରଦ୍ଧା କରନ୍ତି । ସେ ଜାଣନ୍ତି ଯିଏ ଯେତେ କହିଲେ ମଧ ଆଦିତ୍ୟ କ'ଣ !

ବଙ୍କିମ ବାବୁ ମୁଣ୍ଡ ଟେକିଲେ । ତାଙ୍କ ଛାତି ଭିତରୁ ଗୋଟାଏ ଗହିରିଆ ନିଶ୍ୱାସ ବାହାରି ଆସିଲା । ସେ କହିଲେ – ମୁଁ ତୁମକୁ ଆଗରୁ କହିଥିଲି ସେମାନଙ୍କ ସାଙ୍ଗରେ ତମେ ପାରିବ ନାହିଁ ।

ଆଦିତ୍ୟର ମନେ ପଡ଼ିଗଲା ।

ମାତ୍ର କିଛି ଦିନ ତଳର ଘଟଣା । କେଉଁ ଯନ୍ତ୍ରୀଙ୍କ ଦପ୍ତରରୁ ବନ୍ଧବାଡ଼ ମରାମତ ବାବଦରେ ପାଞ୍ଚଲକ୍ଷ ଟଙ୍କାର ବିଲ୍ ଆସିଥିଲା । ତା' ପାଇଁ ଯଥାରୀତି ଫୋନ୍ ଯୋଗେ ତାଗିଦା ବି ଆସିଥିଲା । ପୁଣି ପଛେ ପଛେ ଆସିଥିଲେ ଦୁଇ ଧୁରନ୍ଧର ଡାହାଳ କୁକୁର ଭଳି ଲୁହା ବାଲା ପିନ୍ଧା ସିନ୍ଦୂର କଳି ଟଣା ଦୁଇ ଦାଦା– ସେମାନେ ପୁଣି କୋଉ ମନ୍ତ୍ରୀଙ୍କ ଆଗ ପଛରେ ବୁଲିବା ବାଲା ।

ବଙ୍କିମ ବାବୁ ତାଙ୍କୁ ଡକାଇ ନିର୍ଦ୍ଦେଶ ଦେଇଥିଲେ । ଆଦିତ୍ୟ ମନେ ମନେ ଅସନ୍ତୁଷ୍ଟ ହୋଇଥିଲା । ଏଇ ସବୁ ବଡ଼ ଲୋକମାନେ ଭାବନ୍ତି ଯେ, ସଂସାର ତାଙ୍କରି ନିର୍ଦ୍ଦେଶରେ ନାଚିବ । ଟିକିଏ ଏପଟ ସେପଟ ହେଲେ ଯେମିତି ପୃଥ୍ୱୀ ପ୍ରଳୟ ହୋଇଯିବ ।

ଯାହାହେଉ, କର୍ତ୍ତାର ଇଚ୍ଛାରେ କର୍ମ । ସେ ବଙ୍କିମ ବାବୁଙ୍କ ହୁକୁମ ଶୁଣି ବାହାରି ଆସିଲା । ସେତେବେଳେ ସେ କ'ଣ ଜାଣିଥିଲା, ଆଳୁ ଖୋଳୁ ଖୋଳୁ ମହାଦେବ ବାହାରି ପଡ଼ିବ ବୋଲି ।

ଆଦିତ୍ୟ ବିଲ୍ ଦେଖୁଛି.... ।

ସରକାରୀ ଅର୍ଥ ମଞ୍ଜୁରୀ, ଆଦେଶନାମା ଏସବୁ ଠିକ୍ ଅଛି । ଆଉ ବାକି ଯାହା, ଦୁଇ ଚାରିଟା ଜିନିଷ ମିଳାଇବା କଥା, ଦେଖିନେବା ପରେ, ହଠାତ୍ ଡ୍ରଇଁ ଅଫିସରଙ୍କ ଦସ୍ତଖତ୍ ଆଉ ସିଲ୍ ପାଖରେ ତା' ନଜର ସ୍ଥିର ହୋଇଗଲା ।

ଅଫିସ୍ ଟି ଜଣାଶୁଣା । ପ୍ରତି ମାସରେ ପଚିଶ/ପଚାଶ ବିଲ୍ କାରବାର । ଦସ୍ତଖତ୍ ସିଲ୍ ଏସବୁ ତା'ର ଅପରିଚିତ ନୁହେଁ ।

କାଉଣ୍ଟର ଏପଟେ ବିଲ୍ ପଛରେ ଆସିଥିବା ବାବୁ ଦୁହେଁ, ତାକୁ ଲକ୍ଷ୍ୟ କରୁଛନ୍ତି । ଅଫିସ୍‌ର ଟ୍ରେଜେରୀ ସରକାର କାହିଁ କେଉଁଠି ନଜରରେ ପଡୁନାହିଁ ।

ଜଣେ ବାବୁ କହିଲେ – ଟିକେ ଜଲ୍‌ଦି କର ଆଜ୍ଞା...... ଭାଇ (ମନ୍ତ୍ରୀଙ୍କ ନାଁ ଧରି) ୱେଟ୍ କରିଛନ୍ତି । ଆମେ ଏଠୁ ଗଲେ ଟୁର୍‌ରେ ବାହାରିବେ । ତିନି ପୋଲିଆ ଡାକବଙ୍ଗଳାରେ ଲଞ୍ଚ.... ଚାରିଟା ବେଳେ ସେଠି କୁକୁଡ଼ା ଫାର୍ମ ଉଦ୍‌ଘାଟନ.... । କିରେ ନିତିଆ ?

ନିତିଆ ନାମ ଧାରୀ ଅନ୍ୟ ଯୁବକଟି ସାଙ୍ଗେ ସାଙ୍ଗେ ନିଜ ପାୱାରଫୁଲ ଆଣ୍ଟେନାରେ ବନ୍ଧୁଙ୍କ ଅବ୍ୟକ୍ତ କଥାକୁ ଧରି ପକାଇ ଆରମ୍ଭ କଲେ... ଶହେ କିଲୋମିଟର ବାଟ... ଅଥଚ ଏଇଠି ହେଲାଣି ସାଢ଼େ ବାଆର... । ଭାଇତ ଠିକ୍ ଦି'ଟାରେ ଲଞ୍ଚରେ ନ ବସିଲେ ରାଗରେ ନିଆଁ ବାଣ ହୋଇଯିବେ ।

ଆଦିତ୍ୟ କାନରେ ଏସବୁ ପଡୁଥିଲା । ନ ପଡ଼ିବାର କିଛି କାରଣ ନ ଥିଲା । ବରଂ ତା' କାନରେ ପଡ଼ିବା ପାଇଁ ହିଁ ଏ ସବୁ କୁହାଯାଉଥିଲା । ଏସବୁ କଥା ଯେ, ତା'କୁ ଡରାଇବା ପାଇଁ କୁହାଯାଉଛି, ଏଥିରେ ତାର ସନ୍ଦେହ ନଥିଲା ।

ଏମିତି ଅବସ୍ଥାରେ ତା' ମୁଣ୍ଡ ବେଶୀ ଗରମ ହୋଇଯାଏ । କ'ଣ ଗୋଟାଏ କରି ପକାଇବାକୁ ମନ ଛଟପଟ ହୋଇଉଠେ । ମାତ୍ର ଧଣ୍ଡ ସାପଟିଏ ଯେତେ ଚେଷ୍ଟା କଲେବି ଫଣାଟିଏ କେଉଁଠୁ ଟେକିବ ?

ସେ ନୀରବରେ ବିଲ୍ ଆଡ଼କୁ ଅନାଇ ଦେଖୁ ଦେଖୁ ଗୋଟାଏ ଜାଗାରେ ତା' ଦୃଷ୍ଟି ସ୍ଥିର ହୋଇଗଲା । ଅଫିସଆଲ ସିଲ୍ ତା'ର ମନେ ହେଉଛି ଟିକିଏ ଅଲଗା ଲାଗୁଛି । ଦସ୍ତଖତ ମଧ୍ୟ ଟାଲି ନ କରି ପାରେ ।

ଆଦିତ୍ୟ କିଛି ସମୟ କ'ଣ ଭାବିଲା । କ'ଣ କରିବ ମନେ ମନେ ସ୍ଥିର କରି ନେଲା । ତା' ପରେ ଖଣ୍ଡେ ସ୍ଲିପ୍ ଟାଣିଆଣି ଲେଖିଲା The signature of the drawing officer and.....

କାଉଣ୍ଟର ସେପଟୁ ଘଡ଼ଘଡ଼ିଆ କଣ୍ଠରେ ଶୁଣାଗଲା – କଥାଟା ଭଲ କଲ ନାହିଁ ।

ଆଦିତ୍ୟ ମୁହଁ ଉଠାଇ ଅନାଇଲା ବେଳକୁ ସେପଟେ କେହି ନ ଥିଲେ । ବଙ୍କିମ ବାବୁ ଅବଜେକ୍ସନ ସ୍ଲିପ୍‌ରେ ଦସ୍ତଖତ କଲାବେଳେ ପୁଣି ସେଇ କଥା କହିଲେ – କଥା ଟା ଭଲ ହେଲା ନାହିଁ ଆଦିତ୍ୟ । ସେମାନଙ୍କ ସାଙ୍ଗରେ ତୁମେ ପାରିବ ନାହିଁ ।

ଏଇ ମୁହୂର୍ତ୍ତରେ ଆଦିତ୍ୟର ସବୁ ମନେ ପଡୁଛି ।

ବଙ୍କିମ ବାବୁ ମୁଣ୍ଡ ପୋତି ତା ହାତକୁ କାଗଜ ଖଣ୍ଡକ ବଢ଼ାଇଦେଲେ । ଆଦିତ୍ୟ ପଢ଼ିଲା – ପ୍ରଥମେ ଅଭିଯୋଗ – ତା' ପରେ ଦଣ୍ଡ – Pending departmental Proceeding Sri Aditya Samantaray is suspended ଇତ୍ୟାଦି ।

ଆଦିତ୍ୟ ଆଉ ଆଗକୁ ପଢ଼ି ପାରିଲା ନାହିଁ । ତା ମୁଣ୍ଡ ବୁଲାଇବାକୁ ଆରମ୍ଭ କରିଥିଲା । ତା' ଆଖି ଆଗରେ ହଠାତ୍ ଭାସି ଉଠିଲା..... ପଟା ପୋଖରୀ ଉପରେ ଦୁଇ ବଖରା ନୁଆଁଣିଆ ଚାଳଘର ପିଣ୍ଡାରେ ଧଇଁକାଶରେ ପେଲି ହେଉଥିବା ସତୁରୀ ବର୍ଷର ଚମ ଧୁଡୁଧୁଡୁ ବୁଢ଼ୀଟିଏ – ଦୁଇ ଆଖିରେ ପରଳ – ହାତ ପାଖର ଜିନିଷ ବି ଦିଶେ ନାହିଁ । ଗଣଗଣିଆ କଣ୍ଠରେ କାହାକୁ ଯେମିତି ଡାକି ପଚାରୁଛି – ଆ.... ଲୋ....ବୋହୂ..... ଆଦି ମୋର ଆଇଲା ? ଟିକିଏ ଆଗରେ ଥାଳିଆଟିରେ ମୁଢ଼ି ମୁଠାଏ ଥୋଇ ଧରା ପରା ଲଗେଇଚନ୍ତି ଦୁଇଟି ଅବୋଧ ପିଲା, ଜଣେ କହୁଛି – ବୋଉ, ଦେଖିଲୁ ସିନୁ ମୋ ମୁଢ଼ି ଯାକ ଖାଇ ଯାଉଛି । ଏପଟ କୋଠରୀରୁ ବାହାରି ଆସୁଛି ଶତେଇଶି ବର୍ଷରେ ସତୁରୀ ବର୍ଷ ବୟସର ଭାରରେ ନଇଁ ପଡ଼ିଥିବା ରଫୁ ପକା କନ୍ତା ଶାଢ଼ୀ ପିନ୍ଧା – ସର୍ବଂସହା ଧରିତ୍ରୀ – ପିଲାଙ୍କ ପାଖକୁ ଯାଇ ସେମାନଙ୍କୁ ବୋଧ ଦେଉଛି । ରୋଗିଣା ଶାଶୁଙ୍କୁ କ'ଣ ବୁଝାଉଛି, ଆଉ ଆଖିରଖିଛି ଦାଣ୍ଡ କବାଟ ଆଡ଼େ । କେତେବେଳେ ଜଞ୍ଜିର ଖଡ଼ ଖଡ଼୍ ହୋଇ ବାଜି ଉଠିବ, ଆଉ ଗୋଟିଏ କ୍ଲାନ୍ତ କଣ୍ଠରୁ ଶୁଣାଯିବ – ଆରେ ସିନୁ !

ଆଦିତ୍ୟ ଚେୟାର୍‌ଟାକୁ ଧରି ଠିଆ ହୋଇ ପଡ଼ିଲା । ବଙ୍କିମ ବାବୁଙ୍କ ପାଟିରେ କଥା ନ ଥିଲା । ବଡ଼ ବାବୁ ପାଖକୁ ଆସିଲେ । କାନ୍ଧରେ ହାତ ଥୋଇ କହିଲେ – ଏତିକିରେ ଭାଙ୍ଗି ପଡ଼ିଲେ ଚଳିବ ନାହିଁ ଆଦିତ୍ୟ । ନଡ଼ିଆର କେଉଁ ଶିରରେ ପାଣି ବହୁଛି, ଏକଥା କ'ଣ କେହି ଜାଣିନାହାନ୍ତି ? ସମସ୍ତେ ଜାଣନ୍ତି । ଚାର୍ଜସିଟ୍ ହେଉ । ଖାଲି କହିଦେଲେ ତ ହୋଇଯିବ ନାହିଁ । ପ୍ରମାଣ ଦରକାର । କୋଉଠୁ ମିଳିବ ପ୍ରମାଣ ?

ବଙ୍କିମବାବୁ ମୁହଁ ଖୋଲିଲେ ଏବଂ କହିଲେ– ତମେ ସରକାରଙ୍କର ପାଞ୍ଚ ଲକ୍ଷ ଟଙ୍କା ବଞ୍ଚେଇ ଦେଇଛ । ଗୋବର୍ଦ୍ଧନ ବାବୁଙ୍କ ସାଙ୍ଗରେ ମୋର କଥାବାର୍ତ୍ତା ହୋଇଯାଇଛି ।.ସେ ସ୍ୱୀକାର କଲେ, ଏଭଳି କୌଣସି ବିଲ୍ ତାଙ୍କ

ଅଫିସ୍ ତରଫରୁ ନିକଟରେ ସବ୍‌ମିଟ୍ ହୋଇ ନାହିଁ, ସେ ଏନ୍‌କ୍ୱାରୀ କରି ଦେଖୁଛନ୍ତି ।

ଅଫିସର୍ ବୁକ୍ ଅଫ୍ ଡ୍ରୟାଲ୍ କେମିତି ଏଥିପାଇଁ ଇସ୍ୟୁ ହେଲା ? ଟ୍ରେଜେରୀ ସରକାର କେମିତି ବିଲ୍ ଆଣିଲା ? କଥା ବହୁତ ବାଟ ଯିବ ? ମୁଁ କହୁଛି କେହି ତମ ଦେହରେ ଟିପ ଦେଇପାରିବେ ନାହିଁ ।

ଏସବୁ କଥା ଆଦିତ୍ୟ କାନରେ ପଡୁଥିଲା, ପୁଣି ପଡୁ ନଥିଲା । ତା' ଆଖିରେ ପଡୁଥିଲା ପାଞ୍ଚଯୋଡ଼ା ଭୋକିଲା ଆଖି, ଆଉ ତା' ଛାତି ଭିତର ମଚ୍ଚି ହୋଇଯାଉଥିଲା ।

ବଡ଼ ବାବୁ ବହୁଦର୍ଶୀ ଲୋକ । ତା ବାହୁ ଧରି ବାହାରକୁ ବାହାର କରି ଆଣୁ ଆଣୁ କହିଲେ, – ତୁମେ ଘରକୁ ଚାଲି ଯାଅ, ମୁଁ ସଞ୍ଜବେଳେ ତମ ଘରେ ପହଞ୍ଚୁଛି । ବାଟ ଗୋଟାଏ କିଛି ବାହାର କରିବାକୁ ପଡ଼ିବ, ଭୟ କର ନାହିଁ । ସାରା ଅଫିସ୍ ତମ ପଛରେ ଅଛି ।

ମୁଣ୍ଡ ପୋତି ଆଦିତ୍ୟ ରାସ୍ତାରେ ଚାଲିଛି, ହାତରେ ସାଇକେଲ । ଆଜି ଆଉ ସାଇକେଲ ଚଲାଇବାକୁ ତା'ର ଯେମିତି ଶକ୍ତି ନାହିଁ । ହଠାତ୍ କାହାର ଠୋ ଠୋ ହସରେ ତା'ର ଧ୍ୟାନ ଭାଙ୍ଗିଗଲା । ଛକ ମୁଣ୍ଡ ଚା ଦୋକାନ ଆଗରେ ଅଣ୍ଟାରେ ହାତ ଦେଇ ସିନେମାର ଭିଲିୟାନ୍ ଭଳି ଠିଆ ହୋଇଛନ୍ତି ସେଦିନର ସେଇ ଦୁଇଜଣ ଯୁବକ । ଆଖିରେ କଳା ଗଗଲସ୍ । ଷ୍ଟାଣ୍ଡ୍ ମରା ହୋଇ ରଖାଯାଇଛି ହୀରୋହୋଣ୍ଡା । ଜଣେ ଯୁବକ ଆକାଶ ଦୃଷ୍ଟି ହୋଇ କହୁଥିଲେ – ପଥ ପଚାରି ପିତା ଘର ଯିବ/ ଆଉ ଟ୍ରେଜେରୀ ମନ ନ କରିବ ।

ଆଦିତ୍ୟର ମୁଣ୍ଡ ଆହୁରି ତଳକୁ ମାଡ଼ି ହୋଇଗଲା । ଘୂର୍ଣ୍ଣି ବାତ୍ୟାରେ ଶୁଖିଲା ପତ୍ର ଉଡ଼ିଗଲା ଭଳି ■ ଅଟ୍ଟହାସ୍ୟର ବାତ୍ୟାରେ ସେ ସତେ ଯେମିତି ଉଡ଼ିବାରେ ଲାଗିଲା । ତାର ମନେ ହେଲା, ସଂସାରର ସବୁ ଲୋକ ଯେମିତି ଏକତ୍ରିତ ହୋଇ ତା ଆଡ଼କୁ ଆଙ୍ଗୁଠି ଦେଖାଇ କହୁଛନ୍ତି – ଦେଖ ଦେଖ – ଶୁଣ ଶୁଣ – ଚିହ୍ନି ରଖ – ଏଇ ଲୋକଟା... ଏଇ ଲୋକଟା ।

ଆଦିତ୍ୟ ଉଡ଼ିଚାଲିଲା ।

ସଞ୍ଜ ହୋଇଆସୁଛି । ଆକାଶରୁ ନୀଡ଼ବାହୁଡ଼ା ପକ୍ଷୀର କୋଳାହଳ ଶାନ୍ତ ହୋଇଗଲାଣି । ଗୋଟିଏ ଦିଓଟି ତାରା ମଧ୍ୟ ଫୁଟି ଉଠିଲେଣି କେଉଁଠି କେମିତି ।

ନଈ କୂଳର ଏଇ ନିର୍ଜନ ବେଞ୍ଚରେ ଆଦିତ୍ୟ ଏକୁଟିଆ ବସିଛି । ବାଡ଼କୁ ଆଉଜି ପଡ଼ିଛି ମୁଣ୍ଡ । ଆଖି ଦିଓଟି ବନ୍ଦ ହୋଇଛି । ପାଖରେ ଡେରା ହୋଇଛି ସାଇକେଲଟିଏ ।

ସ୍ଲେଟ୍ ରଙ୍ଗର ଏଇ ଆକାଶ ଭଳି ତା'ର ଜୀବନ ଆକାଶ ବି ଆଜି ଧୂସର ହୋଇଉଠିଛି । ଘରକୁ ଯିବାକୁ କେମିତି ସାହସ ସଂଗ୍ରହ କରିପାରୁନାହିଁ । କେମିତି ସେ ଯାଇଁ ପାଞ୍ଚ ଯୋଡ଼ା ଆଖି ଆଗରେ ମୁଣ୍ଡ ନୁଆଁଇ ଠିଆ ହେବ ? କ'ଣ କହିବ ସେମାନଙ୍କୁ ? କେଉଁ ଆଖିରେ ଯଦି ଅବିଶ୍ୱାସର ସାମାନ୍ୟ ଝଲକଟିଏ ଫୁଟି ଉଠିବ, ତେବେ ସେ ତାକୁ ସହି ପାରିବ ତ ?

ହେ ଭଗବାନ, ଜୀବନର ଏ କେଉଁ ଦୋଛକିରେ ଆଣି ଠିଆ କରିଦେଲ ? ହଠାତ୍ ତା କାନ୍ଧରେ କାହାର ହାତ ପଡ଼ିଲା । ତା' ସାଙ୍ଗେ ସାଙ୍ଗେ ଶୁଣାଗଲା – ଏ କିଏ ଆଦିତ୍ୟ ନା ?

ଆଦିତ୍ୟ ଆଖିଖୋଲି ଅନାଇଲା । ଚିହ୍ନିବାକୁ ଟିକିଏ ବିଳମ୍ବ ହେଲା । ଆଗରେ ଠିଆ ହୋଇଛନ୍ତି ତାର କଲେଜ ଜୀବନର ଅଧକ୍ଷ ରାମ ନାରାୟଣ । ଏବେ ଅବସର ନେଲେଣି । ଏଇ ସହରରରେ ରହୁଛନ୍ତି । ମାସକରେ ଥରେ ଟ୍ରେଜେରୀ ଯାଆନ୍ତି ପେନ୍‌ସନ୍ ଆଣିବାକୁ ଆଉ କର୍ମ ଜୀବନର ବନ୍ଧୁମାନଙ୍କୁ ଭେଟିବାକୁ । ଏଇଥିପାଇଁ ବ୍ୟାଙ୍କ ଜରିଆରେ ପେନ୍‌ସନ୍ ନେବାକୁ ସେ ମନ କରିନାହାନ୍ତି ।

ମାସକରେ ଦିନଟାଏତ । ହେଲା ଏବେ ଟିକିଏ ହଇରାଣ ହେବେ । କେତେ ପୁରୁଣା ସହକର୍ମୀଙ୍କ ସହ ଦେଖା ହେବ । ଏ ସୁଯୋଗ ମିଳିବ କୁଆଡୁ ?

ସେଇ ରାମ ନାରାୟଣ ଆଗରେ ଠିଆ ହୋଇଛନ୍ତି । ଆଦିତ୍ୟ ହଠାତ୍ ଯେମିତି ଭାଙ୍ଗି ପଡ଼ିଲା । ଭିତରେ ଭିତରେ ମନ୍ଥି ହେଉଥିବା ଉଚ୍ଛ୍ୱାସ ଯେମିତି ବନ୍ଧ ଭାଙ୍ଗି ବାହାରି ଆସିବାକୁ ବାଟ ପାଇଗଲା । ଉଦ୍‌ଗତ କୋହକୁ କୌଣସି ମତେ ରୋକି ନ ପାରି ଆଦିତ୍ୟ କହିଲା, – ସା ...ର୍ ।

ରାମ ନାରାୟଣ ତା'କୁ କୋଳେଇ ନେଲେ । ଦୁଇବାହୁ ବିସ୍ତାର କରି ନିଜର ଛାତି ଭିତରେ ସତେ ଯେମିତି ତା'କୁ ଲୁଚାଇ ପକାଇ କହିଲେ, – ଡୋଣ୍ଟ୍ କ୍ରାଏ ମାଇଁ ବଏ । ମୁଁ କ'ଣ ତୁମକୁ ଚିହ୍ନି ନାହିଁ ? ଦୁଃଖ କରନା – ପୃଥିବୀ ଯଦି ଚୋର ଡକାୟତରେ ପୂର୍ଣ୍ଣ ହୋଇଯାଏ, ତାହେଲେ ତମେ କ'ଣ ସେଇଆ ହବ ନା ଚେଷ୍ଟା କଲେ ବି ହୋଇପାରିବ ? ଯିଏ ମହାନ୍ ସେ ମହାନ୍ ହୋଇ ରହିଥାଏ କାଳକାଳକୁ । ଭଲ

ମଣିଷ ହେଉଛି ଏମିତି ଏକ ସଫା ଚାଦର ଯେଉଁଥିରେ କି କାଳିର ଦାଗ ମୋଟେ ଲାଗେ ନାହିଁ – ଆସ, ମୁଁ ତୁମକୁ ତୁମ ଘରେ ଛାଡ଼ି ଦେଇଯିବି । ଟ୍ରେଜେରୀରେ ଏଇ କଥା ଶୁଣିଲା ବେଳୁ ମୁଁ ତୁମକୁ ମନେ ମନେ ଖୋଜୁଥିଲି । ଭଗବାନ୍ ବଡ଼ଲୋକ ଭାଗ୍ୟକୁ ଦେଖାହୋଇଗଲା ।

ଆଦିତ୍ୟକୁ ସେମିତି ଦୁଇ ହାତରେ କୁଣ୍ଢାଇ ରାମନାରାୟଣ ତାକୁ ତକୁ ଉଠାଇଲେ । ଆଦିତ୍ୟର ମନେ ହେଲା, ସତେ ଯେମିତି ବଡ଼ ଦେଉଳରୁ ଦୁଇ ବ୍ୟଗ୍ର ମହାବାହୁ ମେଲି ଦେଇ ଜଗତର ସାଇଁ ତା'କୁ କୋଳକୁ ଉଠାଇ ନେଉଛନ୍ତି ।

ସେ ଅନେକ ସମୟ ପରେ ସ୍ୱସ୍ତିର ନିଶ୍ୱାସ ପକାଇଲା ।



## ମର୍ଣ୍ଣିଂଓ୍ୱାକ୍‌ର କବିତା

ସେମାନେ ଚାଲିଥିଲେ । କେହି ଦଳବାନ୍ଧି, କେହି କେହି ଯୋଡ଼ି ଯାଉଁଳି ହୋଇ, କେହି ଅବା ଏକୁଟିଆ । ଚାଲିରେ ନିଆରା ଛନ୍ଦ । କେହି ଚାଲୁଛନ୍ତି ମିଲିଟାରୀ ଠାଣିରେ । ଛନ୍ଦୋବଦ୍ଧ ମାର୍ଚ୍ଚିଂ ପଦକ୍ଷେପରେ ଲେଫ୍‌ଟ –ରାଇଟ୍ – ଲେଫ୍‌ଟ – ପାଦ ନିୟମିତ ମାପରେ ଉଠୁଛି ପୁଣି ପଡୁଛି । କିଏ ଚାଲୁଛି ଠିକ୍ ମୂଷିକ ଠାଣିରେ ଚାରିଆଡ଼କୁ ତରଙ୍ଗ ତରଙ୍ଗ ହୋଇ ଅନାଇ ଅନାଇ ଚଞ୍ଚଳ ପଦକ୍ଷେପରେ । କାହାର ଅବା ଶଶକ ଗତି–ଊର୍ଦ୍ଧ୍ୱଶ୍ୱାସରେ କେତେ ବାଟ ଧାଇଁ ଯିବା ପରେ ହଠାତ୍ ମନ୍ଥରଗତି ।

ଏଇ ଯେ ଆଗରେ ଚାଲିଛନ୍ତି ମନ୍ଥ୍ର ଗମନରେ ଟ୍ରାଉଜର – ଟିସାର୍ଟ ପିନ୍ଧା ପୃଥୁଳକାୟ ପଞ୍ଚାଶୋର୍ଦ୍ଧ୍ୱ ଭଦ୍ରବ୍ୟକ୍ତି ଜଣକ – ସେ ନିଶ୍ଚୟ କେଉଁ ଅଫିସରେ ବଡ଼ବାବୁ ଥିବେ । ତାଙ୍କର ଗମନକୁ ଆଉ ମୂଷିକ – ଶଶକ ଭଳି କ୍ଷୁଦ୍ର ଜୀବମାନଙ୍କ ଗତି ସହିତ ତୁଳନା କରିବା ସୁନ୍ଦର ହେବ ନାହିଁ । ଏଡ଼େ ବଡ଼ ଲୋକ – ନିଶ୍ଚୟ ସାରା ଅଫିସ୍‌କୁ ଆଙ୍ଗୁଠି ଅଗରେ ନଚାଉଥିବେ । ନୀତିନିୟମର ଜାଲରେ ସାଧାରଣ ଜନତାର ଆଶା ଆକାଙ୍କ୍ଷାକୁ ଦୃଢ଼ଭାବରେ ବାନ୍ଧି ସେବା ମନୋଭାବ ସମ୍ପନ୍ନ ଟୋକା ଅଫିସର୍‌ମାନଙ୍କର ମୁଣ୍ଡ ଘୁରାଇ ଦେଉଥିବେ । ତାଙ୍କର ଦୋହଲା ଗମନକୁ ଗଜରାଜଙ୍କର ସଦର୍ପ ପଦକ୍ଷେପ ସହିତ ତୁଳନା କରାଯାଉ । ମଦମତ୍ତ ଗଜରାଜ କିନ୍ତୁ ଏକା ନୁହନ୍ତି – ହସ୍ତୀ ସହିତ ଅଛନ୍ତି ହସ୍ତିନୀ – ଦେବଙ୍କୁ ଚାହିଁ ଦେବୀ । ଆଖିରେ ଘଷା କାଚର ଚଷମା – ତା ତଳୁ ଆଖି ଦିଶେ ନାହିଁ । ଗାଢ଼ ପାନ ବୋଳରେ ଓଠ ଦୁଇଟି ପ୍ରାୟ କଳା – ବଡ଼ ବଡ଼ ଦାନ୍ତ କେତୋଟି – ଯାହା ଦୁଇ ଓଠର ସତର୍କ ଉଦ୍ୟମ ସତ୍ତ୍ୱେ ଖୋଲା ହାଓ୍ୱାର ସ୍ପର୍ଶ ପାଇବା ପାଇଁ ସତତ ପ୍ରଯତ୍ନଶୀଳ – ବର୍ଣ୍ଣରେ ସେଗୁଡ଼ିକ ସ୍ଫୀତୋଦର ଛାରପୋକ ତୁଲ୍ୟ କୃଷ୍ଣାଭ । ପ୍ରତ୍ୟୁଷର ଏଇ କାଳିଚିଆ ଅନ୍ଧକାରରେ ଉଚ୍ଚ ଗୋଇଠିବାଲା ଯୋତା ପିନ୍ଧି ଚାଲିବା ବୋଧହୁଏ ତାଙ୍କ ପକ୍ଷରେ ସମ୍ଭବ ହେଉନାହିଁ । ତାଙ୍କର ଗୋଟିଏ ହାତ ତେଣୁ ସ୍ୱାମୀଙ୍କ

ହାତରେ ଧରା ରହିଥାଏ, ସେମାନେ ଗପସପ ହେଉ ହେଉ ବାଟ ଚାଲିଥାଆନ୍ତି ।

ସ୍ୱାସ୍ଥ୍ୟ ସନ୍ଧାନୀ ଏଇ ମଣିଷମାନେ ଅତି ପ୍ରତ୍ୟୁଷରୁ ଆରାମଦାୟକ ଶଯ୍ୟା ସୁଖ ଛାଡ଼ି ଜଣେ ମନ୍ତ୍ରୀଙ୍କ ଉଦ୍ୟମରେ ନିର୍ମିତ ନଈକୂଳର ଏଇ ପ୍ରଶସ୍ତ ରାସ୍ତାରେ ଆସି ହାଜର ହୁଅନ୍ତି । ଗରିବ ପ୍ରଜାଙ୍କର ଝାଳବୁହା ଧନରେ ପୁଣି ମନ୍ତ୍ରୀ – ଯନ୍ତ୍ରୀ – ସନ୍ତ୍ରୀଙ୍କ ପର୍ସେଣ୍ଟେଜ୍‌ର ଉଦ୍‌ବୃତ୍ତ ଅର୍ଥରେ ପ୍ରସ୍ତୁତ ଏଇ ରାଜପଥ ନିର୍ମାଣ ନିମନ୍ତେ ମନ୍ତ୍ରୀ ପୁଣି ତୁଳିତ ହୁଅନ୍ତି ଇତିହାସର କେଉଁ ଏକ ପ୍ରଜାନୁରଞ୍ଜକ ସମ୍ରାଟ୍‌ଙ୍କ ସହିତ । ଯାହା ଦ୍ୱାରା ହେଉ, ଯେମିତି ହେଉ, ରାସ୍ତାଟି ହୋଇଛି ବୋଲିତ ଏତେ ଗୁଡ଼ିଏ ଲୋକ ସ୍ୱାସ୍ଥ୍ୟୋଦ୍ଧାର କରିବାର ସୁଯୋଗ ପାଉଛନ୍ତି ! ସାଧନର କଳଙ୍କ ହେଉଛି ଚନ୍ଦ୍ରର କଳଙ୍କ । ଏଥିପାଇଁ ସାଧକୁ ଦୋଷ ଦେବାର କୌଣସି ଅର୍ଥ ହୁଏ ନାହିଁ ।

ସେମାନେ ଇତିହାସରେ ସ୍ୱୀକୃତି ଖୋଜୁଥିବା ମନ୍ତ୍ରୀଙ୍କ ମୁଣ୍ଡପାତ କରି ସେଇ ରାସ୍ତାରେ ରୋଗ–ବ୍ୟାଧିରୁ ମୁକ୍ତି ଖୋଜୁ ଖୋଜୁ ନିୟମିତ ହାଜିରା ପକାଇଯାଆନ୍ତି ।

ଆକାଶ ପୁରାପୁରି ଫର୍ଚ୍ଛା ହୋଇନଥାଏ । ହୁଏତ ଦିନେ ଦିନେ କୁଆଁ ତାରା ମଧ୍ୟ ବୁଡି ନ ଥାଏ । ଦୂରକୁ ଅନାଇଲେ ନଈ ଆରପଟ ମିଲ୍‌ର ଚିମ୍‌ନୀରୁ ଧୂଆଁ ମିଶା ନିଆଁ ସ୍ଲେଟ୍ ରଙ୍ଗର ଆକାଶର ପୃଷ୍ଠଭୂମିରେ ବେଶ୍ ସଫା ଦେଖାଯାଉଥାଏ । ପକ୍ଷୀମାନଙ୍କର ନୀଡ଼ ଛାଡ଼ିବାର ସମୟ ଆହୁରି ହୋଇନଥାଏ । ତେବେ ସଦା ଜାଗ୍ରତ ପହରାଦାର ଭଳି କାଉମାନେ ବସା ଛାଡ଼ି ବାହାରି ଆସିଥାଆନ୍ତି । କେହି ଇଲେକ୍‌ଟ୍ରିତାର ଉପରେ ବସି ବୋବାଉ ଥାଆନ୍ତି ତ ଆଉ କିଛି ମାଟି ଉପରୁ ଆହାର ଖୁଣ୍ଟୁଥାଆନ୍ତି ।

ମୁହୂର୍ତ୍ତଟି ବଡ଼ ପବିତ୍ର । ଶାସ୍ତ୍ରରେ ଏହା ହେଉଛି ମାହେନ୍ଦ୍ରବେଳା । ଏଭଳି ସମୟରେ ମନ ପବିତ୍ର ହୋଇଯାଏ । ତେବେ ସ୍ୱାସ୍ଥ୍ୟ ଲୋଭୀ ଏଇ ମଣିଷମାନେ ସାମୟିକଭାବେ ତେଲ ଲୁଣର ସଂସାର ଜଞ୍ଜାଳରୁ ଅବ୍ୟାହତି ନେଇଥିଲେ ହେଁ ସଂସାର ସେମାନଙ୍କ ପଛେ ପଛେ ଗୋଡ଼ାଇ ଆସିଥାଏ । ସେମାନଙ୍କର ଅଧିକାଂଶଙ୍କର ହାତରେ ଥାଏ ଖଣ୍ଡିଏ ଖଣ୍ଡିଏ ନାତି ଦୀର୍ଘ ଆଙ୍କୁଶୀ ଆଉ ଜରି ଥଳୀ । ବନ୍ଧ ତଳେ ବସ୍ତିବାସୀ ଆଉ ଆଖ ପାଖ ଲୋକ ନିୟମିତ ପ୍ରାତଃକୃତ୍ୟ ସମାପନ କରୁଥିବା ସ୍ଥାନରେ ଉଠିଥିବା କେତୋଟି କନିଅର ଆଉ ରାସ୍ତାର ଏଠି ସେଠି ଉଠିଥିବା ଆଉ କେତୋଟି ଗଛରୁ ଫୁଲ ସଂଗ୍ରହ କରାଯାଏ । ଘରେ ଘରେ ଠାକୁର ଅଛନ୍ତି । ସେମାନଙ୍କର ସଂଖ୍ୟା

ନିୟନ୍ତ୍ରିତ ନୁହେଁ । ପାଖୁଡ଼ାଟାଏ ଲେଖା ଦେଲେ ବି ସଂଗୃହୀତ ଫୁଲ ଅକୁଳାଣ ହୁଏ । ଠାକୁର ଭୋଗବାଦୀ ସଂସ୍କୃତିର ଡ୍ରଇଂ ରୁମ୍ । ଭିତର ଯାହା ହେଉ – ବାହାରଟା ନିଶ୍ଚୟ ନିର୍ମଳ ରଖିବାକୁ ପଡ଼ିବ । ତେଣୁ ଯାହା ହେଲେ ବି ତାଙ୍କ କଥା ପ୍ରଥମେ ଭାବିବାକୁ ପଡ଼ିବ । ସକାଳ ବୁଲା ସହିତ ଠାକୁରଙ୍କ ପାଇଁ ଯଦି ଫୁଲ ଦି'ଟାର ବ୍ୟବସ୍ଥା ହୋଇପାରୁଛି, ତେବେ ପଇସା ଖର୍ଚ୍ଚ କରି ଫୁଲ କିଣିବା କ'ଣ ଦରକାର ?

କେହି କେହି ପୁଣି କାଖ ତଳେ ଚାକିଥାନ୍ତି ଖଣ୍ଡିଏ ଲେଖାଁ ଜରି ବ୍ୟାଗ୍ । ଫେରିବା ବେଳେ ଘର ପାଇଁ ପନିପରିବା ନେଇଯିବେ । ଏତିକିବେଳେ ନଈ ଆରପଟୁ ସାଇକେଲ୍‌ରେ ବିଭିନ୍ନ ଆକାରର ବସ୍ତାରେ ଭର୍ତ୍ତିହୋଇ ସଜ ପରିବାର ସ୍ରୋତ ବହିଆସେ । ବାବୁମାନେ ଜାଣନ୍ତି, ଏକୁଟିଆ ପରିବା କିଣିବାକୁ ଗଲେ ମାଲିକ ସେମାନଙ୍କୁ ଆଡ଼ ଆଖିରେ ବି ଅନାଇବ ନାହିଁ । ତେଣୁ ସେମାନେ ଦଳବାନ୍ଧି ଚଢ଼ାଉ କରନ୍ତି । କାହା ଉପରେ ଆକ୍ରମଣ କଲେ ଅଭିଯାନ ସଫଳ ହେବ, କେତେଦିନର ଅଭ୍ୟାସ ବଳରେ ସେମାନେ ଜାଣିଯାଇଥାଆନ୍ତି । ତେଣୁ ବଗ ମାଛକୁ ଟାକି ବସିଲା ପରି ସେମାନେ ଛକି ବସିଥାଆନ୍ତି । ବସିବାଠାରୁ କାଶିବା ଭଲ । କ୍ରୀଡ଼ା ରସିକ କୌଣସି ବାବୁଙ୍କ ପକେଟ୍‌ରୁ ବାହାରିଆସେ ତାସ୍ ମୁଠା । ଖେଳାଳୀର ଅଭାବ ତ ହୁଏ ନାହିଁ । ଦେଖଣାହାରୀଙ୍କ ସଂଖ୍ୟା ତା'ଠୁଁ ବଳିଯାଏ । ପ୍ରୋତ୍ସାହନ ନ ଥାଇ କି ଖେଳ !

ଗୁଣନିଧି ବାବୁ ଡାକି ବଜାଇ ପରିବାବାଲାକୁ ଜଣାଇଦିଅନ୍ତି – କମ୍ ପଇସାରେ ନେବି । କହିବୋଲି ନେବି । ଉଧାର–ବାକି ? ନାହିଁରେ ବାବା.... ଆମର ମଟୋ ହେଲା – ଆଜି ନଗଦ କାଲି କଥା କିଏ ଜାଣେ ? ଦ୍ୱିଜବର ବାବୁ ପରିବା – ବାଲାର ଦଣ୍ଡୀ ଆଡ଼େ ସତର୍କ ଦୃଷ୍ଟି ରଖିଥାଆନ୍ତି । ଜୀବନସାରା ସରକାରଙ୍କର ଆୟବ୍ୟୟ ତନଖି କରି ବୁଲିଛନ୍ତି । ପଇସାଟିଏର ହିସାବ ଏପଟ ସେପଟ ହେବାକୁ ଦେଇନାହାନ୍ତି । କାମ ଉପରୁ ଶାଗଟାଏ କି ମାଛଟାଏ ଯଦି କିଏ ଭାବଦୋସ୍ତିରେ ଦେଲା, ତେବେ ସେଥିରେ ପୃଥିବୀ କିଛି ରସାତଳକୁ ଚାଲିଯାଉ ନାହିଁ । ଶାଗପତ୍ର ଯାହାହେଉ, ସେତକ ନମିଳିଲେ, ତାଙ୍କର ପୁଣି ଚଳିବ କେମିତି ? ତିନୋଟି ଝିଅ ଆଉ ଦିଓଟି ପୁଅ ଯେ କୂଳରେ ଲାଗିଲେ, ସେ ସବୁ ଏଇ ଭାବଦୋସ୍ତିର କଲ୍ୟାଣରୁ ତ ! କେହି କହିପାରିବ ନାହିଁ, ଦ୍ୱିଜବର ପରିଡ଼ା ଲାଞ୍ଚଖୋର ବୋଲି – କାହା ଜିଭରେ ହାଡ଼ ଅଛି ?

ଗୁଣନିଧିବାବୁ କହନ୍ତି – ଆରେ ଯାଃ – ଯେଉଁ ଦେଶର ପ୍ରଧାନମନ୍ତ୍ରୀବି ଅପରଛନିଆଁ ସ୍କାଣ୍ଡାଲରେ ଜଡ଼ିତ ହୋଇପଡ଼ନ୍ତି, ସେଥିରେ ମାସକୁ ହାତଗଣତା ଟଙ୍କା କେଇଟା ପାଉଥିବା ସରକାରୀ କର୍ମଚାରୀଟିଏ ଯଦି ଶାଗପତ୍ରଟାଏ ଉଠାଇନେଲା – ତେବେ ତାକୁ ଦୋଷ ଦେବ କିଏ ? ଏଇ ଶଃ... ମାନଙ୍କର ସତ୍‌ସାହସ ଅଛି ?

ଆଲୋଚନା ଏମିତି ଚାଲିଥାଏ । ପେନ୍‌ସନ୍ ଗ୍ରାଚୁୟିଟୀ, ଟି. ଆଇ. ର ହିସାବ ସାଙ୍ଗକୁ ବ୍ଲଡ଼୍‌ପ୍ରେସର, ସୁଗାର, ଏସିଡିଟୀ, ହାର୍ଟ ପ୍ରୁଅର ଚାକିରି, ଝିଅ ବାହାଘର ସବୁ ତା' ଭିତରକୁ ଚାଲିଆସେ । ସଂଗୃହୀତ ପରିବା ଥଳୀଟିକୁ ସାବଧାନରେ ସମ୍ଭାଳି ଦ୍ୱିଜବରବାବୁ ଉଠି ଠିଆ ହୁଅନ୍ତି । ଉର୍ଦ୍ଧ୍ୱ ବାହୁ ହୋଇ ଚାରିଆଡ଼ ଘୁରି ଘୁରି ଶୂନ୍ୟଚାରୀ ଦେବତାମାନଙ୍କୁ ପ୍ରଣାମ କରନ୍ତି । ସମସ୍ତଙ୍କୁ ସନ୍ତୁଷ୍ଟ ରଖିବା ଭଲ... କିଏ ଜାଣେ କୋଉ ଦେବତା କେତେବେଳେ ରକ୍ତମୁଖା ହୋଇ ମୁଣ୍ଡ ବଳୀ ମାଗିବେ !

ମୁଣ୍ଡ ନୁଆଇଁ ଚାଲିବାର ନାମ ତ ହେଉଛି ଜୀବନ । ମୁଣ୍ଡ ଟେକିଲେ ଝଡ଼ର ଧକ୍କା ନିମିଷକେ କାହୁଁ ମାଡ଼ିଆସି ଧରାଶାୟୀ କରିପକାଇବ । ତା' ଅପେକ୍ଷା... ଦ୍ୱିଜବରବାବୁ 'ଭଜ ଗୋବିନ୍ଦଂ ସ୍ମର ଗୋବିନ୍ଦଂ' ଗାଇ ଗାଇ ବାଟ ଚାଲନ୍ତି ।

ଗୁଣନିଧି ବାବୁ ସେଇ ଆଡ଼କୁ ଅନାଇ ପହଲି ମେଲାନ୍ତି – 'ଶୌ' ଚୁହା ଖା କେ ବିଲ୍ଲୀ ହଜ୍ କରନେ ଚଲି' – ମହାନଗର ନିଗମର ପ୍ରାଇମ୍ ଏରିଆରେ ଯେଉଁ ତ୍ରିତଳ ପ୍ରାସାଦ ଗଢ଼ାଯାଇଚି, ସବୁ ଏଇ ଶାଗମାଛରୁ ତ – ଶାଗୁଣାଙ୍କ ଆଖି ପଡ଼ିଲାଣି ଯେ – ସେମାନଙ୍କ ଦାଢ଼ରୁ ବଞ୍ଚି ବର୍ତ୍ତିରହିଲେ ହେଲା ।

ଏଇ ଭୋର୍‌ରୁ 'ଲୋଟସ୍ ଇଣ୍ଟରନାସନାଲ' ଶିକ୍ଷା ନିକେତନ ଆଗରେ ଲମ୍ବାଲାଇନ୍ ପଡ଼ିଗଲାଣି । ବହୁ ଭଦ୍ର ଲୋକ ଲାଇନ୍‌ରେ ଠିଆ ହୋଇଛନ୍ତି । ଗେଟ୍ ଖୋଲି ନାହିଁ । ଲାଇନ୍ ବଢ଼ିଚାଲିଛି । ସ୍ୱାସ୍ଥ୍ୟ ସନ୍ଧାନୀ ଜଣେ ବାବୁ ସେଇବାଟ ଦେଇ ଚାଲି ଯାଉ ଯାଉ ସାହିର ଜଣେ ପରିଚିତଙ୍କୁ ଦେଖି ଠିଆ ହୋଇଯାଆନ୍ତି । ସାଧୁ ପଣ୍ଡା ନା ! ଏଇତ ସେଦିନ ମାତ୍ର ଅବସର ନେଲେ । ଏଠି ଏତେବେଳେ କ'ଣ ପାଇଁ କ୍ୟୁ ଲଗାଇଛନ୍ତି ? ପଚାରିଦେଲେ – କଥା କ'ଣ ? ଆପଣ ଏତେବେଳେ ଏଠି ?

ସାଧୁବାବୁ ପରିଚିତ ମୁହଁ ଦେଖି ବିବ୍ରତ ହୋଇ ପଡୁ ପଡୁ କହନ୍ତି – କାହିଁକି କହୁଛନ୍ତି ? ନାତିଟାକୁ ନର୍ସରୀରେ ଭର୍ତ୍ତି କରିବାକୁ ପଡ଼ିବ, ଆଡ଼୍‌ମିସନ୍ ଫର୍ମ ପାଇଁ ଠିଆ ହୋଇଛି । ସାଢ଼େ ସାତଟାରେ ଅଫିସ୍ ଖୋଲିଲେ ଫର୍ମ ମିଳିବ । ସେଇଥିପାଇଁ....

ଏବେ ତ ମାତ୍ର ସାଢ଼େ ପାଞ୍ଚଟା....

ପରେ ଆସିଲେ ଆଜି ଆଉ ଫର୍ମ ମିଳିବନି । ସେମାନେ ପ୍ରତିଦିନ ନିର୍ଦ୍ଦିଷ୍ଟ କେତୋଟି ଫର୍ମ ଦେଉଛନ୍ତି । କ'ଣ ଆଉ କରାଯିବ ?

ବାବୁ ଜଣକ ମୁହଁରେ ସହାନୁଭୂତି ଆଉ ପାଦରେ କ୍ଷିପ୍ରତା ନେଇ ଆଗେଇ ଚାଲନ୍ତି । ଖବରଟା ଶୀଘ୍ର ପ୍ରାତଃକାଳୀନ ଆସରରେ ପହଞ୍ଚାଇ ଦେବାକୁ ହେବ । କାଲି ପର୍ଯ୍ୟନ୍ତ ଯେଉଁ ବୋହୂ ଅଫିସ ଯାତ୍ରୀ ଶ୍ୱଶୁରଙ୍କର ହରେକ କାମ ପାଇଁ ଉତ୍କର୍ଣ୍ଣ ହୋଇ ରହୁଥିଲା, ଆଜି ସେଇ ପୁଣି ଅବସର ପ୍ରାପ୍ତ ବୁଢ଼ାକୁ କାମରେ ବରଗି ଦେଇଛି । ପୁଅର ବାପ ନିଶ୍ଚିନ୍ତରେ ଦିନ ଆଠଟାଯାଏ ବିଶ୍ରାମ ନେବ । ଚୌକି କ୍ୟା ନ କରେ କାମ୍ ? ତାଙ୍କ ମା' ପରା ଢଗ ମେଲୁଥିଲେ – ବୋହୂର ଚାକର ନାତିର ଘୋଡ଼ା, ହେବୁ ଯଦି ଘରେ ରହରେ ବୁଢ଼ା' – ମରମଭେଦୀ କେଡ଼େ ନିର୍ଚ୍ଛଳ ସତ କଥାଟିଏ ! କ'ଣ ଅଛି ଏ ସଂସାରରେ ? ବାବୁଙ୍କର ମନ ଦାର୍ଶନିକତାରେ ଉଦାସ ହୋଇଯାଏ ।

ହାତରେ ଧରିଥିବା ଠେଙ୍ଗୁଣୀ ଖଣ୍ଡିକମାନ ପାଖରେ ଥୋଇ ବାବୁମାନେ ଆଲୋଚନାରେ ମଜ୍ଜିଯାଆନ୍ତି । ମହାନଗର ନିଗମ ଆଗରୁ ନଈ କୂଳରେ ବଡ଼ ବଡ଼ ବେଞ୍ଚମାନ ପକାଇ ରଖିଥିଲେ । ହଠାତ୍ କ'ଣ ହେଲା କେଜାଣି, ସେଇସବୁ ବେଞ୍ଚକୁ ଉଠାଇ ନିଆଗଲା, ତା' ବଦଳରେ ଉଚ୍ଚ ଉଚ୍ଚ ପିଣ୍ଡିମାନ ତିଆରି କରାଗଲା । ମାସ ଗୋଟାକରେ ସେସବୁ ଫାଟି ଉପର ପ୍ଲାଷ୍ଟର ଛାଡ଼ି ତହିଁରେ ଛୋଟ ବଡ଼ ଗାତମାନ ବାହାରି ପଡ଼ିଲାଣି । କାହାର ମନେପଡ଼ିଗଲେ କେତେବେଳେ ବାଲିମିଶା ସିମେଣ୍ଟ ଟିକିଏ ଛିଞ୍ଚା ହେବ – ପୁଣି ଭାଙ୍ଗିବ – ପୁଣି ତିଆରି ହେବ– ଏମିତି ଚାଲିଥିବ କାଳ କାଳକୁ । ପେଟପାଟଣା ତ ସମସ୍ତଙ୍କର ଅଛି । କାମ କଲେ କି ହେଲେ ତ ଯାଇ ପେଟ ପୂରିବ । ବାସି ମୁଢ଼ିପରି ସେମେଟି ଯାଇଥିବା ପକେଟ୍ ପାଣି ପକା ହୁଡୁମ୍ବ ଭଳି ଫୁଲିଉଠିବ । ଗୋ – ଖାଦ୍ୟରୁ ହଜାରେ କୋଟି ମାରିନେଇଥିବା ନେତାଙ୍କ ତୁଳନାରେ ଇଏ ଅବା କି କଥା ?

ଆଲୋଚନା ଚାଲିଥାଏ । ଦେଶଟା ଯେ ରସାତଳକୁ ଚାଲିଯାଉଛି, ଏଥିରେ କାହାରି ସନ୍ଦେହ ନ' ଥାଏ । ଚେୟାରରେ ବସିଛନ୍ତି ଧଳା ହାଫ୍‌ପାଣ୍ଟ, ଟିସାର୍ଟ ଆଉ

କେଡ଼ସ୍ ପିନ୍ଧା ଜଣେ ବାବୁ । ମୁହଁରୁ କ୍ଷମତା, ପ୍ରତିପତ୍ତିର ଅହଙ୍କାର ଫୁଟି ଦିଶୁଛି । ନିଶ୍ଚୟ ଜଣେ ବଡ଼ ଅଧିକାରୀ ହେବେ । ସେ ଯେମିତି କାହାକୁ ଅପେକ୍ଷା କରୁଛନ୍ତି ।

ଦ୍ରୁତଗତିରେ ମଟରସାଇକେଲ୍‌ଟିଏ ଆସି ତାଙ୍କରି ପାଖରେ ବ୍ରେକ୍ କଷିଲା । ପଛରୁ ଓହ୍ଲାଇଲେ ଯେଉଁ ମୂର୍ତ୍ତି ତାଙ୍କର ସୁପରଫାଇନ୍ ସଟ୍‌ଲେସ୍ ଖଦଡ଼ ପୋଷାକ, ସଦା ହାସ୍ୟମୟ ମୁଖ ଆଉ ଆଖିରେ ସମସ୍ତଙ୍କୁ କୋଳେଇନେଇ ହଜମ୍ କରିଦେବା ଭାବରୁ ଜଣା ପଡୁଥିଲା, ସେ ନିଶ୍ଚୟ ଜଣେ ନେତା... ଚାଳକଙ୍କର ବୟସ ବେଶୀ ନୁହେଁ । ଦୁହେଁ ଅଧିକାରୀଙ୍କ ଆଡ଼କୁ ଆଗେଇ ଗଲେ ।

ଦୁଇପକ୍ଷଙ୍କ ଭିତରେ ଖୁବ୍ ଅଳ୍ପ ସମୟ ଆଲୋଚନା ଚାଲିଲା । ଚାଳକ ନିଜ ପକେଟରୁ ଆଖି ଦୃଶିଆ ପାକେଟ୍‌ଟିଏ ଅଧିକାରୀଙ୍କ ଆଡ଼କୁ ବଢ଼ାଇଦେଲେ । ଅଧିକାରୀ ତାକୁ ଗ୍ରହଣ କରି ମୁଣ୍ଡ ହଲାଇଲେ । ଉଠିବାକୁ ଉପକ୍ରମ କରୁ କରୁ ଅନୁଚ୍ଚ ସ୍ୱରରେ କହିଲେ – କାମ୍ ହୋ ଯାଏଗା....

ଆଗନ୍ତୁକ ଦୁହେଁ ଫେରିଗଲେ । ଅଧିକାରୀ ମଧ ମପାଚୁପା ପଦକ୍ଷେପରେ ବିପରୀତ ଦିଗରେ ଚାଲିବାକୁ ଆରମ୍ଭ କଲେ । ଏ ପଦ ବିକ୍ଷେପ ଅଧସ୍ତନଙ୍କ ହୃଦୟରେ କମ୍ପ ସୃଷ୍ଟି କରେ । ଏଇ ପଦକ୍ଷେପରେ ସେ ହଲଭର୍ତ୍ତି ଲୋକଙ୍କ ମଝିରେ ନିଜ ରୁମ୍ ଆଡ଼କୁ ଚାଲିଯାଆନ୍ତି । ଅଗଣିତ ହାତଯୋଡ଼ି ହୋଇଯାଏ । ମସ୍ତକ ଅବନତ ହୁଏ । କିଛି ତାଙ୍କ ଦୃଷ୍ଟିରେ ପଡ଼େ ନାହିଁ । ପ୍ରତି ଉତ୍ତର ଦେବା ତ ଦୂରର କଥା, ମୁହଁରେ ପ୍ରତିକ୍ରିୟା ଟିକିଏ ବି ଦେଖାଯାଏ ନାହିଁ । ନିର୍ଲିପ୍ତତାର ଏଇ ମୁଖା ପିନ୍ଧିବାକୁ ପ୍ରଶାସନିକ ପ୍ରତିଷ୍ଠାନରେ ବୋଧହୁଏ ବିଶେଷ ଭାବରେ ତାଲିମ୍ ଦିଆଯାଏ । ସାଧନା କଲେ ସିଦ୍ଧି ତ ନିଶ୍ଚୟ ମିଳିବ ।

ଅଧିକାରୀଙ୍କ ଅପସୃୟମାଣ ପ୍ରୋଫାଇଲ ଆଡ଼େ ଅନାଇ ଜଣେ ବାବୁ ମନ୍ତବ୍ୟ ଦେଲେ ବାଃ – ଏମାନେ ନଇକୂଳଟାକୁ ବୁଦ୍ଧଜୟନ୍ତୀ ପାର୍କ କରିଦେବେ । ଆପଣମାନେ ଜାଣନ୍ତି, କୋଟି କୋଟି ଟଙ୍କାର ଲାଇସେନ୍ସ, ପରମିଟ୍, ଟେଣ୍ଡର, ଫେଲୋସିପ୍– ସବୁର ନିଷ୍ପତ୍ତି ଏଇ ପାର୍କରେ ହୁଏ ? ମନ୍ତ୍ରୀମାନେ ଆସନ୍ତି, ପ୍ରଶାସକମାନେ ଆସନ୍ତି । ପରିବେଶ ଶୀତଳ, ମନ ପବିତ୍ର, ମୁଣ୍ଡ ଥଣ୍ଡା – ସବୁ କଥା କେଡ଼େ ସହଜରେ ଛିଣ୍ଡିଯାଏ । ଷଣ୍ଢ ପୂରେଇବାକୁ ବିରୋଧୀଦଳ ନାହାନ୍ତି, ଭାଗ ବସାଇବାକୁ ସହକର୍ମୀ ନାହାନ୍ତି । ଦେଖିବାକୁ ମିଡ଼ିଆବାଲା ନାହାନ୍ତି । କେତେ ସୁବିଧା କଥା ! ଗୁଣୋଧାଉଟି,

ଆମ ରାଜଧାନୀରେ ବି ଧୀରେ ଧୀରେ ଏଇ କଲ୍‌ଚର୍ ମୁଣ୍ଡ ଟେକିଲାଣି । ଇନ୍ଦିରାଗାନ୍ଧୀ ପାର୍କରେ ସରକାରୀ ନିଷତ୍ତି ହୋଇଯାଉଛି ।

ଆପଣମାନେ ଜାଣନ୍ତି, ଆଉ ଜଣେ ବାବୁ ଆଖି ନଚାଇ କହନ୍ତି, ଏ ସବୁ ଚୋରି, ସ୍ମଗଲିଂ ଆଉ ବ୍ଲାକମାର୍କେଟିଂର ଆରମ୍ଭ କେଉଁଠୁ ? ଶୁଣନ୍ତୁ ତେବେ । ଦ୍ୱିତୀୟ ବିଶ୍ୱଯୁଦ୍ଧ କଥା ମନେ ଅଛିଟି ? ଠିକାଦାରମାନେ ଆବଶ୍ୟକୀୟ ସାମଗ୍ରୀ ଯୁଦ୍ଧକୁ ପଠାଇଦେବାରୁ ଦଳେ ଧୂର୍ତ୍ତ ରାତାରାତି ମୁନାଫା କମାଇବାକୁ ଯାହା ପାଇଲେ ଚାପି ଦେଲେ । ସୁବିଧା ସୁଯୋଗ ଦେଖି ସେଇଆକୁ ଦି' ଗୁଣ ତିନିଗୁଣ ଦାମ୍‌ରେ ବଜାରକୁ ଛାଡ଼ିଲେ । ରାତି ପାହିଲେ ଲକ୍ଷପତି । ଏମିତି ଆସିଲେ ସମାଜର ଗୋଟିଏ ନୂତନ ଗୋଷ୍ଠୀ । ପୁରୁଣା ଖାନ୍‌ଦାନୀ ଘରକୁ ତ ସେତେବେଳର ସରକାର ହାତରେ ଖପରା ଧରେଇ ବଡ଼ ଦାଣ୍ଡକୁ ପଠାଇଥିଲେ ନ ହେଲେ ଗୋଡ଼ରେ ବେଡ଼ି ପିନ୍ଧାଇ ଜିହ୍ଲଖାନାକୁ ।

ଦେଖାଯାଏ, ଏଇ ସବୁ ଶୃଙ୍ଖଳା ଇତିହାସର ବିବରଣୀରୁ ବାବୁମାନେ ରସ ପାଆନ୍ତି ନାହିଁ । ଆଲୋଚନାର ମୋଡ଼ ଘୁରାଇବାକୁ ସେମାନେ ଆସନ୍ତା ପିକ୍‌ନିକ୍‌ର କଥା ଆରମ୍ଭ କରନ୍ତି । ଉତ୍ତୀର୍ଣ୍ଣ ବୟସର ଏଇସବୁ ବାବୁମାନଙ୍କର ଜୀବନକୁ ଉପଭୋଗ କରିବାର ତୃଷ୍ଣା ମରିଯାଇ ନ ଥାଏ । ଦୀର୍ଘଦିନ ନଈକୂଳକୁ ଯିବା ଆସିବାରେ ସେମାନଙ୍କ ଭିତରେ ଗୋଟାଏ ସମ୍ପର୍କ ଗଢ଼ି ହୋଇଯାଇଥାଏ । କର୍ମ ଜୀବନ ସିନା କଟିଲା ସହରରେ – ଯାତ୍ରା ଆରମ୍ଭ ହୋଇଥିଲା ତ ସେଇ ତାଳ ତମାଳ ଶାଳ ଘେରା କୋଉ ମଫସଲରୁ । ସେଇଠିକାର ପାଣିକାଦୁଅ ବାଲି ମାଟିର ନରମା ଛାପ ମନ ଉପରେ ରହିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସେଇ ସୂତ୍ରରେ ମହାଶୂନ୍ୟ ଆଡ଼କୁ ପାଦଟିଏ ବଢ଼ାଇ ଦେଇଥିବା ଏଇ ବାବୁମାନଙ୍କ ଭିତରୁ କିଏ କାହାର ଭାଇ, ପୁଣି ମଉସା, ସମୁଦୀ, ଦାଦା, ପିଉସା ସମ୍ବୋଧନ ବି ବେଳେବେଳେ କାନରେ ପଡ଼ିଯାଏ । ସମୁଦୀ ଡାକଟା ତ କଥାକଥାରେ ଶୁଣାଯାଏ । ସେଇଥିରୁ ... ନାଃ.... ସେ କଥା ପରେ...

ଏଇ ନିତିଦିନିଆ ତେଲଲୁଣ ସଂସାରର ବରାଦୀ ଭୋଜନରେ ସେଇ ଥୋଡ଼ବଡ଼ି ଖଡ଼ା ଆଉ ଖଡ଼ାବଡ଼ି ଥୋଡ଼ ଖାଇ ଖାଇ ଏମାନେ ଅତିଷ୍ଠ । ପୁଣି ଡାଇବେଟିସ୍, ପ୍ରେସର୍, ଏସିଡ୍ କୃପାରୁ କାହାର କଳରା ସିଝା ତ କାହା ପାଇଁ ଅମୃତଭଣ୍ଡା ସନ୍ତୁଳା । କିଏ ପସାରୁଣୀ ଝୋଳ ଖାଇ ଖାଇ ଅତିଷ୍ଠ କାହା କପାଳରେ ଅଲଣା ନିମ କଢ଼ ।

ଡାକ୍ତରଙ୍କର କଡ଼ା ନିର୍ଦ୍ଦେଶ ରାତିରେ ରୁଟି ତିନିରୁ ଚାରି ହେବ ନାହିଁ । ମାଛ ଭିତରେ ଦଣ୍ଡକିରୀ, ମହୁରାଳୀ, ନେଉଳୀ  ଚଳିବ । ମାଂସ କହିଲେ ତିନିଖଣ୍ଡ ପକ୍ଷୀ ମାଂସ । ଏଇ ସବୁ ରୁଟିନ୍ ଖାଦ୍ୟ ଖାଇ ଖାଇ ପାଟିରେ ଯଦି ଛତିଆ ପଡ଼ିଯାଏ, ତେବେ ବାବୁମାନଙ୍କର ଦୋଷ କ'ଣ ?

ବର୍ଷକରେ ଗୋଟିଏ ଦିନ । ପରିବାରର ଶାସନ ନ ଥାଏ । ଘଣ୍ଟା ଧରି ଜୀବନକୁ ଘୋଷାଡ଼ି ନିଆଯାଏ ନାହିଁ । ଏଇ ଦିନଟି ପାଇଁ ତେଣୁ ପ୍ରଥମ ପ୍ରେମର ରୋମାଞ୍ଚ ଥାଏ । ଥାଏ ବି ଆଦ୍ୟ ମିଳନର ବ୍ୟାକୁଳ ପ୍ରତୀକ୍ଷା ।

ଦିନଟି କିନ୍ତୁ ମଧୁ ରାଓଙ୍କ ହରିଣ ଭଳି ସହଜେ ନଦିଏ ଧରା । ନିଜ ଦେହ ତ ଏଇ ବୟସର ବଡ଼ ଶତ୍ରୁ, କହିବେ କାହାକୁ ? ସବୁ ଆଡୁ ସବୁ ଠିକ୍ ଚାଲିଛି । ହଠାତ୍ ଦେଖିଲାବେଳକୁ ଠିକଣା ଦିନ କାହାର ଦାନ୍ତମାଡ଼ି ଫୁଲି ଢୋଲ । କାହାର ଅବା ଦୂର ଦେଶରୁ ପଙ୍ଗପାଳ ଭଳି କୁଣିଆ ପଡ଼ିଯାଆନ୍ତି । କିଏ ଅବା ଘର ପରିବାରର କେଉଁ ଜରୁରୀ କାମରେ ଫଶିଯାଆନ୍ତି । ଅବସର ପ୍ରାପ୍ତ ମଣିଷଟି ହେଲା ପରିବାରର ଭଙ୍ଗା କୁଲା – ଯେତେ ଆବର୍ଜନା ସେଇଥିରେ ନିଶ୍ଚିନ୍ତରେ ଫୋପଡ଼ା ଯାଇପାରିବ । ମ୍ୟୁନିସିପାଲ୍‌ଟିର ଟାକ୍ସ ଦିଆଯିବ । ବାପା ଅଛନ୍ତି । ଇଲେକ୍‌ଟ୍ରି ବିଲ୍‌ର ଆଜି ଶେଷ ଦିନ – ବାପା ଚାଲିଯିବେ । ଟେଲିଫୋନ୍ ଖରାପ – ବାପା ଯାଆନ୍ତୁ । ପୁଅକୁ ଡାକ୍ତର ଖାନାକୁ ନେବାକୁ ହେବ – ବାପା... ବାପା – ବାପା.... ମନା କରିଦେଲେ ପରଝିଅମାନଙ୍କର ମୁହଁ ଏଡ଼େ ଏଡ଼େ ହୋଇଯାଏ । ଘର ମଣିଷଟି ରଣଚଣ୍ଡୀ ମୂର୍ତ୍ତିଧରି ଗର୍ଜି ଗର୍ଜି ଯୁଦ୍ଧକ୍ଷେତ୍ରକୁ ଡେଇଁ ପଡ଼େ । କାମ ଭିତରେ ତ ଖବର କାଗଜ ପଢ଼ା ଆଉ ଟୋଟୋ ହୋଇ ବୁଲା, ଘର ସଂସାରର କାମଟାଏ କରିଦେବାରେ ଯାହାର ଏତେ ଆପତ୍ତି ସିଏ ସଂସାର କରୁଥିଲା କାହିଁକି ?

ସବୁସେ ଚୁପ୍ ଭଲା ।

ଦିନ ତେଣୁ ମିଳୁ ମିଳୁ ଯୁଗ ବହିଯାଏ । ବେଳେବେଳେ ମିଳେ ନାହିଁ ବି । ସେମାନଙ୍କର ହିସାବୀ ମନ । ଜୀବନସାରା ଗୋଟିଏ ଧାରାରେ କାମ କରି କରି କାମ କଥା ପଡ଼ିବା ମାତ୍ରେ ଯୋଜନା କରି ବସନ୍ତି । ଧାପ ପରେ ଧାପ । କେଉଁ ସ୍ତରରେ ଯେମିତି କିଛି ଗଡ଼ବଡ଼ ନ ହୁଏ ।  ଏଇ ଯୋଜନା ବଳରେ ତ ସେମାନେ ଦେଶର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଅର୍ଥ – ଆଉ କ'ଣ କ'ଣ ବ୍ୟବସ୍ଥାକୁ ଦୀର୍ଘକାଳ ସମ୍ଭାଳି ଆସିଛନ୍ତି ।

ଆଖି କାନ ବୁଜି ନିଆଁକୁ ଡେଇଁବା କଥା ଶୁଣିଲେ ଡେଣୁ ଚମକି ଉଠନ୍ତି । ଦୁଃସାହସିକତାର ଅନ୍ୟ ନାମ ହେଲା ଯୌବନ । ଏ ବୟସରେ ସେଇ ଭାବକୁ ଖୋଜିଲେ ମିଳିବ କୋଉଠୁ ?

କଳ୍ପନା ଚାଲେ ଦୀର୍ଘ ଦିନ ଧରି । ଯୋଜନା ତିଆରି ହୁଏ, ବାତିଲ ହୁଏ, ସଂଶୋଧନ କରାଯାଏ । ଜୀବନ ସେତେବେଳେ ମନେହୁଏ କେତେ ଅର୍ଥପୂର୍ଣ୍ଣ । ମିଷ୍ଟାନ୍ନ ଲୋଭୀ ଶିଶୁ ଭଳି ଆଖିଟିମାନ ସେତେବେଳେ କେମିତି ଚକ୍ ଚକ୍ କରିଉଠେ – ବୟସ କେମିତି ପଛକୁ ଫେରିଯାଏ, ସେ କଥା ସେଇମାନେ ଜାଣନ୍ତି । କଳ୍ପନା ହିଁ ହୋଇଯାଏ ଜୀବନ ।

ପୁଣି ଯଦି ଦୈବାତ୍ କେବେ ଯୋଜନା ଫଳବତୀ ହୋଇଯାଏ, ତେବେ ବାବୁମାନଙ୍କର ଜୀବନଶକ୍ତି ଯେମିତି ବହୁଗୁଣ ହୋଇଯାଏ । ଗଲାବେଳେ ପ୍ରଥମ ଚାକିରିରେ ଯୋଗଦେବାକୁ ଯାଉଥିବା ନବ ଯୁବକଭଳି ସେମାନଙ୍କର ଚେହେରା ଫେରିବାବେଳକୁ ଅବସର ନେବା ଦିନର ଚେହେରା ଭଳି ମଉଳି ଯାଇଥାଏ ।

ସାନ୍ତ୍ୱନା ଗୋଟାଏ ଅବଶ୍ୟ ଥାଏ । କାଲୁଆ ମୁହୂର୍ତ୍ତଗୁଡ଼ିକ ପାଇଁ ସ୍ମୃତିର ରୋମନ୍ଥନ ଟନିକ୍ ଭଳି କାମ କରେ । ସ୍ମୃତି ଏକ ଚମତ୍କାର ସିଡ଼ି – ଯାହା ତେଲ ଲୁଣର ସଂସାରର ଊର୍ଦ୍ଧ୍ୱରେ ଏକ ମାୟାଲୋକରେ ନେଇ ପହଞ୍ଚାଇ ଦିଏ । ଥରେ ସେଠି ପହଞ୍ଚିଗଲେ, ବର୍ତ୍ତମାନର ନୈରାଶ୍ୟ ଆଉ ଭବିଷ୍ୟତ୍‌ର ଆଶଙ୍କା – ସବୁ ଭୁଲି ହୋଇଯାଏ । ଜୀବନ ମଣ୍ଡି ହୋଇଯାଏ ସୋରିଷ ଫୁଲର ମହୁଆ ମହକରେ...

ନଈକୂଳରେ ଏମିତି ବୁଲୁ ବୁଲୁ ନୂଆ ସମ୍ବନ୍ଧ ବି ଯୋଡ଼ି ହୋଇଯାଏ । ସଦାନନ୍ଦବାବୁ ଯେତେବେଳେ ବିଭୂତିବାବୁଙ୍କୁ ସମୁଦି ଡାକି ବସିଲେ, ସେତେବେଳେ ବାସ୍ତବ ଜୀବନରେ ଯେ ଏଇ ଭଳି ଭୂମିକାରେ ତାଙ୍କୁ ଓହ୍ଲାଇବାକୁ ପଡ଼ିବ, ସେ କଥା ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ । ତେବେ ହଁ, ଉଭୟେ ଗୋଟିଏ ଦିନରେ ସରକାରଙ୍କର ଦୁଇଟି ଭିନ୍ନ ଭିନ୍ନ ବିଭାଗରୁ ଅବସର ନେଇଥିଲେ । ଜଣେ ସ୍ୱାସ୍ଥ୍ୟ ବିଭାଗରୁ ତ ଆଉ ଜଣେ ରାଜସ୍ୱ ବିଭାଗରୁ । ଚାକିରିର ଆରମ୍ଭ ସିଡ଼ିର ସବା ତଳ ପାହାଚରୁ– ଶୀର୍ଷଯାଏ ଉଠିବାର ଶକ୍ତି ନ ଥିଲା କି ସାମର୍ଥ୍ୟ ମଧ୍ୟ ନ ଥିଲା । ଉଭୟଙ୍କୁ ଯାତ୍ରା ଶେଷ କରିବାକୁ ପଡ଼ିଥିଲା ମଝି ପାହାଚରେ । କ'ଣ ଆଉ କରିବା ? ଭାଗ୍ୟ...

ଏଇ ବାଟରେ ବନ୍ଦ୍ୱର ସୂତ୍ରପାତ । ନଈକୂଳରୁ ଘର-ଦାଣ୍ଡରୁ ବୈଠକଖାନା ତହିଁରୁ ପୁଣି ପାରିବାରିକ ସମସ୍ୟା.... ସମସ୍ୟାର ଅନ୍ୟ ନାମ ହେଲା ପରିବାର । ଆପାତତଃ ମୂର୍ତ୍ତିମାନ୍ ସମସ୍ୟାର କାଳପୁରୁଷ ରୂପେ ଯେଉଁ ଦୁଇ ଚରିତ୍ର ଉଭୟ ପରିବାରର କେନ୍ଦ୍ରବିନ୍ଦୁକୁ ଅହରହ ଦୋହଲାଇବାରେ ଲାଗିଥିଲେ, ସେମାନେ ହେଲେ ସଦାନନ୍ଦଙ୍କର ଅବିବାହିତା ଯୁବତୀ କନ୍ୟା ରମା ସୁନ୍ଦରୀ ଆଉ ବିଭୂତିବାବୁଙ୍କର ବେକାର ଯୁବକ ପୁତ୍ର ରମେଶ ଚନ୍ଦ୍ର । ନାମ ସହିତ ସୁନ୍ଦରୀ ଶବ୍ଦଟିଏ ଯୋଡ଼ି ଦିଆଯାଇଥିଲେ ମଧ୍ୟ ରମାର ଶାରୀରିକ ସୌନ୍ଦର୍ଯ୍ୟ ବିପଜ୍ଜନକ ଭାବେ ଦୃଷ୍ଟି କଟୁଥିଲା । ନାରୀମାନଙ୍କର ମଲାଟହିଁ ହେଉଛି ସେମାନଙ୍କର ଲଲାଟ । ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ଶରୀରରୁ ଲାବଣ୍ୟ ଖସିଯିବାରେ ଲାଗିଥିଲା ଏବଂ ବିବାହ ବଜାରରେ ରମା ପ୍ରାୟ ଅଚଳ ହୋଇସାରିଥିଲା । ପାତ୍ର ପକ୍ଷ ଆସୁଥିଲେ । ଭୁରି ଭୋଜନ ଭିତରେ କନ୍ୟାକୁ ଦେଖି ପରେ ଖବର ଦେବେ ବୋଲି କହି ଚାଲିଯାଉଥିଲେ । ସେଇ ଖବର ଆଉ କେବେ ବି ଆସୁନଥିଲା କିମ୍ବା କୌଣସି ସମ୍ବେଦନଶୀଳ ପରିବାର ଖବର ପଠାଉଥିଲେ, ପୁଅ ଏବେ ବାହା ହେବାକୁ ରାଜି ହେଉନାହିଁ । ତେଣୁ...

ଅନ୍ୟ ଆଡ଼େ ରମେଶ ଚାକିରି ଖୋଜି ଖୋଜି ନିରାଶ ହୋଇ ଜୀବନଆଡୁ ମୁହଁ ଫେରାଇ ନେଇସାରିଥିଲା । କେତେବେଳେ ଘରକୁ ଆସୁଥିଲା, କୁଆଡ଼େ ଯାଉଥିଲା, କ'ଣ କରୁଥିଲା, ବିଭୂତିବାବୁ କିଛି ଜାଣିପାରୁନଥିଲେ । ଆଜିକାଲିର ଟୋକାମାନଙ୍କ ସମ୍ପର୍କରେ ଯାହା ସବୁ ଶୁଣାଯାଉଥିଲା, ତହିଁରେ ବିଭୂତି ସଦା ସନ୍ତ୍ରସ୍ତ ଅବସ୍ଥାରେ ଥିଲେ । ତାଙ୍କର ଦିନର ସ୍ୱସ୍ତି ରାତିର ନିଦ ସବୁ ରମେଶ ସହିତ ଯାଇଥିଲା । ଗ୍ରାଚୁଇଟୀ ଟଙ୍କାରେ ବିଭୂତି ତା' ପାଇଁ ଗୋଟିଏ ଗାଡ଼ି କିଣି ଦେଇଥିଲେ । ଦିନା କେତେ ଭଲ ଚାଲିଲା । ବିଭୂତି ବି ଶାନ୍ତିରେ ନିଃଶ୍ୱାସ ପକାଇଥିଲେ । ମାତ୍ର କପାଳରେ ତାଙ୍କର ସୁଖ ନ ଥିଲା । ମଫସଲରୁ କୁଆଡ଼େ ଚୋରାକାଠ ଚାଲାଣ କରୁଥିବା ବେଳେ ରମେଶର ଗାଡ଼ି ଧରାପଡ଼ିଲା । ସେଇଦିନଠୁଁ ଗାଡ଼ି ନୟାଗଡ଼ ଥାନାରେ । ବିଭୂତିବାବୁଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଛି । ଗାଡ଼ି କେବେ ମୁକୁଳିବ, ବା ମୁକୁଳି ଆସିଲେ, ତା'ର ଅବସ୍ଥା କିଭଳି ଥିବ- ଏ ବିଷୟରେ ବିଭୂତିବାବୁ ଆଉ ଚିନ୍ତା କରିପାରନ୍ତି ନାହିଁ । ଟୋକାଟାର ଭାଗ୍ୟ କେମିତି – ଯୋଉ ଡାଳ ଧରୁଛି ସେ ଡାଳ ଭାଙ୍ଗୁଛି ।

ରମେଶ ପାଇଁ ଘରେ ସବୁବେଳେ ଅଶାନ୍ତି । ସାମର୍ଥ୍ୟ ନାହିଁ, ଦାବୀ ଅଛି । ଅବସ୍ଥା ସହିତ ସାଲିସ୍ କରି ମୁଣ୍ଡ ନୁଆଇଁ ଚଳିବାର ଚେଷ୍ଟା ନାହିଁ, କଳ୍ପିତ ଉପେକ୍ଷାର ଅଭିଯୋଗରେ ସମସ୍ତଙ୍କୁ ଆକ୍ଷେପ କରିବାର ଉଗ୍ରତା ଅଛି । ଧୀରେ ଧୀରେ ତାହା ଯେଉଁ ପରିମାଣରେ ବଢ଼ି ଚାଲିଛି, ଶେଷରେ ପରିବାରକୁ ନେଇ କେଉଁଠି ପହଞ୍ଚାଇବ, ତାହା ଭାବି ବିଭୂତିବାବୁ ଭାଙ୍ଗି ପଡୁଛନ୍ତି...

ଏଇ ଅବସ୍ଥାରେ ଦୁଇବନ୍ଧୁ ବିଭୂତି ଆଉ ସଦାନନ୍ଦ ନଈକୂଳର ପିଣ୍ଡି ଉପରେ ବସିଥିଲେ । ନଈର ଶାନ୍ତ ବକ୍ଷରେ ସକାଳର ଶୀତୁଳିଆ ପବନରେ ଉଠୁଥିବା ଛୋଟ ଛୋଟ ଢେଉ ଆଡ଼କୁ ଅନାଇ ବିଭୂତି କହୁଥିଲେ, 'ସମୁଦି, କ'ଣ କରିବି କହିଲ ।'

ସଦାନନ୍ଦ ରମେଶ କଥା ଜାଣନ୍ତି । ସେ ବନ୍ଧୁଙ୍କ ଆଡ଼କୁ ଅନାଇଲେ । ବିଭୂତି କହିଲେ, କାଲି ରାତି ଏଗାରଟାରେ କୁଆଡୁ ଫେରିଲା । କ'ଣ ଖାଇଥିଲା କେଜାଣି ! କଥାବାର୍ତ୍ତା ସବୁ କେମିତି ଲାଗୁଥିଲା । ପଚାଶ ହଜାର ଟଙ୍କା ସେଇ ମୁହୂର୍ତ୍ତରେ ତା'ର ଦରକାର । କେଉଁ ନେତାକୁ ଦେଇ ଗାଡ଼ି ମୁକାଳିବ । ରାତି ଅଧରେ ଟଙ୍କା । ସକାଳ ହେଲେ ଯାହା କରିବା – ଯେତେ କହିଲେ ବି କିଛି ଶୁଣିଲା ନାହିଁ । ବାସନକୁସନ ଫିଙ୍ଗା ଫୋପଡ଼ା କରି ଝଡ଼ ଭଳି ବାହାରି ଗଲା.... ରାତିସାରା ଫେରିନାହିଁ ।

ସଦାନନ୍ଦ ଦୀର୍ଘଶ୍ୱାସଟିଏ ଛାଡ଼ିଲେ । କ'ଣ ଆଉ କହିବେ ? ତାଙ୍କ ଘରେ ବି ତ ଅଶାନ୍ତି । କଥାଟା ଫୁଟିଆରା ହୋଇନାହିଁ । ରମାର ବୋଉ କାଲି ତାକୁ କ'ଣ ପଦେ କଡ଼ା କଥା କହିଲେ । ଝିଅ ବି କିଛି କମ୍ ନୁହେଁ । କୁଆଡୁ ମୂଷାମରା ବିଷ ଯୋଗାଡ଼ କରି ସାଙ୍ଗେ ସାଙ୍ଗେ ଖାଇଦେଲା । ଭାଗ୍ୟକୁ କଥାଟା ଜଣାପଡ଼ିଯିବାରୁ, ବାନ୍ତି ଫାନ୍ତି କରାଇଦେଇ ଅବସ୍ଥାକୁ ସମ୍ଭାଳି ନିଆଯାଇଛି । ଚରମ ବିପଦଟି ଘଟି ନାହିଁ । ତେବେ ସେ କେତେ ଦିନ ?

ସଦାନନ୍ଦ କହିଲେ, ରମେଶର ବାହାଘର କରାଇଦିଅ ସମୁଦି । ଦାୟିତ୍ୱ ପଡ଼ିଲେ, ଆପେ ସେ ବାଟକୁ ଆସିବ ।

ବିଭୂତି ଚକିତ ହେଲେ । ନିଜ ପେଟ ଚାଖଣ୍ଡକ ପାଇଁ ଯାହାର ସଂସ୍ଥାନ ନାହିଁ, ସେ ପୁଣି ପର ଝିଅଟିର ଦାୟିତ୍ୱ ବୋହିବ ? ଘରେ ନିତି ମହାଭାରତ ଲାଗିବ । ଏ ଦୁଃଖରୁ ସେ ଦୁଃଖ ବଳିବ । ବରଂ ଏ ଯେମିତି ଚାଲିଛି ଚାଲୁଥାଉ ।

ସଦାନନ୍ଦ ବନ୍ଧୁଙ୍କୁ ବୁଝାଇଲେ । ରମେଶକୁ ଯୁଆଳିରେ ଯୋଚିବାକୁ ହେବ । କାମଦାମ ନାହିଁ ବୋଲି ପିଲାଟା ଏମିତି ହେଉଛି । ନହେଲେ ରମେଶ ମନ୍ଦ ପିଲା ନୁହେଁ । ତା'ର ଗାଡ଼ିକୁ ମୁକାଳିବାର ବ୍ୟବସ୍ଥା କରାଯାଉ, ନ ହେଲେ ନୂଆ ଗାଡ଼ି କିଣି ଦିଆଯାଉ ।

ବିଭୂତି ମୁଣ୍ଡ ହଲାଇଲେ । ପଇସା ଆଉ ତାଙ୍କର ନାହିଁ । ପୁଣି ତାଙ୍କର ଆଉ ତିନୋଟି ଅଛନ୍ତି । ଜଣକ ପିଛାରେ ସବୁ ସାରିଦେଲେ ଅନ୍ୟମାନେ ତାଙ୍କୁ କ'ଣ କହିବେ ?

ସଦାନନ୍ଦ ଜଣାଇଲେ, ପଇସା ଘରୁ ଖର୍ଚ୍ଚ କରିବା ଦରକାର ନାହିଁ । ମାଛ ତେଲରେ ମାଛ ଭାଜିବାର ପୁରୁଣା କୌଶଳଟିକୁ ଏଠାରେ ପ୍ରୟୋଗ କରିବାକୁ ପଡ଼ିବ । ବିସ୍ମିତ ବନ୍ଧୁଙ୍କୁ ସେ ତାଙ୍କର ଯୋଜନାକୁ ସ୍ପଷ୍ଟ ଭାବରେ ବୁଝାଇଦେଲେ । ସଂସାରରେ କନ୍ୟା ଦାୟ ଗ୍ରସ୍ତ ଅଭିଭାବକଙ୍କର ଅଭାବ ନାହିଁ । ବ୍ୟବସାୟ ପାଇଁ ସେଇ ଟଙ୍କା ଦେବେ । ବିବାହର ଏକମାତ୍ର ସର୍ତ୍ତ ଏହାହିଁ ରହିବ ।

ବିଭୂତିବାବୁ ସନ୍ଦେହ ପ୍ରକାଶ କଲେ । ରମେଶ ଭଳି ପାତ୍ରକୁ କନ୍ୟା ଦେବ କିଏ ? କାହାର ଏମିତି ଅଶରଣ ?

ସଦାନନ୍ଦ କହିଲେ – ମୁଁ ଦେବି । ରମାକୁ ଯଦି ତମେ ତମ ପାଦତଳେ ଟିକିଏ ଜାଗା ଦେବ, ତେବେ ରମେଶକୁ ନିଜ ଗୋଡ଼ରେ ଠିଆ ହେବା ପାଇଁ ମୁଁ ମୋର ଯଥାସାଧ କରିବି ।

ବିଭୂତି ଏଥର ଆଉ ଆଶ୍ଚର୍ଯ୍ୟ ହେଲେନାହିଁ । ସଦାନନ୍ଦ ବହୁ ଚିନ୍ତା ପରେ ଏଭଳି ଏକ ପ୍ରସ୍ତାବ ରଖିଛନ୍ତି କିମ୍ବା ହଠାତ୍ ତାଙ୍କ ତୁଣ୍ଡରୁ ଏଭଳି ବାହାରି ପଡ଼ିଛି, ଏକଥା ଜାଣିବାକୁ ସେ ଚାହାନ୍ତି ନାହିଁ । ସଦାନନ୍ଦଙ୍କ ପରିବାରକୁ ସେ ଜାଣନ୍ତି । ରମା ଦେଖିବାକୁ ଭଲ ନୁହେଁ, ନଚେତ୍ ସୁଗୃହିଣୀ ହେବାର ସବୁ ଗୁଣ ତା' ଠାରେ ଅଛି, ଏ କଥା ତାଙ୍କୁ ଅଜଣା ନାହିଁ । ରମେଶ ଆଜି କାଲିକା ପିଲା । ସେ ମାନିଲେ ତ !

ସଦାନନ୍ଦ ଯେଉଁ ପ୍ରସ୍ତାବ ଦେଉଛନ୍ତି, ଆପାତତଃ, ରମେଶ ପାଇଁ ତା' ଅପେକ୍ଷା ଭଲ କିଛି ହୋଇପାରିବ ଏ ବିଶ୍ୱାସ ତାଙ୍କର ନାହିଁ । ଦୋହଲା ଏକ ଆତ୍ମବିଶ୍ୱାସ ନେଇ ସେ ଯେ ଭବିଷ୍ୟତରେ କିଛି କରିପାରିବ, ଏଭଳି ସମ୍ଭାବନା ଦେଖାଯାଉନାହିଁ । ସଦାନନ୍ଦ ଯଦି ତା' ପାଦତଳର ମାଟି ହୋଇ ତାକୁ ଠିଆ ହେବାରେ ସାହାଯ୍ୟ କରନ୍ତି, ତେବେ

ତା'ର ଜୀବନ ଗଢ଼ି ହୋଇଯିବ । ବାହାଘର ତ ଯେମିତି ହେଲେ ହେବ । ରମା ସାଙ୍ଗରେ ହେଲେ ଅସୁବିଧା କ'ଣ ? ରମେଶକୁ ଏକଥା ବୁଝାଇବାକୁ ପଡ଼ିବ । ଯଦି ସେ ରାଜି ନ ହୁଏ, ତେବେ ତା'ର ଭବିଷ୍ୟତ ପାଇଁ ତାଙ୍କର ଆଉ କୌଣସି ଦାୟିତ୍ୱ ରହିବ ନାହିଁ । ରମେଶକୁ ଏଇ କଥା ଖୋଲା ଖୋଲି କହିଦେବାକୁ ପଡ଼ିବ ।

ସେଦିନ ନଈପାଣିରେ ଦୋଳି ଖେଳୁଥିବା ଚନ୍ଦ୍ର ଆଉ ତାରାମାନଙ୍କୁ ସାକ୍ଷୀରଖି ଦୁଇବନ୍ଧୁଙ୍କ ମଧ୍ୟରେ ରାଜିନାମା ହୋଇଯାଇଥିଲା ।

ଏହାପରର ଘଟଣା ସବୁ ଦ୍ରୁତଗତିରେ ଘଟିଯାଇଥିଲା । ବିବାହ ପରେ ରମା ଶାଶୁ ଘରକୁ ଚାଲିଯାଇଥିଲା । ସଦାନନ୍ଦ ମଧ୍ୟ ଶାନ୍ତିରେ ନିଶ୍ୱାସ ପକାଇଥିଲେ । ତାଙ୍କର ମନେହୋଇଥିଲା, ଦୀର୍ଘକାଳ ଭୋଗୁଥିବା ଦୁରାରୋଗ୍ୟ ବ୍ୟାଧିରୁ ତାଙ୍କୁ ଯେମିତି ଅତି ଆଶ୍ଚର୍ଯ୍ୟଜନକ ଭାବେ ମୁକ୍ତି ମିଳିଯାଇଛି ।

ବିବାହ ପରେ ରମା କେମିତି ଥିଲା, ଏ ବିଷୟ ନେଇ କେହି ବିଶେଷ ମୁଣ୍ଡ ଖେଳାଇ ନାହାନ୍ତି । ରମେଶ ଓ ସେ ଥରେ ମାତ୍ର କେଇଘଣ୍ଟା ନିମନ୍ତେ ବୁଲି ଆସିଥିଲେ । ସେତେବେଳେ ରମା କିଛି କହିନଥିଲା । ବିବାହର ତିନିମାସ ପରେ ପଡ଼ିଲା, ରାକ୍ଷୀ ପୂର୍ଣ୍ଣିମା । ଭାଇମାନଙ୍କ ହାତରେ ରାକ୍ଷୀ ବାନ୍ଧିବା ପାଇଁ ରମା ସେଦିନ ସକାଳୁ ଆସି ସନ୍ଧ୍ୟାଯାଏ ଥିଲା । ସାଙ୍ଗରେ କେହି ନ ଥିଲେ । ଫେରିଯିବା ପୂର୍ବରୁ ରମା କିଛି କହି ନଥିଲା । ସେଇଦିନ ରାତିରେ ରମା ଆତ୍ମହତ୍ୟା କରିଥିବାର ଖବର ସଦାନନ୍ଦବାବୁ ପାଇଲେ ।

ପୋଷ୍ଟମର୍ଟମ୍‌ରୁ ଜଣାପଡ଼ିଲା : ରମା ଦୁଇମାସର ଗର୍ଭବତୀ ଥିଲା ଆଉ ତାକୁ ଶ୍ୱାସରୁଦ୍ଧକରି ମାରି ଦିଆଯାଇ ବାଥ୍‌ରୁମ୍‌ରେ ଟାଙ୍ଗି ଦିଆଯାଇଛି । ଘଟଣା ଘଟିବା ସମୟରୁ ରମେଶ ଫେରାର୍ ହୋଇଯିବା- ଏହାକୁ ଆହୁରି ସନ୍ଦେହାସ୍ପଦ କରିଦେଲା । ଏତିକିବେଳେ ପୁଣି ଏକ ବିଚିତ୍ର ଘଟଣା ଘଟିଲା । ପଡ଼ିଶା ଘରର ଦଶବାର ବର୍ଷର ଝିଅଟିଏ ଉପରେ ରମାର ପ୍ରେତ ଆବିର୍ଭୂତ ହେଲା । ଥକ୍କା ହୋଇ ଶୋଇପଡ଼ିଥିବା ରମା ଉପରେ ପ୍ରଥମେ କିଭଳି ତକିଆ ସାହାଯ୍ୟରେ ଆକ୍ରମଣ କରାଗଲା, ତା'ପରେ ତାକୁ କିଭଳି ବାଥ୍‌ରୁମ୍ ପର୍ଯ୍ୟନ୍ତ ଘୋଷାଡ଼ି ଅଣାଯାଇ ହାତପାଆନ୍ତାରେ ଥିବା ସାୱାର ରଡ୍‌ରେ ଟାଙ୍ଗି ଦିଆଗଲା ଏବଂ ସେତେବେଳକୁ କିଭଳି ତା' ଦେହରେ ଜୀବନ ଥିଲା ଇତ୍ୟାଦି ପ୍ରତ୍ୟକ୍ଷଦର୍ଶୀ ବିବରଣୀ-ସେ ନିର୍ଭୁଲ ଭାବରେ ଦେଇଗଲା । ଏ କାମ କରିଥିଲେ

ସ୍ୱୟଂ ରମେଶ ଆଉ ତା'ର ଜଣେ ବନ୍ଧୁ । ବିବରଣୀରୁ ଆହୁରି ଜଣାପଡ଼ିଲା, ରାକ୍ଷୀ ପୂର୍ଣ୍ଣିମା ଦିନ ଦୁଇଭାଇଙ୍କଠାରୁ ପଚାଶ ହଜାର ଲେଖାଏଁ ଟଙ୍କା ଆଣିବା ନିମନ୍ତେ ରମାକୁ କୁହାଯାଇଥିଲା ।

ଝିଅଟି ବୂଆବୋହୂ ରମାର ବିଶେଷ ସ୍ନେହପାତ୍ରୀ ଥିଲା ।

ଗୋଡ଼ରୁ ଅଳତା ଲିଭି ନ ଥିବା ଝିଅର ଶୋକ ଭୁଲି ସଦାନନ୍ଦ ଏଇ ଅଲୌକିକ ବିବରଣୀକୁ ଟେପ୍‌ରେ ଧରିବାକୁ ଦୌଡ଼ିଲେ । ଯଥାରୀତି ପୋଲିସ୍ ଆସିଲା । ଫେରାର୍ ଆସାମୀକୁ ଗିରଫ୍ କରିବା ନିମନ୍ତେ ପରଓ୍ୱାନା ଜାରି ହେଲା ।

ପୋଲିସ୍ ଷ୍ଟେସନ୍‌ରେ ଅଳ୍ପ ସମୟ ପାଇଁ ଦୁଇ୍ ବନ୍ଧୁଙ୍କର ସାକ୍ଷାତ୍ ହେଲା । ବିଭୂତିବାବୁ ଯେମିତି କ'ଣ କହିବାକୁ ଆଗେଇ ଆସୁଥିଲେ । ସଦାନନ୍ଦ ଘୃଣାରେ ମୁହଁ ଫେରାଇ ସେଠୁ ଚାଲିଆସିଲେ ।

ଏହିଭଳି ଭାବରେ ନଈ କୂଳରେ ସୁଖର ସମ୍ଭାବନାରେ ଯେଉଁ ଦୁଇଧାଡ଼ି କବିତା ଲେଖାଯାଇଥିଲା, ଦାରୁଣ ଶୋକ ମଧ୍ୟରେ ତାହାର ପରିସମାପ୍ତି ଘଟିଲା ।

ସଦାନନ୍ଦବାବୁ ସୁଖ ପାଇଁ ନୀଡ଼ଟିଏ ବାନ୍ଧିବାକୁ ଚେଷ୍ଟା କରିଥିଲେ । ଝିଅ ପାର କରିବାକୁ ଯାଇ ଭୁଲ୍‌ଟିଏ କରି ବସିଲେ । ଝିଅ ନିଜର ଜୀବନ ଦେଇ, ତାଙ୍କର ଏହି ତ୍ରୁଟିର ପ୍ରାୟଶ୍ଚିତ୍ତ କରିଗଲା । ସୁଖ ପଛରେ ଅଣନିଃଶ୍ୱାସୀ ହୋଇ ଧାଉଁଥିବା ଅଶାନ୍ତ ମଣିଷର ଦଉଡ଼ ଯେ ଶେଷରେ ଦୁଃଖର ମହାସମୁଦ୍ର ମଧ୍ୟରେ ହଜିଯାଏ, ଏ କଥା ସଦାନନ୍ଦବାବୁଙ୍କ ବହୁଦର୍ଶୀମନରେ ଧରାପଡ଼ି ନ ଥିଲା ।

ସଦାନନ୍ଦବାବୁ କାହାକୁ କିଛି କହିପାରୁନଥିଲେ । ନିରୋଳାରେ ବସି କେବଳ ଦୀର୍ଘଶ୍ୱାସ ଛାଡୁଥିଲେ ।

ବଡ଼ପୁଅ ଖବର ପାଇ ଦୂରଦେଶରୁ ଧାଇଁ ଆସିଥିଲା । ସଦାନନ୍ଦବାବୁ ଅଶ୍ରୁରୁଦ୍ଧ କଣ୍ଠରେ ତାକୁ କହିଥିଲେ, 'ରମୀଟା ଆତ୍ମହତ୍ୟା କରିଦେଲା ।'

ବଡ଼ପୁଅ ଗମ୍ଭୀର ହୋଇ ନିଜର ଏଇ ନିରୂପାୟ ଜନ୍ମଦାତାଙ୍କ ଆଡ଼େ ମୁହୂର୍ତ୍ତେ ଅନାଇଲା । ତା' ପରେ କହିଲା – ସେ ଦିନ ତମେ ବି ରମୀ ସହିତ ଆତ୍ମହତ୍ୟା କରିଛ ବାପା । ଖାଲି ଏକଥା ତମେ ବୁଝିପାରିନାହଁ । ଗୋଟାଏ ଡ୍ରଗ୍ –ଆଡ଼ିକ୍ଟ ସାଙ୍ଗରେ...

ସଦାନନ୍ଦବାବୁ ମୁହଁ ବୁଲାଇ ନେଇଥିଲେ । ତାଙ୍କ ଛାତି ଫାଟି ପାଣି ବହିଯାଉଥିଲା ।

• •

ନଈକୂଳ ସେମିତି ଅଛି । ଏବେ ମଧ୍ୟ ହାତରେ ଠେଙ୍ଗୁଣୀ ଆଉ ଛରି ବ୍ୟାଗ୍ ଧରି ସ୍ୱାସ୍ଥ୍ୟାନ୍ୱେଷୀମାନେ ସେଠି ଭିଡ଼ ଜମାଉଛନ୍ତି । ସ୍ୱାସ୍ଥ୍ୟ ଉଦ୍ଧାର ଆଉ ସଂସାର ଧର୍ମ ସମାନ ତାଳରେ ଚାଲିଛି । ବଡ଼ିଭୋରରୁ ଆସି ଆଗ ଆଗ ଫୁଲ ତୋଳି ନେବା ନିମନ୍ତେ ସେମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚାଲିଛି । ଏଥିପାଇଁ ମନ କଷାକଷି ବି ହୋଇଯାଉଛି । ଟିସାର୍ଟ ଉପର ମୋଟା ବେଲ୍ଟରେ ଡଗ୍-ଚେନ୍ ଝୁଲାଇ ଶ୍ୱାନ-ପ୍ରେମୀ ଭଦ୍ରଲୋକ ଏବେ ମଧ୍ୟ ରାସ୍ତା ମଝିରେ ପଶୁଟିକୁ ଠିଆ କରାଇ ତା'ର ପ୍ରାତଃକୃତ୍ୟ ସମାପ୍ତିରେ ପ୍ରୋତ୍ସାହିତ କରୁଛନ୍ତି । ଏବେ ମଧ୍ୟ କ୍ଷମତା ମତ୍ତ ଅଧିକାରୀ ପିଣ୍ଡି ଆସୀନ ହୋଇ କାର୍ଯ୍ୟଗ୍ରାହୀମାନଙ୍କଠାରୁ ପାକେଟ୍ ଗ୍ରହଣ କରୁଛନ୍ତି ।

ସଦାନନ୍ଦ ବିଭୂତି ଉପାଖ୍ୟାନ ଦିନା କେତେ ନଈକୂଳରେ ଖୁବ୍ ଆଲୋଚିତ ହେଲା । ତା' ପରେ ଧୀରେ ଧୀରେ ସେଥିରେ ଭଟ୍ଟା ପଡ଼ିଆସିଲା ।

ଗୁଣନିଧିବାବୁ ଦ୍ୱିଜବରବାବୁଙ୍କୁ ଅନାଇ କହନ୍ତି – ପାଖରେ ଗଙ୍ଗାମାତା ଲାଗିଛନ୍ତି, ଛାଇଁଲ ସମୃଦି....

ହଠାତ୍ ଗୋଟିଏ ଶୂନ୍ୟ ପିଣ୍ଡି ଉପରେ ତାଙ୍କର ଦୃଷ୍ଟି ପଡ଼ିଯାଏ । ସେ ଚୁପ୍ ହୋଇଯାଆନ୍ତି । ସେଇଠି ଦୁଇଟି ସଂସାରୀ ମଣିଷ ସୁଖର ସଉଦା କରୁଥିଲେ । ଆଜି ସେ ଜାଗା ଖାଲିପଡ଼ିଚି ।

ଅନେକ ଦିନରୁ ସଦାନନ୍ଦ କି ବିଭୂତି କେହି ନଈକୂଳକୁ ଆସୁନାହାନ୍ତି ।



# ଛାଇତଳିଆ ଗଛ

ସଦାନନ୍ଦ ଘରକୁ ଫେରୁଛନ୍ତି । ସହରକୁ ଯାଇଥିଲେ । ଆହୁରି ଗଦାଏ ବାଟ ଅଛି ଗାଁ । ଆଗରେ ରାସ୍ତା ଲମ୍ବିଯାଇଛି ସାପେଇ ସାପେଇ ଅଜଗର ଭଳି । ଆଲୁଅ ପଡ଼ି କଳା ପିଠିଟା ତା'ର ଚିକ୍ ଚିକ୍ କରୁଛି । ଖାଲ ଖମା ଦିଶୁଚି ସାପ ପିଠିର ଚକାଚକା ଚିହ୍ନଭଳି । ସମୁଦ୍ର ଢେଉ ଉପରେ ଡଙ୍ଗା ନାଚି ନାଚି ଚାଲିଲା ଭଳି ଉଁଚା ନୀଚା ରାସ୍ତା ଉପରେ ବସ୍ ଭାସି ଭାସି ଆଗୋଉଚି । ଦୁଇ ପାଖରେ ଛାଡ଼ିଦେଇ ଯାଉଚି କେତେ ଗାଁ ଗଣ୍ଡା, ବିଲବାଡ଼ି, ନଈନାଳ । ବାଟ ସରୁ ନାହିଁ । ମେସିନ୍‌ପଦା - ଏଇ ଗଲା – ଆଗକୁ ଅଛି ଖଦାଳ, ସେମିଳିପଡ଼ା, ରାଇପୁର, ହେଣ୍ଡୁଳା – ସେଇଠୁ ପଡ଼ିବ ଧାନଘର– ତାଙ୍କ ଓହ୍ଲାଇବା ଜାଗା – ସେଠୁ ଦୁଇ କିଲୋମିଟର ଗଲେ ତାଙ୍କ ଗାଁ ମାଧପୁର । ରାତି ତ ହେବ । ଦିନଯାକ କୋର୍ଟ କଚେରୀରେ ଏପଟ ସେପଟ ହୋଇ ଏ ବୟସରେ ଏତକ ବାଟ ଚାଲିବାକୁ ତାଙ୍କର ସାହସ ପାଉନଥିଲା ।

ତାଙ୍କ ଗାଁର କିଛି ହରିଜନ ଟୋକା ଧାନ ଘର ବଜାରରେ ରିକ୍‌ସା ଚଳାନ୍ତି । ଶେଷ ବସ୍‌କୁ ଦେଖି ନିଶା ପାଣି ଟିକିଏ ଅମଳ କରି ସେମାନେ ବେଶ ରାତିରେ ଗାଁକୁ ଫେରନ୍ତି । ସଦାନନ୍ଦଙ୍କର ଭରସା ସେଇମାନଙ୍କ ଉପରେ । ରଥିଆଟା ଯଦି ମିଳିଯାଆନ୍ତା ତେବେ ଆଉ ଚିନ୍ତା କ'ଣ ? ନ ହେଲେ ବି ବାଟ ପାଇଁ ବାଟୋଇ ମିଳିବାର ଆଉ ଗୋଟିଏ ରାସ୍ତା ଖୋଲିଦେଇଚି ବିପିନା ପୁଅ ରଞ୍ଜନ । ଖୋଦ୍ ବଜାର ଉପରେ ତା'ର ଭିଡ଼ିଓ ପାର୍ଲର୍ । ଗାଁ ଗଣ୍ଡାକୁ ଏବେ ସିନେମା ଭୂତ ଖୁବ୍ ଜୋରରେ ମାଡ଼ି ବସିଲାଣି । ସିନେମା ଘରତ ନାହିଁ । ଟଙ୍କା କୋଡ଼ିଏ ପଚିଶ ହଜାର ଖଟାଇ ଦେଲେ ସିନେମା ଯାହାକୁ ଯେତେ । ପାଞ୍ଚ/ଦଶ ଟଙ୍କା ପକେଇ ଦେଲେ ଦେହ ଆଉ ମନକୁ ଉଷୁମ କରିବା ପାଇଁ ପ୍ରଚୁର ଖୋରାକ । ଆଧୁନିକ ହେବା ପାଇଁ ଆଉ ସହର ଆଡ଼କୁ ଅନେଇ ବସିବାକୁ ପଡ଼ିବ ନାହିଁ । ରଞ୍ଜନ ପୁଣି କୁଆଡ଼େ ସ୍ୱତନ୍ତ୍ର ଗରାଖ ମାନଙ୍କ ପାଇଁ ବେଶୀ

ରାତିରେ ବିଶେଷ ସୋ'ର ବ୍ୟବସ୍ଥା କରେ ବୋଲି ସଦାନନ୍ଦ ଶୁଣିଛନ୍ତି । ତା'ର ଭଡ଼ପମନ ବି ସେମିତି ଚଢ଼ା । ରଞ୍ଜନ ବିଚରା କରିବ କ'ଣ ? ଯେଉଁ ସବୁ କ୍ୟାସେଟ୍ ସେଥିରେ ସେ ଦେଖାଏ, ତାକୁ ତ ପୁଣି ବେଶୀ ପଇସା ଦେଇ ଲୁଚା ଚୋରାରେ ଯୋଗାଡ଼ କରିବାକୁ ପଡ଼େ ! ଏଠି ପୁଣି ପୁଲିସ୍ ଅଛନ୍ତି । ତାଙ୍କୁ ବି ଫଳେ ପୁଷେ ସନ୍ତୁଷ୍ଟ କରିବାକୁ ପଡ଼େ ।

ମାଧପୁର ଗାଁରୁ ପ୍ରାୟ ପ୍ରତିଦିନ କେହିନା କେହି ଭିଡ଼ିଓ ଦେଖାଳୀ ଧାନଘର ବଢାରରେ ଦେଖା ପଡ଼ନ୍ତି । ସେଭଳି କେହି ଆଜି ମିଳିବେ ନାହିଁ ?

ସଦାନନ୍ଦ ବାହାରକୁ ଅନାଇଲେ । ରାଇପୁର ଚାଲିଗଲାଣି ପରା । ଆଜି ଭୋର ବସ୍ ଧରି ସେ ସହରକୁ ଯାଇଥିଲେ । ସେଇଠୁ ଓକିଲଙ୍କ ଘରେ ପରାମର୍ଶ, ପାଇସ୍ ହୋଟେଲରେ ନାକରେ କାନରେ ଦି' ମୁଠା ଗୁଞ୍ଜି ଦିନସାରା ଓକିଲଙ୍କ ପଛେ ପଛେ ଏ ଘରୁ ସେ ଘର ଏ ବାବୁଙ୍କ ପାଖରୁ ସେ ସାହେବଙ୍କ ପାଖକୁ – ଏମିତି ବୁଲି ବୁଲି ଦିନସାରା କଟିଗଲା – ତାଙ୍କର ଭାଗ୍ୟ ଭଲ – ଜବାନବନ୍ଦୀଟା ଆଜି ସରିଯାଇଛି । ତେବେ ତାରିଖ ହୋଇଗଲା ।

ଓକିଲ ଯେତେ ଯାହା ଭରସା ଦିଅନ୍ତୁ । ଦୁନିଆଦାରିର କିଛି ଅଭିଜ୍ଞତା ସଦାନନ୍ଦଙ୍କର ବି ଅଛି । ସିଭିଲ୍ କେଶ୍–ନିର୍ମୂଳୀ ଲତା ଭଳି ମାଡୁଥାଏ, ଅମରପୋଇ ଭଳି ପତ୍ରରୁ କାଣ୍ଡ ବାହାର କରୁଥାଏ । ଶୁଖିଲା ଚେରରୁ ନୂଆ ପତ୍ର କ୍ଷଣାଟେକି ଏମିତି ବାହାରି ପଡ଼େ, ଯେମିତି ତା'ର ମରଣ ନାହିଁ । କେବେ ଇଏ ସରିବ କିଏ ଜାଣେ ?

ଅବସର ନେବା ପରେ ସଦାନନ୍ଦ ଗାଁରେ ରହିବାକୁ ସ୍ଥିର କଲେ । ସୁମତି ଥିବାବେଳେ ସହରରେ ଘର ଖଣ୍ଡେ କରି ଭଡ଼ା ଦେଇଥିଲେ । ପୁଅ ଗୋଟିଏ – କ'ଣ ହେବ, କୁଆଡ଼େ ଯିବ – ସ୍ଥିରତା କିଛି ନ ଥିଲା । ସହରରେ ଘର ଖଣ୍ଡେ ଥାଉ । କେତେବେଳେ ହେଲେ କାମରେ ଲାଗିବ ।

ସରକାରୀ ଘରେ ଜୀବନ କଟିଲା । ଭଗବାନ୍ ଚାହିଁଲେ ଶେଷ ଜୀବନ ସେ ନିଜ ଘରେ କଟାଇବେ । ମଣିଷ ତ କେତେ କଥା ଭାବେ । ମାତ୍ର ସେଥିରୁ ଘଟେ କେତେ ?

ସଦାନନ୍ଦ କୋଉଠି ପଢ଼ିଥିଲେ, ଜୀବନକାଳ ଯେତେ ଦୀର୍ଘ ହେବ, ମଣିଷର ଦୁଃଖ ସେତେ ବଢ଼ିବ । ଆନନ୍ଦ ନାମକ ଚିଜଟି ତା' ହାତ ପାଆନ୍ତାରୁ ସେତେ ଦୂରକୁ

ପଳାଇବ । ମୃତ୍ୟୁରେ ହିଁ ଶାନ୍ତି, ମୃତ୍ୟୁରେ ହିଁ ଆନନ୍ଦ । ଜୀବନର ଯବନିକା ଯେତେ ଶୀଘ୍ର ନଇଁବ, ମଣିଷ ପାଇଁ ତାହା ସେତେ ଭଲ ।

କେଡ଼େ ଖାଣ୍ଟି କଥାଟିଏ ! ସୁମତିଙ୍କର ଯିବାର ବୟସ ହୋଇନଥିଲା ତଥାପି ସେ ଚାଲିଗଲେ । କେଡ଼େ ଭାଗ୍ୟର କଥା । ବଞ୍ଚିଥିଲେ ବର୍ତ୍ତମାନର ଏଇ ଅବସ୍ଥା ଦେଖି ସେ ଲୁହ ନଗଡ଼ାଇ ରକ୍ତ ଗଡ଼ାଉ ଥା'ନ୍ତେ ସିନା ! ଅଥଚ ତାଙ୍କୁ ଆଉ ତାଙ୍କ ପରିବାରକୁ ଲୋକେ ସୁଖୀ ପରିବାର ବୋଲି କହୁଥିଲେ ।

କେହି ଜାଣନ୍ତି ନାହିଁ – ସୁଖ ପ୍ରକୃତରେ କ'ଣ । ସେ କ'ଣ ଇନ୍ଦ୍ରଧନୁର ରଙ୍ଗ ନେଇ ମନର ଆକାଶରେ ଫୁଟି ଉଠେ ଆଉ ଚାହୁଁ ଚାହୁଁ ମିଳାଇ ଯାଏ ? ସେ କ'ଣ ଉଲ୍କାର ଗତିରେ ଦେଖାଦେଇ ବିଜୁଳୀର ଗତିରେ ଫେରିଯାଏ ? କେହି କ'ଣ ପ୍ରକୃତରେ ତାକୁ ଚିହ୍ନିଛି ? କେହି କ'ଣ ଜାଣେ ଯେ, ଯେ ପର୍ଯ୍ୟନ୍ତ ମଣିଷ ନିଜ ଆନନ୍ଦକୁ ସାଥିରେ ଧରି ହସି ହସି ଚିତାରେ ଶୋଇ ନ ପଡ଼ିଛି, ସେ ପର୍ଯ୍ୟନ୍ତ ତାକୁ ପ୍ରକୃତରେ ସୁଖୀ ବୋଲି କୁହାଯାଇ ପାରିବ ନାହିଁ ? କିଏ ଜାଣେ ?

ସୁମତି ବି ଜାଣି ନ ଥିଲେ । ଯାହାକୁ ସେ ନିଜ ଜୀବନ ପୋତର ଧ୍ରୁବତାରା ମନେ କରି ଦୋହଲି ଦୋହଲି ନିଶ୍ଚିନ୍ତରେ ଲକ୍ଷ୍ୟ ପଥରେ ଭାସି ଚାଲିଥିଲେ, ସେଇ ତାଙ୍କର ଏକମାତ୍ର ସନ୍ତାନ ସୁମନ୍ତ ତାଙ୍କ ପାଇଁ ଶେଷରେ ପରିଣତ ହେଲା ଶନି ଗ୍ରହରେ । ପ୍ରକୃତରେ ବଡ଼ କଲବଲ ହୋଇ ବିଦାୟ ନେଲେ ସୁମତି ।

ତାଙ୍କ ଆଗରେ ଅନ୍ୟ ବାଟ ବି ତ ନ ଥିଲା । ଆଇନ୍ ତାଙ୍କ ପିଠିରେ ଅପରାଧିନୀର ମୋହର ମାରି ଛାଡ଼ି ଦେଇଥିଲା । ଯେଉଁ ଜୀବନ ସେ ମୁଣ୍ଡ ଟେକି, ଛାତି ଫୁଲାଇ ସାମ୍ରାଜ୍ଞୀ ଭଳି ଜିଉଁଥିଲେ, ସେଇ ଘଟଣା ପରେ ମୁଣ୍ଡନୁଆଁଇ, ମୁହଁ ଲୁଚାଇ, ନ୍ୟୂନ ହୋଇ ବଂଚିବା ତାଙ୍କର ଆତ୍ମ ସମ୍ମାନକୁ ବାଧିଥିଲା । ତେଣୁ ସେ ଚୁପଚାପ୍ ବିଦାୟ ନେଇ ଚାଲିଗଲେ । ପାଖରେ ରହି ସଦାନନ୍ଦ ଏହାର ସାମାନ୍ୟତମ ସୂଚନା ମଧ୍ୟ ପାଇ ପାରିଲେ ନାହିଁ । ଧାଡ଼ିଟିଏ ମାତ୍ର ଲେଖିଦେଇଗଲେ, "ଏହା ଛଡ଼ା ମୋର ଆଉ ଗତି ନଥିଲା । ତମେ ବରଂ ମୋତେ କ୍ଷମା କର" – ସଦାନନ୍ଦ ବରଂ କ୍ଷମା କରିଦେବେ । ମାତ୍ର ଦୁନିଆ ? 'ଚୋରର ମା' ବୋଲି କହି ଯେଉଁ ନୂତନ ବିଶେଷଣଟି ସୁମତିଙ୍କ ନାମ ପୂର୍ବରୁ ଯୋଡ଼ା ହୋଇଗଲା – ପଳାଇଯାଇ ସେ କ'ଣ ତହିଁରୁ ଆତ୍ମ ରକ୍ଷା କରିପାରିଲେ ? ସୁମତି ଜାଣି ନ ଥିଲେ ଯେ, ଜୀବନ ପଥରୁ ଏମିତି ଅଚାନକ ଆପଣାକୁ ଅପସାରିତ କରି ନେଲେ ସେଥିରେ ଦୁଇକୂଳ ନଷ୍ଟ ହୁଏ ।

ସଦାନନ୍ଦ ଭାବିଥିଲେ ସହରର ଏଇ ଅପମାନ ଜନକ ନିଃସଙ୍ଗ ଜୀବନ ଅପେକ୍ଷା ଗାଁର ଜୀବନ ତାଙ୍କ ପାଇଁ ଅଧିକ ନିରୁପଦ୍ରବ ଆଉ ନିର୍ଦ୍ଵନ୍ଦ୍ଵ ହେବ । ସୁମତି ଚାଲିଗଲେ । ସୁମନ୍ତତ ବିଦାୟ ନେଇଥିଲା ତା' ପୂର୍ବରୁ । କାହା ମୁହଁକୁ ଚାହିଁ ଅବା ସେ ସହରର ସେ ଗ୍ଳାନିକର ଜୀବନକୁ ମାନିନେଇ ଥାଆନ୍ତେ ? ସୌଭାଗ୍ୟକୁ ସହରରେ ରହୁଥିଲେ ବି ଅନ୍ୟମାନଙ୍କ ଭଳି ଗାଁର ସମ୍ପର୍କକୁ ସେ କାଟି ଦେଇନଥିଲେ । ଘରଖଣ୍ଡକ ଦେଖାରଖା ଯୋଗୁଁ ଏବେ ବି ମୁଣ୍ଡଟେକି ଠିଆ ହୋଇଥିଲା । ମଝିରେ ମଝିରେ ଯାଇ ସେ ସେଠାରେ ଦିନେ ଅଧେ କଟାଇ ଆସୁଥିଲେ । ସୁମତି ଆଉ ସୁମନ୍ତ ମଧ ଗାଁ ପସନ୍ଦ କରୁନଥିଲେ ବି କେବେ କେମିତି ଆସିଛନ୍ତି । ଅନ୍ତତଃ ତାଙ୍କର ଆସିବାରେ ସୁମତି କେବେ ବି ବାଧା ସୃଷ୍ଟି କରିନାହାନ୍ତି । ସଦାନନ୍ଦ ସେଇଠିକି ଫେରି ଆସିଲେ – ଜାଣ ଡହଡହ ଖରାରୁ ଯାଇଁ ଡହକୁଥିବା ନିଆଁ ଗଦା ଉପରେ ପଡ଼ିଲେ ।

କେଡ଼େ ସରଳ ଆଉ ନୀରିହ ଆଖିରୁ ଝର ଝର ଲୁହ ଝରାଇ ସେମାନେ ସଦାନନ୍ଦଙ୍କର ପୁତ୍ର ଆଉ ପତ୍ନୀ ବିୟୋଗ ଜନିତ କ୍ଷତ ଉପରେ ଶାନ୍ତିର ପ୍ରଲେପ ବୋଳିବାକୁ ଆତୁର ହୋଇ ପଡ଼ିଥିଲେ । ଗରାଟାଏ କି ନୋଟାଟାଏ ହାତରେ ଧରି ନିର୍ବିକାର ଭାବରେ ଚାଲିଯାଉଥିବା କିମ୍ଵା ଫଳନ୍ତା ଗଛର ମୋଟା ଡାହିଟିକୁ ବିନାନୁମତିରେ କାଟି ନିଜର ବାର୍ଷିକ ଜାଳେଣି ଖର୍ଚ୍ଚର ବ୍ୟବସ୍ଥାରେ ଲାଗିଥିବା ବ୍ୟାପାରରେ ପ୍ରତିବାଦରେ ସେଇ ସରଳ ମୁହଁମାନ ଯେଉଁଭଳି ପ୍ରଜ୍ଵଳିତ ଅଗ୍ନିକୁଣ୍ଡର ଅବସ୍ଥାପ୍ରାପ୍ତ ହୋଇଥିଲେ କିମ୍ଵା ସେଇ ନିଷ୍ପାପ ମୁହଁମାନଙ୍କରୁ ତାଙ୍କ ପାଇଁ, ତାଙ୍କର ପରଲୋକ ଗତା ପତ୍ନୀ ଆଉ ବିଦେଶୀ ପୁତ୍ର ପାଇଁ ଯେଉଁ ସବୁ ସୁଭାଷିତ ଶବ୍ଦ ସମ୍ଭାର ମାନ ରକେଟ୍ ଗତିରେ ନିକ୍ଷିପ୍ତ ହୋଇଥିଲା, ତାକୁ କାହା ସହିତ ତୁଳନା କରିବେ ? ମଇଳା କୁଣ୍ଡ ସହିତ ?

ସୁମନ୍ତ ସେଦିନ କୋଚିଂ କ୍ଲାସ୍‌ରୁ ଫେରି ସୁମତିଙ୍କୁ କହିଲା, 'ମମ୍, ମିତା ତମ ସହିତ କଥା ହେବାକୁ ଚାହେଁ ।

ସୁମତି ମାଗାଜିନ୍ ଖଣ୍ଡେ ପଢୁଥିଲେ । ତା' ଉପରୁ ଆଖି ନ ଉଠାଇ ପଚାରିଲେ 'ମିତା କିଏ ?

ଅଧୈର୍ଯ୍ୟ ସୁମନ୍ତ ସେଦିନ ବିସ୍ଫୋରିତ ହୋଇଥିଲା – Don't tell that you don't know her.

ସୁମତିଙ୍କର ଭ୍ରୁକୁଂଚିତ ହୋଇ ଯାଇଥିଲା । ତଥାପି ସେ ଶାନ୍ତ ଗଳାରେ କହିଲେ ଧରିନିଆଯାଉ ମୁଁ ତାକୁ ଜାଣେ । So ?

ଅତନ୍ଦ୍ରଗଳାରେ ସୁମନ୍ତ ଘୋଷଣା କଲା – She needs a Gynaecolojist ... ସୁମତି ଆକାଶରୁ ପଡ଼ିଲେ । ମିତା କିଏ ? ବର୍ତ୍ତମାନ ସେ ଧରି ପାରୁନାହାନ୍ତି । ସୁମନ୍ତର ଅନେକ ବନ୍ଧୁବାନ୍ଧବୀ ତ ଘରକୁ ଆସନ୍ତି । ତା' ରୁମ୍‌ରେ ବସି ହଇଚଇ କରନ୍ତି । ମ୍ୟୁଜିକ୍‌ସିଷ୍ଟମ୍‌ରୁ ବିଦେଶୀ ଧୁନ୍ ସବୁ ଉଚ୍ଚ ସ୍ୱରରେ ବାଜେ । ସୁମତି ସେ ଆଡ଼େ ଅନାନ୍ତି ନାହିଁ । ପୂଜାରୀ ସେମାନଙ୍କୁ ଚା ଫା ଦିଏ ତା'ରି ଠୁ ଯାହା ରୁମ୍‌ରେ ନାଚତାମ୍‌ସା ଚାଲୁଥିବା କଥା ଶୁଣନ୍ତି । ବେଳେବେଳେ କରିଡର୍‌ରେ କି ଡ୍ରଇଂ ରୁମ୍‌ରେ ସେମାନଙ୍କ ଭିତରୁ ଜଣ ଅଧଙ୍କ ସାଙ୍ଗରେ ଦେଖା ହୋଇଗଲେ 'ହାଲୋ ଆଣ୍ଟି, ହାଇ ଡିଅର୍' ଭିତରେ ହିଁ ଉଭୟ ପକ୍ଷର ପରିଚୟ ସୀମିତ ରୁହେ ।

ସୁମତି ଜାଣନ୍ତି ସୁମନ୍ତଡ୍ରିଙ୍କସ ନିଏ । ପ୍ରଥମେ ଯେତେବେଳେ ସେ ଏ କଥା ଜାଣିଲେ, ସେତେବେଳେ ତାଙ୍କୁ ଚାରିଆଡ଼ ଅନ୍ଧାର ଦିଶିଥିଲା । ଅଠର ବର୍ଷର ଏତେ ବ୍ରିଲିୟାଣ୍ଟ ପୁଅ ତାଙ୍କର । ଜଏଣ୍ଟ୍ ଏଣ୍ଟ୍ରାନ୍ସରେ ସାରା ଦେଶରେ ଫାଷ୍ଟ ହୋଇ କମ୍ପ୍ୟୁଟର ଇଞ୍ଜିନିୟରିଂରେ ଆଡ଼ମିସନ୍ ନେଇଛି । ଶେଷକୁ ସେ କ'ଣ ଘୋଡ଼ା ମଦୁଆ ହୋଇଯିବ !

ସୁମତି ରକ୍ଷଣଶୀଳା ନୁହନ୍ତି । ରୀତିମତ ଫିଜିକ୍ସରେ ପିଚ୍ଚିକରି ଗୋଟିଏ ମଲ୍‌ଟି ନାସନାଲ କମ୍ପାନୀରେ ସାଇଣ୍ଟିଷ୍ଟ ଚାକିରୀ କରିଛନ୍ତି ପାଞ୍ଚବର୍ଷ । ପରିବାରର ଦାୟିତ୍ୱ ବଢ଼ିବାରୁ ସଦାନନ୍ଦଙ୍କ କଥାରେ ଚାକିରୀ ଛାଡ଼ିଛନ୍ତି । ପରିବର୍ତ୍ତନ ସହିତ ପାଦ ମିଳାଇ ଚାଲିବା ଯେ ବର୍ତ୍ତମାନ ଜୀବନର ଅନ୍ୟ ନାମ ସେ କଥା ତାଙ୍କୁ ଅଜଣା ନାହିଁ । ତେବେ ପରିବାର ସଂସ୍କାର ରକ୍ତରେ ଅଛି । ତାଙ୍କର ବାପା–ଭାଇମାନେ ବି ଉଚ୍ଚ ଶିକ୍ଷିତ ସଂସ୍କାରମୁକ୍ତ । ସେମାନେ କେହିତ ଏଭଳି ନୁହନ୍ତି । ସଦାନନ୍ଦଙ୍କର ସାହେବୀ ପୋଷାକ ଆଉ ତୋଖଡ଼ ଇଂରାଜୀ କଥନ ତଳେ ଯେଉଁ ଗ୍ରାମୀଣ ମନଟି ଅତ୍ୟନ୍ତ ଜୀବନ୍ତ, ସେ କଥା ତାଙ୍କ ଅପେକ୍ଷା ଆଉ କିଏ ଜାଣେ ? ଟିକିଏ ଫାଙ୍କା ପାଇଲେ, ସେ ନିଜେ ଗାଡ଼ି ଡ୍ରାଇଭ କରି ପଚାଶ କିଲୋମିଟର ଦୂର ଗାଁର ମାଟି ପିଣ୍ଡାରେ ଖଜୁରୀ ପଟି ଖଣ୍ଡେ ପକାଇ ଗଡ଼ି ପଡ଼ିବାରେ ଯେଉଁ ଆନନ୍ଦ ପାଆନ୍ତି, ସେ କଥା କ'ଣ ସୁମତି ଜାଣି ନାହାନ୍ତି ?

ସୁମତି ଅଗତ୍ୟା ସଦାନନ୍ଦଙ୍କୁ ସବୁ କଥା କହିଲେ – ଧୈର୍ଯ୍ୟ ଧରି ସବୁ କଥା ଶୁଣିସାରିବା ପରେ ସଦାନନ୍ଦ କହିଥିଲେ, Our's is a close knit family. ଆମେ ସମସ୍ତେ ପରସ୍ପରକୁ ଖୁବ୍ ଭଲ ପାଉଁ – ନୁହେଁ ?

ସୁମତି ସଦାନନ୍ଦଙ୍କ ଆଡ଼େ ଅନାଇ ଅପେକ୍ଷା କଲେ ।

ସଦାନନ୍ଦ କହିଲେ – ଆମର ଏଇ ଛୋଟ ପୃଥିବୀର କେନ୍ଦ୍ରରେ ରହିଛି ସୁମୁ-ତାକୁ ଘେରି ଆମେ ଦୁଇପ୍ରାଣୀ ଘୁରୁଛୁ – ନାଁ ନୁହେଁ ?

ସୁମତି ଆଶ୍ଚର୍ଯ୍ୟ ହୋଇ ସଦାନନ୍ଦଙ୍କୁ ଦେଖୁଥିଲେ ।

ସଦାନନ୍ଦ କହିଚାଲିଥିଲେ – ଆମର ଗୋଟା ପୃଥିବୀକୁ ବ୍ୟାପି ସେଇ ରହିଚି । ଯଦି ଆମେ ଏବେ କୌଣସି କାରଣରୁ ତାକୁ ହଟାଇ ଦେଉ ତେବେ ଆମର ବଞ୍ଚି ରହିବା ମଧ୍ୟ ନିରର୍ଥକ ହୋଇଯିବ ।

ସଦାନନ୍ଦ ବୁଝାଇଥିଲେ ଡ୍ରିଙ୍କ୍‌ସଟା ଆଉ ଏବର ସମାଜରେ ଦୂଷଣୀୟ ହୋଇ ରହିନାହିଁ । ସେଥିପାଇଁ ଏତେ ବିଚଳିତ ହୋଇ ପଡ଼ି ଗୁଣର ପୁଅ ପାଇଁ ସମସ୍ୟା ଠିଆ କରିଦେବା ଉଚିତ ହେବ ନାହିଁ ।

ଗୁଣ ! ସକାଳୁ ସଂଜ ପର୍ଯ୍ୟନ୍ତ ପୁଅର ରୂପ ଆଉ ଗୁଣର ବନ୍ଦନା ଘରୁ ବାହାରୁ ଶୁଣି ଶୁଣି ସୁମତି କ୍ଳାନ୍ତ ହୋଇ ପଡୁଥିଲେ । ଏକାନ୍ତରେ ସେ ନିଜ ଭିତରକୁ ଅନାଇ ପରଖୁଥିଲେ, ନିଜର ଏକମାତ୍ର ଆତ୍ମଜକୁ ସେ କ'ଣ ଈର୍ଷା କରିବାକୁ ଆରମ୍ଭ କରିଛନ୍ତି ! ଈଶ୍ୱର ସୁମୁକୁ ଆଉ ଟିକିଏ କମ୍ ରୂପ ଆଉ ଗୁଣ ଦେଇଥିଲେ ସେ କ'ଣ ଖୁସି ହୋଇଥାଆନ୍ତେ !

ସଦାନନ୍ଦଙ୍କ ନିଷ୍ପତ୍ତି ପରେ ସୁମତି ଚୁପ୍ ହୋଇ ଯାଇଥିଲେ । ମନ ତାଙ୍କର କହୁଥିଲା, ଯାହା ହେଉଛି ଠିକ୍ ହେଉନାହିଁ । ସେ ଧୀରେ ଧୀରେ ନିଜକୁ ସଂବୃତ କରି ନେଉଥିଲେ । ତାଙ୍କର ଦୃଷ୍ଟିରେ ହତାଶା ଆଉ ଶୂନ୍ୟତା ଫୁଟି ଉଠୁଥିଲା । ଏକ ପ୍ରାଣ ହୀନ ପିତୁଳା ଭଳି ସେ କେବଳ ନୀରବରେ ଚଲାବୁଲା କରୁଥିଲେ । ତାଙ୍କର ପାଦତଳର ମାଟି ଯେମିତି ଚିରକାଳ ପାଇଁ ଖସି ଯାଇଥିଲା ।

ତା' ଭିତରେ ଏଇ । ପୁଅ ଆଡ଼କୁ ଅନାଇ ସୁମତି କ'ଣ କହିବେ କିଛି ସ୍ଥିର କରିପାରୁନଥିଲେ, ଅବିଚଳିତ କଣ୍ଠରେ ସୁମନ୍ତ କହି ଚାଲିଥିଲା – She has missed her periods.

ସୁମତି କ'ଣ ଚିତ୍କାର କରି ଉଠିବେ ? ମିତାର ମାସିକ ଧର୍ମ ଯଦି ବନ୍ଦ ହୋଇ ଯାଇଥାଏ ତେବେ ତା'ର ଅନ୍ୟ କୌଣସି କାରଣ ଥାଇପାରେ ଏଇଭଳି ଏକ କ୍ଷୀଣ ସନ୍ଦେହକୁ କ'ଣ ପ୍ରକାଶ କରିବେ ? କିମ୍ବା ଏଥିପାଇଁ ବନ୍ଧୁ ଭାବରେ କେବଳ ସହାନୁଭୂତି

ପ୍ରକାଶ କରିବା ଛଡ଼ା ସୁମନ୍ତର ଯେ ଅନ୍ୟ କୌଣସି ଭୂମିକା ନାହିଁ, ସେ କଥା ନିଜର ଯୋଗ୍ୟ ପୁଅକୁ ବୁଝାଇ କହିବେ ? କିମ୍ବା କେମିତି ଏସବୁ ଘଟିଗଲା, ସେ ବିଷୟ ପଚାରି ବୁଝିବେ ?

ତାଙ୍କର ମନକୁ ସତେ ଯେମିତି ପଢ଼ିପାରିବା ଭଳି ସ୍ୱରରେ ସୁମନ୍ତ ବୁଝାଇ ଦେଲା – It just happened ମିତାର ସେମିତି ଇଚ୍ଛା ନ ଥିଲା – I insisted ମିତା test ଇତ୍ୟାଦି କରାଇ ସାରିଛି । It's positive.

ସୁମତି ମୂକ ହୋଇ ଯାଇଥିଲେ । ଆଗରେ ଠିଆ ହୋଇଥିବା କିଶୋର ପୁତ୍ରକୁ ସେ ଯେମିତି ଚିହ୍ନିପାରୁ ନଥିଲେ । ଏଇ ମାତ୍ର ସେଦିନ ପର୍ଯ୍ୟନ୍ତ ସେ ତାଙ୍କର କାନି ନ ଧରିଲେ ବାହାରେ ପାଦ ଦେଉନଥିଲା । ମା– ଫ୍ରିଜ୍‌ର ଏଇ କୋଲଡ୍ ଡ୍ରିଙ୍କସ୍‌ଟା ପିଇବି – ମମ– ମୋର ଆଉ ପଟେ ସକ୍‌ସ କୁଆଡ଼େ ଗଲା – ମା– ଲୁଇସା ଫ୍ରାଙ୍କର କ୍ୟାସେଟ୍‌ଟା ମିଳୁନାହିଁ – ଟିକିଏ ଖୋଜି ଦେଇ ଯାଅ ପ୍ଲିଜ୍– ମା... ମା... ମା... ସୁମତିଙ୍କର କର୍ମହୀନ ଦିନ ଗୁଡ଼ିକ ସୁମନ୍ତର ଏଇ ଅବୋଧ ଚିତ୍କାରରେ ଭରି ରହିଥିଲା... ତା'ରି ଭିତରେ ସେ କୋଉଦିନ ଏତେ ବଡ଼ ହୋଇଗଲା ?

ଆଉ ଆଜି ? କି କଥା କେମିତି ସେ ନିଜର ଜନ୍ମଦାତ୍ରୀ ଆଗରେ କହିଯାଉଛି ? ସେ ନିଜେ କ'ଣ ପାରିଥାଆନ୍ତେ ? କେହି କଣ ପାରେ ?

ସମୟ, ହାୟ ନିଷ୍ଠୁର ସମୟ ସମ୍ପର୍କକୁ କେମିତି ଦଳିମକଚି ଟିକିଟିକି କରିଦେଉଛି ! ସୁମତି କ'ଣ ପଥର ହୋଇଯିବେ ?

ସୁମନ୍ତ ଉତ୍ତର ଅପେକ୍ଷା କରୁଛି ? ଅନୁତାପର କୌଣସି ଚିହ୍ନ ନାହିଁ । ସୁମତି ଯେତେ ଶୀଘ୍ର ପାରନ୍ତି ଏ ଅସ୍ୱସ୍ତିକର ପରିବେଶରୁ ପଳାଇବାକୁ ଚାହୁଁଥିଲେ । ଏକାନ୍ତରେ ବସି ଯାହା ସବୁ ଶୁଣିଲେ, ତାକୁ ବିଶ୍ଳେଷଣ କରିବାକୁ ଚାହୁଁଥିଲେ । ଏଭଳି ସ୍ଥିତିରେ ତାଙ୍କର କ'ଣ କରିବା ଉଚିତ – ସେ ବିଷୟରେ ନିଜ ସହିତ ପରାମର୍ଶ କରିବାକୁ ଚାହୁଁଥିଲେ ।

ସେଇ କଥା ସେ ସୁମନ୍ତକୁ କହିଲେ । ଘଟଣାର ବିଭିନ୍ନ ଦିଗ ଦେଖି ବିଚାରି କିଛି ଗୋଟାଏ ନିଷ୍ପତ୍ତି ନେବା ପାଇଁ ତାଙ୍କର ସମୟ ଦରକାର ।

ସୁମନ୍ତ ସୁମତିଙ୍କୁ ଅନାଇ କ'ଣ ଯେମିତି ଭାବିଲା । ହୁଏତ ସେ ତାଙ୍କ କଥାର ଯୁକ୍ତିଯୁକ୍ତତାକୁ ବୁଝିବା ପାଇଁ ଚେଷ୍ଟା କଲା । ତା' ପରେ ବେପରୁଆ ହ୍ୱିସିଲ୍ ମାରି ବାହାରକୁ ଚାଲିଗଲା...

ସୁମତି ପ୍ରଥମରୁ ସ୍ଥିର କରିଥିଲେ ସଦାନନ୍ଦଙ୍କ ସହିତ ଏ ବିଷୟରେ କୌଣସି ପରାମର୍ଶ ସେ କରିବେ ନାହିଁ । ପୁଅ ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ । ନିଜ ଚାରିପଟେ ଆଦର୍ଶର ଏକ ବଳୟ ରଚି ତାହାରି ଭିତରେ ସେ ଆତଯାତ ହେଉଛନ୍ତି । ତାଙ୍କର ସ୍ୱପ୍ନ ଭାଙ୍ଗିବାକୁ ସୁମତିଙ୍କର ମନ ହେଲା ନାହିଁ ।

ସହରରେ ଡାକ୍ତରଙ୍କର ଅଭାବ ନାହିଁ । ସୁମତି ଜାଣନ୍ତି, ଏ ସବୁ ବ୍ୟାପାର ଆଜିକାଲି ଡାଲିଭାତ ଭଳି ସରଳ । ପ୍ରଶ୍ନ କିଛି ପଇସାର । ତାଙ୍କ ପାଇଁ ସେ ସମସ୍ୟା ବି ନାହିଁ । ପ୍ରଶ୍ନ ହେଉଛି କେଉଁଠି ? ଜଣାଶୁଣାଙ୍କ ପାଖରେ ତ କେବେ ନୁହେଁ । କଥା କ'ଣ କେବେ ଲୁଚିବ ? ସଦାନନ୍ଦଙ୍କ ପରିଚୟର ପରିଧିଟିତ ନିତାନ୍ତ ଛୋଟ ନୁହେଁ । କେଉଁ ବାଟେ କଥା ପଲ୍ଲବିତ ହୋଇ ଯଦି ସଦାନନ୍ଦଙ୍କ କାନରେ ପଡ଼ିବ, ତେବେ ?

ପୁଣି – ଭଗବାନ୍ ନ କରନ୍ତୁ, କୌଣସି କାରଣରୁ ଘଟଣାଟି ଯଦି ଜଟିଳ ହୋଇଗଲା ତେବେ ଥାନା, ପୁଲିସ୍, ଜରିମାନା, ଜେଲ୍ । ସୁମତି ଶୁଣିଛନ୍ତି ପ୍ରତି ନର୍ସିଂ ହୋମ୍ କୁଆଡ଼େ ସବୁଦିନ ଗୋଟିଏ ଲେଖା ରିପୋର୍ଟ ଥାନାକୁ ପଠାନ୍ତି.... ଯଦି କୌଣସି ମତେ.... ସୁମତିଙ୍କର ରକ୍ତ ହିମ ହୋଇଗଲା ।

ଆଗରେ ସୁମନ୍ତର ଗୋଟା ଜୀବନ.... ତା'ର କ୍ୟାରିଅର୍.... ଏଇଥିପାଇଁ ଯଦି ସେଥିରେ ଦାଗ ଲାଗିଗଲା, ତେବେ ତ ମାନ, ସମ୍ମାନ ସହିତ ତା'ର ଜୀବନ ବି....

ସୁମତି ସ୍ଥିର କଲେ, କୌଣସି ମତେ ଏଇ ସହରରେ ସେ ଏ କାମଟି କରାଇ ପାରିବେ ନାହିଁ । ପାଖ ସହରରୁ କାମ ସାରି ବି ସନ୍ଧ୍ୟା ସମୟକୁ ଫେରି ଆସିହେବ । ସେଇଆ ସେ ସୁମନ୍ତକୁ କହିବେ । ତା' ପାଖରେ ଠିଆ ହେବେ । ମୁହଁ ଫେରାଇ ନେବେ ନାହିଁ ।

ମାତ୍ର ଚଣ୍ଡାଳ ସେଇ ସୁଯୋଗ ଟିକକ ମଧ୍ୟ ତାଙ୍କୁ ଦେଲା ନାହିଁ ।

ସକାଳୁ ଉଠି ସୁମତି ଦେଖିଲେ ସୁମନ୍ତ ନାହିଁ । କଲେଜ୍‌କୁ ଏତେ ସକାଳୁ ଯିବା କଥା ନୁହେଁ । ଭାଗ୍ୟ – ସଦାନନ୍ଦ ସେତେବେଳେ ଟୁର୍‌ରେ... ସୁମତି ଘର ବାହାର ହେଉଥିଲେ । କ'ଣ କରିବେ, କାହାକୁ ପଚାରିବେ କିଛି ଠିକ୍ କରିପାରୁନଥିଲେ...

ଫୋନ୍ ଆସିଲା ଦଶଟା ପାଖାପାଖି.... ହାଲୋ ମମ୍, କ'ଣ କରୁଚ ?

କଣ କରୁଚି ମାନେ ? ତୁ କୋଉଠୁ କହୁଚୁ ?

ରିଲାଙ୍କ ମମ୍ Everything O. K. ତମେ ସାଙ୍ଗେ ସାଙ୍ଗେ ଚାଲିଆସ... ଫୋନ୍ କଟି ଯାଇଥିଲା । ସୁମତି ପ୍ରଥମେ ଭାବିଲେ, ଯିବେ ନାହିଁ । ସେମାନେ ଯେତେବେଳେ ନିଜ ବ୍ୟବସ୍ଥା ନିଜେ କରି ନେଇଛନ୍ତି, ସେ ଯାଇ ଆଉ ଅଧିକ କ'ଣ କରିବେ ? ପୁଣି ତାଙ୍କର ମନେହେଲା ହୁଏତ ପଇସାପତ୍ର ପ୍ରୋବ୍ଲେମ୍... ନ ହେଲେ ସୁମନ୍ତ ଫୋନ୍ କରିଥାଆନ୍ତା କାହିଁକି ?

ସୁମତି ଆଉ ସ୍ଥିର ହୋଇ ବସି ପାରିଲେ ନାହିଁ । ଘରେ ଯାହା ଥିଲା ତାକୁ ଗୋଟାଇ ବାହାରକୁ ଛୁଟିଲେ.... ଠିକଣାଟି ବେଶ୍ ଦୂର....

ତା' ପରେ ଘଟଣା ସବୁ ଘଟିଯାଇଥିଲା ଦ୍ରୁତ ଲୟରେ ।

ସୁମନ୍ତର କଥାନୁସାରେ Everything କିନ୍ତୁ O. K. ନ ଥିଲା । ଆକାଶରେ ଉଡ଼ିବାର ସ୍ୱପ୍ନ ଯେଉଁ ବୟସର ନିଶା, ସେଥିରେ ମାଟିର କଥା ଭାବିବାର ଅବସର କାହୁଁ ଆସନ୍ତା ? ସେମାନେ ବ୍ୟାପାରଟିକୁ ନେଇଥିଲେ ଅତି ଲଘୁ ଭାବରେ । ହୁଏତ ସେମାନଙ୍କୁ ସେଇ ଧାରଣା ଦିଆଯାଇଥିଲା । ଅନାଡ଼ି ହାତର ଅପରେସନ୍ । ବ୍ଲଡ୍ ପ୍ରେସର୍ ହଠାତ୍ ଫଲ୍ କରିଗଲା । ବ୍ଲିଡ଼ିଂ ମଧ ଚେକ୍ କରିହେଲା ନାହିଁ । ସୁମତି ପହଞ୍ଚିଲା ବେଳକୁ ଏଇ ଅବସ୍ଥା ।

ସୁମତି ଦିଗହରା ହୋଇଗଲେ । ସାଲାଇନ୍, ବ୍ଲଡ୍, ଇଞ୍ଜେକ୍ସନ୍ ଏ ସବୁ ବ୍ୟବସ୍ଥା ଦେଖୁ ଦେଖୁ ପୁଲିସ୍ ପହଞ୍ଚିଗଲା । ମଇଳା ଯୋଉଠି, ମାଛି ସେଇଠି ।

ପୁଅର କ୍ୟାରିଅର୍, ନିରୀହ ଝିଅଟାର ଭବିଷ୍ୟତ–ସୁମତି କୋଉଆଡୁ ସମ୍ଭାଳିବେ ? ବଢ଼ିପାଣି ଯେତେବେଳେ ବାସୁକୀ ଭଳି ସୁ ସୁ ଗର୍ଜନରେ ଦଶ ଦିଗ କମ୍ପାଇ ମାଡ଼ି ଆସୁଛି, ସେତେବେଳ କେମିତି ଅବା ସେ ତାକୁ ପ୍ରତିରୋଧ କରିବେ ?

ବିଛଣାରେ ନିଷ୍ପନ୍ଦ ହୋଇ ପଡ଼ିଚି ବାସି ଫୁଲ ଭଳି ଝିଅଟା, ଆଖି ଦୁଇଟି ବୁଜି ହୋଇଯାଇଚି.... ଶେତା ଓଠ ଦିଓଟି ବେଳେବେଳେ ଥରି ଉଠୁଚି । ମୁହଁସାରା ବିଞ୍ଚିହୋଇ ପଡ଼ିଚି, ଚୁନାଚୁନା କେଶ – ଦେଖାଯାଉଚି ସତେ ଯେମିତି ବାଦଲ ଉହାଡ଼ରୁ ଜହ୍ନ...

କିଏ ତା'ର ବାପ ମା ସୁମତି କିଛି ଜାଣିନାହାନ୍ତି । ଘରେ କ'ଣ କହି ବାହାରି ଆସିଥିବ.... ସେମାନେ ନିଶ୍ଚୟ ଖୋଜ ଖବର ନେଉଥିବେ ... କ'ଣ ଯେ ଏମାନେ କରନ୍ତି !

ପ୍ରତ୍ୟେକ କ୍ରିୟାର ଯେ ଏକ ପ୍ରତିକ୍ରିୟା ଥାଏ, ଏମାନେ ଭୁଲିଯାଆନ୍ତି କେମିତି ? ମୁସ୍କିଲ ହେଲା – ଦୁଇଜଣଯାକ ନାବାଳକ । ଆଇନ୍ କାନୁନ୍ ଏମାନଙ୍କ ପାଇଁ କେତେ

କୋହଳ ସୁମତି ସେ କଥା ଜାଣି ନାହାନ୍ତି । ଆଗ ଝିଅଟାର ଜୀବନ ବଞ୍ଚୁ... ତା' ପରେ ଅନ୍ୟ କଥା...

ସୁମତି ଝଡ଼ର ମୁହଁରେ ଅଟଳ ପାହାଡ଼ ପରି ଛାତି ଫୁଲାଇ ଠିଆ ହେଲେ । ଖବର ମିଳିଲା, ଅବସ୍ଥାର ଉନ୍ନତି ହେଉଛି । ଝିଅଟା ଆଖି ମେଲାଇ ଚାହିଁଲାଣି କ୍ଷୀଣ ସ୍ୱରରେ କଥାବାର୍ତ୍ତା ପଦେ ଅଧେ କରୁଛି ।

ସୁମତିଙ୍କ ଛାତିଫଟାଇ ଦୀର୍ଘଶ୍ୱାସ ବାହାରି ଆସିଲା । ସେ ମନେ ମନେ ଭଗବାନ୍‌ଙ୍କୁ ପ୍ରଣାମ ଜଣାଇଲେ । ତାଙ୍କର ମନେପଡ଼ିଲା, ସକାଳୁ ସେ କେବଳ କପେ ଚା ଖାଇଥିଲେ । ତା' ପରେ ପାଣି ଟିକେ ବି ତାଙ୍କ ପାଟିକୁ ଯାଇ ନାହିଁ । ସେ କଥା ପଛକୁ ରଖି ସେ ଝିଅଟିର ମୁଣ୍ଡ ପାଖରେ ଠିଆ ହେଲେ । ଆଖିରେ ପଡ଼ିଲା, ଗୋଟିଏ କୋଣକୁ ମୁଣ୍ଡପୋତି ଅପରାଧୀ ଭଳି ଠିଆ ହୋଇଛି ସୁମନ୍ତ । ଦେଖାଯାଉଚି ମୂର୍ତ୍ତିମାନ ଅଭିଶାପଟିଏ ଭଳି । ସୁମତି ସେ ଆଡୁ ଆଖି ଫେରାଇ ଆଣିଲେ । ଝିଅଟିର ପାଟି ପାଖକୁ ମୁହଁନେଇ ପଚାରିଲେ – ଘର କେଉଁଠି ?

ସଦାନନ୍ଦ ଏ ସବୁ କଥା ଜାଣିବାର ନୁହେଁ । ଜାଣି ବି ନ ଥା'ନ୍ତେ । ମଝିରେ ପୁଲିସ୍ ପଶିଯିବାରୁ ତାଙ୍କର ନ ଜାଣି ବାଟ ନ ଥିଲା । ସେ ଅବା କାହାକୁ ଦୋଷ ଦିଅନ୍ତେ ? ଗୋଟିଏ ପଟେ ପୁଅ... ଯାହା ଉପରେ ତାଙ୍କର ଭବିଷ୍ୟତ ଠିଆ ହୋଇଚି । ଏଇ ପୁଅ ପାଇଁ ସେ କେତେ ପ୍ରଶଂସା ଶୁଣିଛନ୍ତି । ଛାତିରେ ଛାତିଏ ଈର୍ଷା ଆଉ ପାଟିରେ ପାଟିଏ ମହୁ ନେଇ ଲୋକେ ଯେତେବେଳେ ସମୁ–ପୁରାଣ ଗାଇ ଯାଆନ୍ତି, ସେତେବେଳେ ଛାତି ତାଙ୍କର କୁଣ୍ଢେମୋଟ ହୋଇଯାଏ । ଏଇ ରାଜ୍ୟପାଳଙ୍କଠାରୁ ସାର୍ଟିଫିକେଟ୍ ନେଉଛି ସମୁ – ଖବର କାଗଜରେ ଛବି – ଏଇ ରାଷ୍ଟ୍ରପତିଙ୍କ ପଦକ ଗ୍ରହଣ କରୁଛି– ଟିଭିରେ ସମ୍ୱାଦ । ମହାମୂଲ୍ୟ ହୀରାଟିଏ ଆଜ୍ଞା ରତ୍ନଗର୍ଭା ଆପଣଙ୍କର ସ୍ତ୍ରୀ । ସଦାନନ୍ଦ ନତ ମସ୍ତକରେ ପୁଅ ତରଫରୁ ଏସବୁ ପ୍ରଶଂସା ଗ୍ରହଣ କରନ୍ତି....

ଅନ୍ୟ ପଟେ ତାଙ୍କର ସ୍ତ୍ରୀ....କୋଡ଼ିଏ ବର୍ଷ ହେଲା ଛାଇ ପରି ତାଙ୍କ ସାଙ୍ଗରେ ଅଛନ୍ତି, ହେଲେ କେବେ ହେଲେ ଆଗକୁ ବଢ଼ି ବାଟ ଓଗାଳି ନାହାନ୍ତି । ଧରିତ୍ରୀ ଭଳି ସର୍ବଂସହା – ଆକାଶ ଭଳି ଉଦାର, ତାଙ୍କ ଉପରେ ପୂର୍ଣ୍ଣ ନିର୍ଭରଶୀଳା... ଆଜି ତାଙ୍କରି ନିନ୍ଦାରେ ସମାଜ ଶତମୁଖ... ଛିଃ ଛିଃ... ମା ଆ ନା କାହାଣୀ ! ଏମିତି ପିଲା ଜନ୍ମ କଲା ଆଗରୁ ଆପେ ବିଷ କି ଜହର ଖାଇ ଦେଲା ନାହିଁ ! ନ ହେଲେ ପିଲା ମୁହଁରେ ଲୁଣ

ଟିକିଏ ଦେଇ ତା' ତଣ୍ଟିରେ ଗୋଡ଼ ଦେଇ ଦେଲାନାହିଁ ! କୁଟୁଣୀ ସାଜି ରାଧା କୃଷ୍ଣ ଲୀଳା ଲଗେଇଚି । ସଦାନନ୍ଦ ଜାଣନ୍ତି, ଏଥିରେ ସୁମତିଙ୍କର କିଛି ଦୋଷ ନାହିଁ । ପିଲା ବଡ଼ ହେଲା ପରେ କୋଚିଂ ନାଁରେ, କ୍ଲାସ ନାଁରେ କୁଆଡ଼େ ଯାଉଛି, କ'ଣ କରୁଛି କାହା ସାଙ୍ଗରେ ମିଶୁଛି ଏ ସବୁ ଟିକିନିଖି ଜାଣିବା ସମ୍ଭବ ନୁହେଁ..... ପଚାରିବାକୁ ବି ବର୍ତ୍ତମାନ ପୀଢ଼ି ଭଲ ନଜରରେ ଦେଖୁନାହାନ୍ତି । ସଫା ଜବାବ୍ – ଜୀବନ ତାଙ୍କର – ସେମାନେ ତାକୁ ନେଇ କ'ଣ କରିବେ, ସେ ବିଷୟରେ କାହାରିକୁ ଜବାବ ଦେହି କରିବାକୁ ବାଧ୍ୟ ନୁହନ୍ତି... ସୁମତି ବରଂ ଜଣେ ସଚେତନ ମାଆ.... ଯେତେଦିନ ପାରିଛନ୍ତି ପୁଅକୁ ଠିକ୍ ବାଟରେ ଚଲାଇଛନ୍ତି । ଅବାଟକୁ ଯେତେବେଳେ ପ୍ରଥମ ପାଦଟି ବଢ଼ିଛି, ସେ କଥା ମଧ୍ୟ ଜାଣି ତାଙ୍କୁ ଜଣାଇଛନ୍ତି ଆଉ ସେ ତାକୁ ଯଥାରୀତି ହସରେ ଉଡ଼ାଇ ଦେଇଛନ୍ତି । ଏତେ ମେଧା ଯାହାର ସେ ପିଲା କେବେ କିଛି ଭୁଲ୍ କରିପାରିବ ନାହିଁ – ଏହାହିଁ ଥିଲା ତାଙ୍କର ବିଶ୍ୱାସ ।

ପ୍ରକୃତରେ ଦେଖିବାକୁ ଗଲେ ସମୁର ଅପରାଧ କ'ଣ ଏଡ଼େ ଗୁରୁତର ! କ୍ଷଣିକ ଉତ୍ତେଜନା, ଆଡ୍‌ଭେଞ୍ଚରର ନିଶା, ବୟଃସନ୍ଧିର ବିଧିନିଷେଧ ଭିତରୁ ନିଜକୁ ହଠାତ୍ ବୟସ୍କ ଶ୍ରେଣୀକୁ ଉଠାଇ ନେବାର ରୋମାଞ୍ଚ, ଆଜିର ପରମିସିଭ୍ ସମାଜ । ସୁଲଭ ପ୍ରୋଟିନ୍ ଖାଦ୍ୟର ଉଷ୍ଣତା, ସର୍ବୋପରି ଟିଭି, ସିନେମାର ହାଡ଼ ଭିତରେ ଶିହରଣ ସୃଷ୍ଟି କରି ପାରୁଥିବା ଦୃଶ୍ୟ.... ଏ ପ୍ରକୃତ ଅପରାଧୀ ତ ଏଇ – ଏଇମାନେ । ଏମାନଙ୍କ ବିରୁଦ୍ଧରେ କେହି ଆଙ୍ଗୁଳିଟିଏ ଉଠାଇ ପାରିବେ କି ? ଯେତେ ଦୋଷ ବିଚରା ମଣିଷର !

ସୁମତି ଘଟଣାଟି ଜାଣିଲା ବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହି ସାରିଥିଲା । ସେ ଆଉ କ'ଣ କରିଥାଆନ୍ତେ ? ବରଂ ଯେଉଁ ଭଳି ଭାବରେ ସେ ଘଟଣାକୁ ତୁଲାଇଲେ ସଦାନନ୍ଦ ଜାଣନ୍ତି, ଆଉ କେହି ତାହା ସେ ଭଳି ପରିସ୍ଥିତିରେ ପାରି ନଥାନ୍ତେ ।

ଟୁର୍‌ରୁ ଫେରିବା ପରେ ସଦାନନ୍ଦ ସୁମତିକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ତାଙ୍କର ହୃଦୟ ନାନା ଆଶଙ୍କାରେ ଥରି ଉଠିଥିଲା । ମାତ୍ର ଦଶଦିନର ଅନୁପସ୍ଥିତି ତା'ରି ଭିତରେ ଏଭଳି କି ଅଘଟଣ ଘଟିଯାଇ ଥାଇପାରେ ? ଝଡ଼ ଯେ ସୁମତିଙ୍କୁ ବିପର୍ଯ୍ୟସ୍ତ କରି ଦେଇପାରିଛି, ଏ କଥା ତ ତାଙ୍କୁ ଦେଖିଲେ ଜଣା ପଡୁଥିଲା । ବଡ଼ କଷ୍ଟ ଆଉ ଶ୍ରମ ଦେଇ ଗଢ଼ା ତାଙ୍କର ଏଇ ସ୍ୱପ୍ନ ଆଉ ଶାନ୍ତିର ନୀଡ଼ – ଯାହାର ମୂଳରେ ସୁମତି । ତାଙ୍କର କିଛି ହୋଇଛିମାନେ ପରିବାରର ପ୍ରାଣ ସତ୍ତାଟି ମଧ୍ୟ ଗ୍ରହଣ – ଗ୍ରସ୍ତ ହୋଇଛି ।

ସଦାନନ୍ଦ ସେଦିନ ବଡ଼ ବିବ୍ରତ ହୋଇ ପଡ଼ିଥିଲେ । ନିଜର ଅସହାୟତା ଉପରେ ତାଙ୍କର କ୍ରୋଧ ଆସୁଥିଲା । ସୁମତିଙ୍କ ଉପରେ ଘରର ଦାୟିତ୍ୱ ଦେଇ ସେ ବଡ଼ ନିଶ୍ଚିନ୍ତ ଥିଲେ । ସେ କ'ଣ ଭୁଲ୍ କରିଥିଲେ ? ସୁମତିଙ୍କ ଉପରେ ତାଙ୍କର ଅଭିମାନ ହେଲା । ପରିସ୍ଥିତି ଯାହା ହେଉନା କାହିଁକି, ତାଙ୍କୁ କଣ ଜଣାଇବାର ଆବଶ୍ୟକ ନ ଥିଲା ?

ମୁଣ୍ଡ ଉପରେ ପାହାଡ଼ ଅଜାଡ଼ି ହୋଇପଡ଼ିଲା । ନାବାଳକମାନଙ୍କର ଅପରାଧରେ ଅଭିଭାବକର ଉପସ୍ଥିତି ସୁମତିଙ୍କୁ ସନ୍ଦେହର ଘେର ଭିତରକୁ ନେଇ ଆସିଲା । କଥାରେ କହନ୍ତି ପରା– ବାଘ ଛୁଇଁଲେ ଅଠର ଘା' – ଆଉ...

ସଦାନନ୍ଦ ସବୁ ଶୁଣିଲେ । ରସାଳ ଏଇ ଖବରକୁ ନେଇ ମିଡ଼ିଆ ଗୁଡ଼ିକର ନଚାନଚିକୁ ମଧ ଦେଖିଲେ । ତାଙ୍କର ଟେକା ମଥା ତଳକୁ ନଇଁଲା । ପରିବାର ଯେତେବେଳେ କରିଛନ୍ତି, ପ୍ରତିକାର ମଧ ତାଙ୍କୁ ହିଁ ଖୋଜିବାକୁ ପଡ଼ିବ । ଓକିଲ ମୁକ୍ତାର ଧରି ଅପରାଧୀମାନଙ୍କୁ ବେଲ୍‌ରେ ଆଣିବାକୁ ପଡ଼ିବ । ସବୁଠାରୁ ବଡ଼ କାମ, ଝିଅଟାକୁ ତା' ଘରେ ଛାଡ଼ିବାକୁ ପଡ଼ିବ । ଏତେ ସବୁ କଥା ଘଟିଯିବା ପରେ ବି ଯଦି ତା'ର ଅଭିଭାବକମାନେ ଚାହାନ୍ତି, ତେବେ ତାକୁ ନିଜ ଘରକୁ ବୋହୂ କରି ଆଣିବାକୁ ପଡ଼ିବ ଆଉ ଏ ପ୍ରସ୍ତାବ ତାଙ୍କୁ ହିଁ ନେଇ ଯିବାକୁ ପଡ଼ିବ । ଚାରା କ'ଣ ?

ହାଜତ୍‌ରୁ ଫେରିବା ପରେ ସୁମତି ସମ୍ପୂର୍ଣ୍ଣ ନୀରବ ହୋଇଯାଇଛନ୍ତି, ଖୁବ୍ ଜୋରରେ 'ହଁ' କିମ୍ୱା 'ନା' ଏତିକି ହେଉଛି ତାଙ୍କର ଜୀବନର ଲକ୍ଷଣ । ସବୁବେଳେ ବିଛଣାରେ ପଡ଼ି ଆଖିବୁଜି କ'ଣ ଭାବୁଥା'ନ୍ତି ।

ସମୁ ମଧ ତା' ରୁମ୍‌ରେ ବନ୍ଦ । ଝଡ଼ର ପ୍ରଥମ ଧକ୍କାଟା କଟିଗଲା ପରେ ସଦାନନ୍ଦ ପୁଅର ମୁହାଁମୁହିଁ ହେଲେ । ଥରେ ମାତ୍ର ତାଙ୍କ ଆଡ଼କୁ ଅନାଇ ମୁହଁ ତଳକୁ କରି ସମୁ ଠିଆ ହେଲା । ପଦେ ବି କିଛି କହିଲା ନାହିଁ, ଗୋଟିଏ ବିଷୟରେ କିନ୍ତୁ ତାକୁ ପ୍ରଶଂସା କରିବାକୁ ହେବ– ସଦାନନ୍ଦ ଭାବିଲେ । ପିଲାଟା ଭୀରୁ ନୁହେଁ । ଦାୟିତ୍ୱ ଅସ୍ୱୀକାର କରି ପିଠି ଦେଖାଇ ଦେଇ ପାରିଥାଆନ୍ତା । ମାତ୍ର ତାହା ସେ କରି ନାହିଁ ।

ଉପର ଆଡ଼କୁ ଅନାଇ ସଦାନନ୍ଦ ଜଣାଇଲେ ''ଯଦିଓ ଏ ବିବାହର ସମୟ ନୁହେଁ, ତଥାପି ବାହାଘରର ବ୍ୟବସ୍ଥା କରୁଛି ।''

ସମୁ ସତେ ଯେମିତି ଆକାଶରୁ ପଡ଼ିଲା । 'ବିବାହ ମାନେ Marriage ? କା'ର ?

ଅସହିଷ୍ଣୁ ସଦାନନ୍ଦ ଉତ୍ତର ଦେଲେ – ତୋ' ସହିତ ମିତାର....

ସମ୍ଭୁ ଦୃଢ଼ କଣ୍ଠରେ ଉତ୍ତର ଦେଲା – We are just friends. Neither She nor me like each other ଯାହା ହୋଇଛି, ଦୁଇଜଣଙ୍କର ରାଜିରେ ହୋଇଛି । ବିବାହର ପ୍ରଶ୍ନ ଉଠୁଛି କୋଉଠୁ ?''

ସଦାନନ୍ଦ ଏଥର ଆଉ ନିଜକୁ ରୋକି ପାରିଲେ ନାହିଁ । ଜୀବନକୁ କ'ଣ ମନେ କରନ୍ତି ଏମାନେ ? A piece of fun. କହିଲେ – ବିବାହ ତୋର ଦରକାର ହୋଇ ନ ପାରେ । ତେବେ ଝିଅଟାର ଭବିଷ୍ୟତ୍ ପାଇଁ ଜରୁରୀ, ମୁଁ ମିତାର ବାପାଙ୍କ ସହ ଯୋଗାଯୋଗ କରୁଛି...

ସୁମନ୍ତ ଉତ୍ତର ଦେଲା ନାହିଁ । ସେମିତି ମୁହଁ ପୋତି ଠିଆ ହୋଇ ରହିଲା, ସଦାନନ୍ଦ ଚାଲି ଆସିଲେ ।

ଏଇଠି ବୋଧହୁଏ ସଦାନନ୍ଦ ଗୋଟିଏ ଭୁଲ୍ କରି ବସିଲେ । ସେଇ ଅବସ୍ଥାରେ ବିବାହ କଥା ନ କହିଥିଲେ ଭଲ ହୋଇଥାଆନ୍ତା । ପୁଅ ପ୍ରତି ଏତେ ନିଷ୍ଠୁରତା ଦେଖାଇ ନ ଥିଲେ ବି ହୋଇଥାଆନ୍ତା – ଛାଡ଼, ଯାହା ହେବାର ହୋଇଗଲା.... ସଦାନନ୍ଦଙ୍କ ଆଗରେ ଏବେ ଅନେକ କାମ....

ଘଟଣା ଘଟିଗଲା ସେଇଦିନ । ରାତ୍ରିର ଘନ ଅନ୍ଧକାର ଭିତରେ ସମ୍ଭୁ କୁଆଡ଼େ ଫେରାର ହୋଇଗଲା । ନିଜ ସହିତ ନେଇଗଲା ସୁମତିଙ୍କର ସମସ୍ତ ଗହଣା ଯାହାର ଆନୁମାନିକ ମୂଲ୍ୟ ପାଞ୍ଚ ଲକ୍ଷ ହୋଇପାରେ । ସୁମତି ସେଇଦିନ ଆତ୍ମହତ୍ୟା କଲେ ।

କାହାଣୀ ଶେଷ ହୋଇଗଲା । ଜୀବନ କିନ୍ତୁ ଶେଷ ହେଲା ନାହିଁ, କେବେ ବି ହୁଏ ନାହିଁ । ଜୀବନ-ଚକ୍ରର ଆରମ୍ଭ ଆଉ ଶେଷ ନ ଥାଏ ପରା.... ସଦାନନ୍ଦ ବୁଢ଼ା ହୋଇଗଲେ । ଚରମ କିଛି ଗୋଟାଏ ପଦକ୍ଷେପ ନେବାକୁ ଚିନ୍ତା କରି ମଧ ତହିଁରୁ ନିବୃତ୍ତ ରହି ଚାକିରୀ ଛାଡ଼ି ଗାଁ'କୁ ଚାଲିଗଲେ । ସେଇ ଗାଁ ଏବେ ତାଙ୍କର ବାର୍ଦ୍ଧକ୍ୟର ବାରାଣସୀ ।

ସଦାନନ୍ଦ ସୁମନ୍ତକୁ ଖୋଜିବାକୁ କେବେ ଚେଷ୍ଟା କରିନାହାନ୍ତି । ଶହେକୋଟି ଲୋକଙ୍କର ଏଇ ଦେଶରେ କୋଉଁଠି ବା ଖୋଜିବେ, କାହିଁକି ଖୋଜିବେ ? ଜୀବନ ପାଖରୁ ତାଙ୍କର କିଛି ଯେତେବେଳେ ଆଉ ପାଇବାର ନାହିଁ, ସେତେବେଳେ ଜଞ୍ଜାଳ ଭିତରେ ପଶି ଲାଭ କ'ଣ ?

ଜୀବନର ହୁଏତ ତାଙ୍କ ପାଖରୁ ଅନେକ କିଛି ପାଇବାର ଅଛି, ନଚେତ୍ ଦୀର୍ଘ ଦଶ ବର୍ଷ ପରେ ପୈତୃକ ସମ୍ପତ୍ତି ଉପରେ ନିଜ ମକ୍କେଲଙ୍କର ଦାବୀ ଜଣାଇ ଦିଲ୍ଲୀର କେଉଁ ଏକ ସଲିସିଟର ଫାର୍ମ ସୁମନ୍ତ ନାୟକଙ୍କ ତରଫରୁ ଓକିଲ ନୋଟିସ୍ ପଠାଇ ନ ଥାନ୍ତେ । ନାୟକଙ୍କ ତରଫରୁ ଅଦାଲତରେ ପ୍ରାର୍ଥନା କରାଯାଇଥିଲା, ଯେ ବୃଦ୍ଧ ପିତା ହଠାତ୍ ବିକୃତ ମସ୍ତିଷ୍କ ହୋଇ ପଡ଼ିଥିବାରୁ ପିତୃ ଅର୍ଜିତ ସମ୍ପତ୍ତି ନ' ଛ ହୋଇଯିବାର ଆଶଙ୍କା ରହିଛି । ଏ ସମ୍ପତ୍ତି ଯଦି କେହି କେବେ କିଣେ ବା କିଣିଥାଏ, ତେବେ ଏଥିପାଇଁ ସୁମନ୍ତ ନାୟକ ଦାୟୀ ହେବେ ନାହିଁ ।

ଜୀବନ ଏଥର ଷୋଳ କଳାରେ ପୂର୍ଣ୍ଣ । ନିଃସଙ୍ଗ ବୃଦ୍ଧ ପିତାଙ୍କୁ ପାଗଳ ସାବ୍ୟସ୍ତ ନ କଲେ ସେ ଆଉ ପୁଅ କ'ଣ ? ସଦାନନ୍ଦ ଅଣ୍ଟା ସଳଖି ଠିଆହେଲେ । ବୃଦ୍ଧ ବୟସରେ ପାଗଳ ଅପବାଦରୁ ତାଙ୍କୁ ମୁକ୍ତ ହେବାକୁ ପଡ଼ିବ । ସେ ଲମ୍ପଟର ବାପ ହୋଇଛନ୍ତି, ଭ୍ରୂଣ ହତ୍ୟାକାରୀ ସ୍ତ୍ରୀର ସ୍ୱାମୀ ହେବାର ଅପବାଦ ମଧ୍ୟ ସହିଛନ୍ତି । ମାତ୍ର ଶେଷ ବୟସରେ ପାଗଳ ହୋଇ ପାରିବେ ନାହିଁ ।

ସେଇ ମକଦ୍ଦମା ଚାଲିଛି । ସେଇଠୁ ସେ ଏବେ ଫେରୁଛନ୍ତି । ଦୀର୍ଘ ଶ୍ୱାସଟିଏ ପକାଇ ସେ ବାହାରକୁ ଅନାଇ ଜାଣିଲେ ହେଣ୍ଟୁଳା ପାର ହୋଇ ଗଲାଣି ଆଗରେ ପଡ଼ିବ ଧାନଘର – ତାଙ୍କ ଓହ୍ଲାଇବା ଜାଗା....

କାହିଁକି ଏମିତି ହେଲା ? ଏ କ'ଣ ତାଙ୍କ ରକ୍ତର ଦୋଷ କିମ୍ବା ସୁମତିଙ୍କର ବଢ଼ାଇବାର ଦୋଷ ? ଏତେ ଯତ୍ନ, ଏତେ ଚିନ୍ତା ଆଉ ଉଦ୍‌ବେଗର ଶେଷ ପରିଣାମ ତେବେ ଏଇଆ ? ସୁମତିଙ୍କ ସହିତ କେବେ ଦେଖାହେଲେ ସେ ତାଙ୍କୁ କହିବେ – ଛାଇ ତଳିଆ ଗଛ ଖାଲି ପତ୍ରକୁ ଭାଜନ ସିନା, ତହିଁରେ ଫୁଲ ଖୋଜିଲେ ମିଳିବ କୁଆଡୁ ?



## ମା ନିଷାଦ

ସେଦିନ ତମସା ଉପକଣ୍ଠର ବାୟୁମଣ୍ଡଳ ଆହତ କ୍ରୌଞ୍ଚପକ୍ଷୀର କରୁଣ ବିଳାପ ଧ୍ୱନିରେ ମୁଖରିତ ହୋଇ ଉଠିଥିଲା, କାରଣ ଏକ ଅବିଚାରୀ କ୍ରୁର ନିଷାଦର ବର୍ବର ଶରାଘାତ । ମାନବିକତାର ନିର୍ଦ୍ଧୂମ ଅଗ୍ନିଶିଖା ଭଳି ସେଠାକୁ ଆସିଥିଲେ ମହର୍ଷି ବାଲ୍ମୀକି ଯାହାଙ୍କର ସମ୍ବେଦନଶୀଳତା ଆଉ ଶୋକ ଉଭୟେ ଶ୍ଳୋକତ୍ୱ ପ୍ରାପ୍ତ ହୋଇ କବି ଏବଂ କବିତାକୁ ଚିରନ୍ତନ କରିଛି ।

ମାତ୍ର ଆଜି ଭରା ଚୈତ୍ରର ଏଇ ନିର୍ମମ ଅପରାହ୍ନରେ, ରାଜେଶ୍ୱରୀ ଦେବୀ ଯେତେବେଳେ ଅବିଚାରୀ - କାଳ- ନିଷାଦର ଅମୋଘ ଶରାଘାତରେ ଚୁପ୍‌ଚାପ୍ ନୀଡ଼ରୁ ତଳକୁ ଖସି ପଡ଼ିଲେ, ସେତେବେଳେ ସୁଦର୍ଶନଙ୍କ ପାଖରେ ଠିଆ ହୋଇ ପଦେ ଆଶ୍ୱାସନା - ବାଣୀ ଉଚ୍ଚାରଣ କରିବାକୁ ଆତ୍ମୀୟ ସ୍ୱଜନ ବୋଲି କେହି ନଥିଲେ ।

କିଏ ବା ଆଉ ଥାଆନ୍ତା ?

ବଡ଼ ପୁଅର ଅଚାନକ ମରଣ ପରେ ବରାଳ- ଦମ୍ପତିଙ୍କ ସାମାଜିକ ବନ୍ଧନ ସତେ ଯେମିତି ହୁଗୁଳା ହୋଇଯାଇଥିଲା । ଯେଉଁ ରାଜେଶ୍ୱରୀ ସୁଦର୍ଶନଙ୍କର ଛନ୍ନଛଡ଼ା ପରିବାରକୁ ମମତାର ବନ୍ଧନରେ ବାନ୍ଧିଥିଲେ ଏଇ ଶୋକାବହ ଘଟଣା ପରେ ସେ କେମିତି ନିର୍ବେଦ ହୋଇଯାଇଥିଲେ । ସୁଦର୍ଶନ ତ ମୂଳରୁ ଜଡ଼ ପଥର ଖଣ୍ଡେ । ଶକ୍ତ-ସମର୍ଥ ବଡ଼ପୁଅ ସୁକାନ୍ତର ଅନ୍ତ୍ୟେଷ୍ଟି ନିଜେ ଠିଆ ହୋଇ କରୁଥିବା ବେଳେ ଶୋକ ସନ୍ତପ୍ତା ତରୁଣୀ- ବଧୂ, ଅପୋଗଣ୍ଡ ସନ୍ତାନ ଦୁଇଟିଙ୍କର ମର୍ମଫଟା କାରୁଣ୍ୟରେ ପଥର ତରଳି ଯାଇଥିବା ବେଳେ ତାଙ୍କ ଆଖିରୁ ବୁନ୍ଦାଏ ବି ଲୁହ ଝରି ନ ଥିଲା ।

ଏ ମୃତ୍ୟୁ ତାଙ୍କ ଆଖିରେ ଥିଲା ଏକ ଘଟଣା ମାତ୍ର ଯାହା ପାଇଁ ବୃଥା ଶୋକ ପ୍ରକାଶ କରିବାରେ ଶାସ୍ତ୍ରୀୟ ନିଷେଧ ରହିଥିଲା ।

ଦାର୍ଶନିକତାର କଚ୍ଛପୀୟ ଆବରଣରେ ସୁଦର୍ଶନ ସିନା ନିଜକୁ ଢାଙ୍କି ଦେଲେ । ସାରା ଦୁନିଆ କିନ୍ତୁ ଛି ଛି କରିଉଠିଲା । ବାପ ନ ହୋଇ କଂସେଇ କୁଳରେ ଜନ୍ମଗ୍ରହଣ କରିବା ଯେ ତାଙ୍କ ପାଇଁ ଠିକ୍ ହୋଇଥାଆନ୍ତା ଏଥିରେ କାହାରି ସନ୍ଦେହ ନ ଥିଲା ।

ସୁକାନ୍ତ ସମ୍ପର୍କରେ ରାଜନୈତିକ ନେତାମାନଙ୍କର ସାହାଯ୍ୟ ନେବା ନିମନ୍ତେ ନିଜର ବୈବାହିକଙ୍କର ଆକୁଳ ଅନୁରୋଧକୁ ଯେତେବେଳେ ସୁଦର୍ଶନ ପ୍ରତ୍ୟାଖ୍ୟାନ କରି ଦେଲେ ସେତେବେଳେ ପରିସ୍ଥିତି ଆହୁରି ଜଟିଳ ହୋଇଉଠିଲା ।

ସୁକାନ୍ତର ମୃତ୍ୟୁ ସ୍ୱାଭାବିକ ନଥିଲା । ଗୋଟିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନର ଅନୁଦାନ ବ୍ୟୟ ସମ୍ପର୍କୀୟ ଜଟିଳତାକୁ ଦୂର କରିବା ନିମନ୍ତେ ପ୍ରେରିତ ହୋଇ ସୁକାନ୍ତ ଯେତେବେଳେ ହିସାବଫର୍ଦ୍ଦ ଯାଞ୍ଚ କରୁଥିଲା, ସେତେବେଳେ ତହିଁରେ ଥିବା ବିପୁଳ ପରିମାଣର ଆର୍ଥିକ ଅସଂଗତି ତା' ଆଖିରେ ସ୍ପଷ୍ଟ ଧରା ପଡ଼ିଯାଇଥିଲା ।

ଶୁଣାଯାଏ କର୍ତ୍ତୃପକ୍ଷ ପ୍ରଥମେ ମୋଟା ଅଙ୍କର ପ୍ରଣାମି ବିନିମୟରେ ସରକାରୀ ଅଡ଼ିଟରଙ୍କ କଲମକୁ କିଣି ନେବାକୁ ଚାହୁଁଥିଲେ । ପରିବାରର ଜ୍ୟେଷ୍ଠ ସନ୍ତାନ ରୂପରେ ସୁକାନ୍ତ ସୁଦର୍ଶନଙ୍କଠାରୁ ଯେତିକି ଶିକ୍ଷା ପାଇଥିଲା ତାହା ଜାଣିଥିଲେ ହୁଏତ ସେମାନେ ଏ ବାଟରେ ଯାଇନ ଥାନ୍ତେ ।

ସେମାନେ ବାସ୍ତବ ଦୁନିଆର ମଣିଷ । ଅର୍ଥ ଶକ୍ତିର ଅମାପ ପରାକ୍ରମ ସମ୍ପର୍କରେ ଅପୋଗଣ୍ଡ ସୁକାନ୍ତ ଅପେକ୍ଷା ସେମାନଙ୍କର ଧାରଣା ଅତ୍ୟନ୍ତ ସ୍ପଷ୍ଟ ଥିଲା । ସେଇଥିରେ ହିଁ ସେମାନେ ତରୁଣ ଅଫିସରକୁ ଆହତ କରିବାକୁ ଚାହିଁଲେ । ମାତ୍ର ତୀର ପବନରେ ଉଡ଼ିଗଲା । ଏଥିରେ ଉଭୟ ପକ୍ଷ କ୍ରୁଦ୍ଧ ହେଲେ । ସୁକାନ୍ତ ଆହତ ହେଲା ସ୍ୱେଚ୍ଛାସେବୀର ବାନାତଳେ ମଣିଷର କୁତ୍ସିତ ଆଗ୍ରାସୀ କ୍ଷୁଧାର ଭୟଙ୍କର ରୂପଦେଖି । ଅଭିଯୁକ୍ତ ପକ୍ଷ ଅପମାନିତ ହେଲେ କେଉଁ [illegible] ଗୋଟାଏ ଚାଳ – ଚୁଲୀହୀନ ଅଜାତ[illegible]ଶ୍ମଶ୍ରୁ ପାଗଳର ଔଦ୍ଧତ୍ୟ ଦେଖି ।

ଏଭଳି ଅମଣିଆ ଘୋଡ଼ାକୁ କେମିତି ଠିକ୍ ବାଟକୁ ଆଣିବାକୁ ହେବ, ଏକଥା ସେମାନଙ୍କୁ ବେଶ୍ ଜଣା ଥିଲା। ଅମାପ ଅର୍ଥ ଛଡ଼ା ଆଉ ଯେଉଁ ଗୋଟିଏ ଶକ୍ତି ସେମାନଙ୍କ ହାତରେ ଥିଲା, ଗଣତନ୍ତ୍ର ଶାସନରେ ତାହାର ନାମ 'କ୍ଷମତା' । ଖୋଦ୍ ଚେୟାର୍‌ମେନ୍

ସାହେବ ଜଣେ ଟାଣୁଆ ମନ୍ତ୍ରୀଙ୍କ ମଧୁର ସମ୍ପର୍କୀୟ ହୋଇ, ହାତରେ ଷ୍ଟିଲ୍ ବଳା ପିନ୍ଧି, ବେକରେ ସୁନା ଚେନ୍ ପକାଇ କାଦମ୍ବରୀ ନିଶାରେ ଆଖି ଦୁଇଟିକୁ ରଙ୍ଗାଇ ବୁଲେଟ୍ ମଟର ସାଇକେଲରେ ଅହର୍ନିଶି ଦିଗ୍ ବିଜୟ କରି ବୁଲୁଥିଲେ । ଦୁନିଆର ସମସ୍ତ ସମ୍ପଦ ମଧ୍ୟ ତାଙ୍କର ରିରଂସା ନିମନ୍ତେ ପର୍ଯ୍ୟାପ୍ତ ନ ଥିଲା । ସେ ଖାତିର କରନ୍ତେ ଏଇ ଗୋଟାଏ ନିରୀହ ମେଣ୍ଢା ଛୁଆକୁ !

ଶୀଘ୍ର ସୁକାନ୍ତକୁ ଚରମ ପ୍ରସ୍ତାବ ମଧ୍ୟ ଶୁଣାଇ ଦିଆଯାଇଥିଲା । ଶବ ଦେହରେ ଅଗ୍ନି ସଂଯୋଗ କରିବା ପୂର୍ବରୁ ମାଳ ଭାଇମାନେ ଯେମିତି ନିର୍ଲିପ୍ତ କଣ୍ଠରେ ଉଚ୍ଚାରଣ କରିଯାଆନ୍ତି, 'ହେ ଅମୁକ, ଚନ୍ଦ୍ର ସୂର୍ଯ୍ୟ ଦଶ ଦିଗପାଳଙ୍କୁ ସାକ୍ଷୀ ରଖି ଆମେ ତମ ଦେହରେ ଅଗ୍ନି ସଂଯୋଗ କରୁଚୁ । ଯଦି ବଂଚିଥାଅ ତେବେ ଉଠି ଆସ । ନ ହେଲେ ଆମର ଦୋଷ ନାହିଁ ।' ଶବ ଶୁଣେ ନାହିଁ, କିମ୍ୱା ଉଠି ମଧ୍ୟ ଆସେ ନାହିଁ ।

ସେମାନେ ବହୁ ମଣିଷ ସିନା ଦେଖିଥିଲେ । ମାତ୍ର ଗୋଟିଏ ହେଲେ 'ସୁକାନ୍ତ' ସହ ତାଙ୍କର ପରିଚୟ ନ ଥିଲା । ଧମକରେ କାମ ହୋଇଯିବାର ତାଙ୍କର ଦୃଢ଼ ବିଶ୍ୱାସ ଯେତେବେଳେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା, ସେତେବେଳେ ଚରମ ପଦକ୍ଷେପ ନେବା ଛଡ଼ା ସେମାନଙ୍କ ଆଗରେ ଆଉ ଉପାୟ ନ ଥିଲା । ଗୋଟିଏ ତରୁଣୀ ସ୍ତ୍ରୀ, କେଇଟା ଅପୋଗଣ୍ଡ ଶିଶୁ କିମ୍ୱା ଜରାଗ୍ରସ୍ତ ପିତା ମାତା– ଏମାନଙ୍କ ଅବସ୍ଥା ବିଷୟ ଚିନ୍ତା କରିବା ସେମାନଙ୍କ ଦାୟିତ୍ୱ ନୁହେଁ ।

ପରିଣାମରେ ସେଦିନ ମଧ୍ୟ ରାତ୍ରିର ନିର୍ଜନତା ଗୋଟାଏ ଅସହାୟ ଦୁର୍ବଳ ପ୍ରାଣୀର ଆର୍ତ୍ତ ଚିତ୍କାରରେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ଯାଇଥିଲା । ଗାଁ ଲୋକେ ଏ ସବୁଥିରେ ଏତେ ଅଭ୍ୟସ୍ତ ଥିଲେ ଯେ, କେହି କେହି [illegible] ଚିତ୍କାର ଶୁଣିଥିଲେ ମଧ୍ୟ ସେ ବିଷୟରେ ଅଧିକ ଆଗ୍ରହ ଦେଖାଇବା ବୁଦ୍ଧିମାନର କାମ ନୁହେଁ ବୋଲି ବେଶ୍ ଜାଣିଥିଲେ ।

ଏହିଭଳି ସୁକାନ୍ତ ପର୍ବ ଶେଷ ହୋଇଗଲା । ସୁଦର୍ଶନ ଗାଁରେ ଯଥାରୀତି ଗୀତା ପାରାୟଣ କରୁଥିବା ସମୟରେ ଏ ସମ୍ବାଦ ପାଇଲେ । ଘଟଣା ସ୍ଥଳକୁ ଯାଇ ଯାହା ଦେଖିବାର ଦେଖିଲେ ଏବଂ ବୁଝିବାର ବୁଝିଲେ । ଅନାସକ୍ତ ଭାବରେ ଯାହା କରାଯିବାର କଥା ତାହା ମଧ୍ୟ କଲେ ।

ଆଖିରୁ କିନ୍ତୁ ବିନ୍ଦୁଏ ଲୁହ ଝରିଲା ନାହିଁ ।

ଗୋଳମାଳ ସୃଷ୍ଟି କଲେ ଜୟ କୃଷ୍ଣ-ବିଧବା ବଧୂର ପିତା । ବିରୋଧୀ ଦଳର ନେତାଙ୍କୁ ଭେଟି ଶାସକ ଦଳର ଏ ଅପକୀର୍ତ୍ତିର କାହାଣୀ ତାଙ୍କୁ ଜଣାଇ ପ୍ରତିକାର ଲୋଡ଼ିବାକୁ ସେ ସୁଦର୍ଶନଙ୍କ ଉପରେ ଚାପ ପକାଇଲେ ।

ସୁଦର୍ଶନଙ୍କ ଆଡୁ ଅସୁବିଧା ମଧ କିଛି ନ ଥିଲା । ସେ ନିଜେ ସେଇ ଦୁନିଆର ଲୋକ । ଶାସକ, ବିରୋଧୀ ଉଭୟ ପକ୍ଷର ତୁଙ୍ଗ ନେତାମାନଙ୍କ ସହ ତାଙ୍କର ପରିଚୟ ଘରୋଇ ନାମ ଧରି ଡକାଡକିରେ । ଦେଶ ଯେତେବେଳେ ମୁକ୍ତିର ସ୍ୱପ୍ନ ଦେଖୁଥିଲା, ଆଜିର ନେତାମାନେ ଯେତେବେଳେ ଦରମଇଳା ଫଟା ଖଦଡ଼ ଅଧାହାତ ଫତେଇ ସାଙ୍ଗକୁ, ଆଣ୍ଠୁ ଲୁଚୁ ନ ଥିବା ଆଠହାତି ଧୋତି ପିନ୍ଧି ମୁଣ୍ଡରେ ଖଣ୍ଡେ ତେଲ ଚିକିଟା ଗାମୁଛା ଗୁଡ଼ାଇ ଖାଲି ପାଦରେ ଗାଁରୁ ଗାଁକୁ ବୁଲି ସଭା ସମିତି କରୁଥିଲେ ଆଉ ଇଂରେଜମାନଙ୍କ ବିରୁଦ୍ଧରେ ଜନମତ ସୃଷ୍ଟି କରୁଥିଲେ, ସେତିକିବେଳେ ସଦ୍ୟ ସ୍କୁଲପାଠ ଛାଡ଼ି ଆସିଥିବା ସତର ବର୍ଷର ତରୁଣ ସୁଦର୍ଶନ ସେମାନଙ୍କ ସହ ପାଦ ମିଳାଇଥିଲେ । କେତେବେଳେ ଜେଲ ଭିତରେ, କେତେବେଳେ ସ୍ୱରାଜ ଆଶ୍ରମରେ ଆଉ କେତେବେଳେ ଅବା ଅଣ୍ଡରଗ୍ରାଉଣ୍ଡରେ ଥିବା ବେଳେ ଏଇମାନେ ହିଁ ଥିଲେ ସୁଦର୍ଶନଙ୍କର ବନ୍ଧୁ, ସଖା ସହୋଦର ସବୁ ।

ଦେଶରେ ସେତେବେଳେ ପାର୍ଟି କହିଲେ ଗୋଟିଏ । ନେତୃତ୍ୱର ଅହଙ୍କାର ଆହୁରି ଭଲ କରି ଦାନା ବାନ୍ଧି ନାହିଁ । ସମସ୍ତେ ଦଳୀୟ କର୍ମୀ । ବାପ ଘର ହେଲା ସ୍ୱରାଜ ଆଶ୍ରମ । ଶଶୁର ଘର ହେଲା ଜେଲଖାନା–ବାପଘରେ କାମର ଖାପମାପ ନାହିଁ । ପେଟ ପୂରା ଖାଇବାକୁ କେଉଁ ଦିନ ଜୁଟେ, କେଉଁଦିନ ଅବା ନାହିଁ । ତେବେ ଶଶୁର ଘରେ ଜୋଇଁ କୁଣିଆଙ୍କର ଆହାର ବିହାର ଏ ଭଳିକି ପ୍ରହାରର କୌଣସି ତ୍ରୁଟି ହୁଏ ନାହିଁ ।

ସୁଦର୍ଶନ କୌଣସିଦିନ ନେତା ନ ଥିଲେ । କୌଣସି ସଭା ସମିତିରେ ବକ୍ତୃତା ଦେବା ତାଙ୍କର କାମ ନ ଥିଲା । ତେବେ ସେ ନ ହେଲେ ଦଳର କୌଣସି ସଭା ସମିତି ହୋଇପାରୁ ନ ଥିଲା । ଗୁଇନ୍ଦାମାନଙ୍କର ସଦା ସତର୍କ ଦୃଷ୍ଟି ଏଡ଼ାଇ ସଭାର ବ୍ୟବସ୍ଥା କରିବାକୁ ହେବ – ଦାୟିତ୍ୱ ନେବାକୁ ସୁଦର୍ଶନଙ୍କ ଛଡ଼ା ଆଉ କିଏ ଅଛି ? ପୁଲିସର ଠିକ୍ ନାକ ଆଗରେ କଲେକ୍ଟାରୀଏଟ୍ ଉପରେ ପତାକା ଉଡ଼ାଇବାକୁ ହେବ । ସମସ୍ତଙ୍କ ଆଗରୁ ସୁଦର୍ଶନ ଏଥିପାଇଁ ତିଆର ।

ସୁଦର୍ଶନ କିନ୍ତୁ ନେତା ନ ଥିଲେ, ଥିଲେ ଜଣେ କର୍ମୀ । କାମ କରି ଯିବାର ନିଶା ତାଙ୍କୁ ଘାରିଥିଲା । ଦେଶର କାମ, ପାର୍ଟିର କାମ । ତା' ପଛରେ କୌଣସି ବ୍ୟକ୍ତିଗତ ସ୍ୱାର୍ଥ ସାଧନର ଲାଳସା ନ ଥିଲା – ଦେଶ ମାତୃକାର ବନ୍ଧନ ମୁକ୍ତି ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ଏଥିପାଇଁ ସେ ଯେଉଁ କୃଚ୍ଛ୍ରସାଧନ କରୁଥିଲେ ତାହା ଥିଲା ତାଙ୍କ ପାଇଁ ଏକ ପ୍ରକାରର ତପସ୍ୟା ।

ବକ–ଧବଳ ସୂକ୍ଷ୍ମ ଖଦଡ଼ ପିନ୍ଧା ଆଜିର ନେତାମାନଙ୍କୁ ଦେଖିଲେ ସେ କାଳର କର୍ମୀମାନଙ୍କର ପୋଷାକ କଥା, କେହି କଳ୍ପନା ବି କରିପାରିବେ ନାହିଁ । ସୁଦର୍ଶନଙ୍କର ଯାହା ପୋଷାକ ସବୁ ତାଙ୍କର ଦିହେ ଦିହେ । ଗାମୁଛା ଖଣ୍ଡକ ପିନ୍ଧି ପାଣି ନୋଟାଏ ଢାଳି ହୋଇ ପଡ଼ିଲେ ସ୍ନାନ କାର୍ଯ୍ୟ ଶେଷ ହୋଇଯାଉଥିଲା । ବାହାରକୁ ବାହାରିଲା ବେଳେ ଉର୍ଦ୍ଧାଙ୍ଗ ଆବୃତ କରୁଥିଲା ଖଣ୍ଡିଏ ଅଣଓସାରିଆ ଖଦଡ଼ ଚାଦର । ଶୀତଦିନ ପାଇଁ ସେଇ ତାଙ୍କର ଘୋଡ଼ି ହେଲା ।

ବ୍ରେକ୍‌ଫାଷ୍ଟ, ଲଞ୍ଚ, ଡିନର ସବୁ ଏକାଥରେ ସରୁଥିଲା । ଦିନ ଶେଷରେ ପାର୍ଟି ଅଫିସରେ ହାଣ୍ଡିଏ ଖେଚୁଡ଼ି ପ୍ରସ୍ତୁତ ହେଉଥିଲା । ଖେଚୁଡ଼ି ଫୁଟୁଣୁ ନ ଫୁଟୁଣୁ କର୍ମୀମାନେ ଖଣ୍ଡେ ଖଣ୍ଡେ କଦଳୀପତ୍ର ପକାଇ ବସି ଯାଉଥିଲେ ଆଉ ମିନିଟିଏ ଦୁଇ ମିନିଟ୍‌ରେ ସେଇ ମୂଲ୍ୟବାନ ପଦାର୍ଥ ସେବା କରି ଉଠି ଯାଉଥିଲେ । ପେଟ ପୂରିବା ପ୍ରଶ୍ନ କେହି ଉଠାଉ ଥିଲେ, ସୁଦର୍ଶନ ଆଗଭର ହୋଇ କହୁଥିଲେ ହଉ, ଯାହା ଅଛି, ଖାଇଦିଅ । କାଲି ପୁଣି ଖାଇବ ନାଇଁକି ।

ହସ ହସ ମୁହଁରେ ସମସ୍ତେ ମୁହଁ ଧୋଇବାକୁ ଉଠି ଯାଉଥିଲେ ।

ତା' ପରେ ଇତିହାସ ଯେମିତି ଝଡ଼ର ଗତିରେ କଡ଼ ଲେଉଟାଇଲା । ବୟାଳିଶର ଆନ୍ଦୋଳନ, ଛୟାଳିଶର ଦଙ୍ଗା ଭିତରେ ରକ୍ତ ସ୍ରୋତରେ ଭାସି ଭାସି ଦେଶ ଦୁଇ ଭାଗ ହୋଇଗଲା । ଲକ୍ଷ ଲକ୍ଷ ମଣିଷଙ୍କ ଭଳି ସୁଦର୍ଶନ ମଧ ହଜିଗଲେ ବାସ୍ତୁହରା ଲକ୍ଷ ମଣିଷର ସ୍ରୋତ ଭିତରେ ।

ହୁସିଆର ନେତାମାନେ ରାଜଧାନୀ ଆଡ଼େ ଠିକ୍ ସମୟରେ ଚାଲିଯାଇ ନିଜ ପାଇଁ ଖଣ୍ଡିଏ ଲେଖା ଚଉକିର ବ୍ୟବସ୍ଥାରେ ଲାଗି ପଡ଼ିଥିଲା ବେଳେ ସୁଦର୍ଶନ ଖଣ୍ଡେ ଭଙ୍ଗା ଅରଟ ଧରି ଅନେକ ଦିନପରେ ଗାଁକୁ ଫେରି ଆସିଲେ ।

ଗାଁ କଥା, ପରିବାର କଥା ମନେପଡ଼ିଲା ବୋଲି ନୁହେଁ, ମୁଣ୍ଡ ଗୁଞ୍ଜିବାକୁ ଆଉ କେଉଁଠି ଖଣ୍ଡେ ଆଶ୍ରୟ ଜୁଟିବାର ସମ୍ଭାବନା ନ ଥିବାରୁ ତାଙ୍କର ଗାଁକୁ ଫେରିବା କଥା ।

ବିବାହ ହୋଇଥିଲା ସେଇ କେବେ ବିଧବା ଜନନୀଙ୍କର କ୍ରମାଗତ ଆଖିର ଲୁହ ଅନଶନର ପ୍ରତିକାର ରୂପେ ଏବଂ ବିଶେଷ କରି ମହାତ୍ମାଗାନ୍ଧୀଙ୍କର ଏ ଦିଗରେ କୌଣସି ନିଷେଧ ନ ଥିବାରୁ । ରାଜେଶ୍ୱରୀ ଆଉ ପିଲାମାନେ ସେଇ ସବୁ ଭୟଙ୍କର ଦିନ ଗୁଡ଼ିକରେ ତଥାପି ଯେ, କେମିତି ବଂଚି ରହିଥିଲେ ତାହାର ହିସାବ କେହି ରଖି ନାହିଁ ।

ରକ୍ଷଣଶୀଳ ପରିବାରର କୁଳବଧୂ ରାଜେଶ୍ୱରୀ ଚାଳକ ହୀନ ଏକ ଦଦରା ନଉକାକୁ ହିଁ ନିଜର ନିୟତି ରୂପରେ ଗ୍ରହଣ କରି ନେଇ ସନ୍ତୁଷ୍ଟ ଥିଲେ । ସୁଦର୍ଶନ ଘରକୁ ଫେରିବା ପରେ ଯେ, ଅବସ୍ଥାର ଖୁବ୍ ଗୋଟାଏ ପରିବର୍ତ୍ତନ ହେଲା ତାହା ବି ନୁହେଁ । ପରିବାରରେ ଖାଇବା ପାଇଁ ଗୋଟିଏ ପେଟ ବଢ଼ିଲା ଏଇ ଯାହା ।

ରାଜଧାନୀରେ ଯେତେବେଳେ ଅମୃତବଣ୍ଟନର ମହୋତ୍ସବ ଚାଲିଥିଲା ସେତେବେଳେ ବିଶ୍ୱ ସଂସାରର ସମସ୍ତ ରାହୁ ଆଉ କେତୁ ବେଶ ବଦଳାଇ ପଂକ୍ତି ଭିତରକୁ ପଶି ଯାଇଥିଲେ । ସେମାନଙ୍କ କୀର୍ତ୍ତିକଳାପ ବର୍ଣ୍ଣନା କରି ଚିହ୍ନା ପକାଇ ଦେବାକୁ କେହି ନ ଥିଲେ ।

ସୁଦର୍ଶନ ଯେ ଖୋଜା ପଡ଼ି ନଥିଲେ ଏମିତି ନୁହେଁ । ତେବେ ତାଙ୍କୁ ସେତେବେଳକୁ ନୂଆ ନିଶା ଘାରିଲାଣି । ରାଜନୈତିକ ଦୃଶ୍ୟ ପଟ୍ଟରୁ ଅଦୃଶ୍ୟ ହୋଇ ଯାଇଥିବା ସେଇ ଅର୍ଦ୍ଧ ଉଲଗ୍ନ ଫକୀରର କଳ୍ପିତ ରାମରାଜ୍ୟ ଗଢ଼ିବା ପାଇଁ ସୁଦର୍ଶନ ସେତେବେଳେ ମିଠା ମିଠା ସପନ ଦେଖିବାରେ ବ୍ୟସ୍ତ । ଇତିହାସର ଗାନ୍ଧୀ ଲୁଚି ରହିଛନ୍ତି ଏ ଦେଶର ନିରନ୍ନ ନିର୍ବସ୍ତ୍ର କୋଟି ଜନତାର ହାହାକାର ଭିତରେ । ତାଙ୍କୁ ବାହାର କରି ଆଣିବାର ଚିନ୍ତାରେ ସୁଦର୍ଶନଙ୍କୁ ଅନ୍ୟ ଆଡ଼େ ମନ ଦେବାପାଇଁ ସମୟ ନ ଥିଲା ।

ଜୟକୃଷ୍ଣ ସଂସାରୀ ଲୋକ । ଦେଶସାରା ସୁଦର୍ଶନଙ୍କର ଏତେ ନାମ । ମନ୍ତ୍ରୀ ଗସ୍ତରେ ଆସିଲେ ଆଗ ଖୋଜନ୍ତି ସୁଦର୍ଶନଙ୍କୁ, ତାଙ୍କ କାନ୍ଧ ଉପରେ ହାତ ରଖି ଶଙ୍ଖ

ହୁଳହୁଳି ଢୋଲ ମହୁରୀର ବାଜଣା ଭିତରେ ସତର୍କ ପଦକ୍ଷେପରେ ସଭାମଣ୍ଡପ ଆଡ଼କୁ ଆଗେଇ ଯାଆନ୍ତି । ନିଜ ବେକରୁ ଫୁଲମାଳ କାଢ଼ି ସୁଦର୍ଶନଙ୍କ ବେକରେ ଲମ୍ୱାନ୍ତି ।

ସେଇଆ ଦେଖିତ ଜୟକୃଷ୍ଣ ପ୍ରଥମେ ଭୁଲିଲେ । ପାତ୍ରର ଯୋଗ୍ୟତା କଥା ତ ପରର ବ୍ୟାପାର ।

ସୁଦର୍ଶନ କହୁଥିଲେ – ସେବାରୁ କିଛି ନେବା ପାଇଁ ଯେ ମୁଁ ଆନ୍ଦୋଳନରେ ମାତିଥିଲି, ଏକଥା ତମକୁ କିଏ କହିଲା ? ସାରାଜୀବନ ମୋର ନେତା ମୋତେ ଯାହା କହିଛନ୍ତି, ଆଖି ବୁଜି ତା' କରିଯାଇଚି । 'ମୁହଁ ଫିଟାଇ ପ୍ରଶ୍ନ କରି ନାହିଁ କି ନିଜ ପାଇଁ କେବେ କିଛି ମାଗି ନାହିଁ । 'ମାମେକଂ ଶରଣଂ ବ୍ରଜ ।' କାନରେ ପଡ଼ିଚି ସବୁବେଳେ ସେଇ ମହାମାନବର ବାଣୀ 'ମା ଶୁଚି । ମୁଁ ପଛରେ ଅଛି, ଆଗେଇ ଚାଲ । ଆଉ ଆଜି ଏମାନେ ମୋତେ ଖଣ୍ଡେ ତମ୍ୱା ପଟ୍ଟା ଧରାଇ ଦେଇ, ମାସକୁ ମାସ ଭତ୍ତା ଖଞ୍ଜି ଦେଇଛନ୍ତି । ସତେ ଯେମିତି ଏଇଥି ପାଇଁ ଜୀବନକୁ ପାଣି ଛଡ଼େଇ ଆମେ ବଢ଼ିଲା ନଈକୁ ଡେଇଁଥିଲୁ !

ସୁଦର୍ଶନଙ୍କର ଏଇସବୁ ହାଡ଼ଚିଡ଼ା କଥା – ଜୟକୃଷ୍ଣଙ୍କ ମୁଣ୍ଡରେ ପଶେ ନାହିଁ । ତମେ କିଛି ଏକା ଦେଶ ସେବା କରୁନଥିଲ । ପେଟ ପୋଷିବାକୁ କିଏ ଏବେ କେତେ ହୋ ହୋ ହୋଇ ବୁଲିଲା । ଦେଶ ତ ସ୍ୱାଧୀନ ହେଲା ! ସମସ୍ତେ ପୁଣି ନିଜ ନିଜର ଘର ପରିବାର କଥା ବୁଝି ଦେଶ ସେବା କରୁଛନ୍ତି ନା ନାହିଁ ?

ସ୍ୱାଧୀନତା ଆଗରୁ ଯାହା ପାଖରେ ଖଣ୍ଡେ ଧଡ଼ତଡ଼ା ସାଇକେଲ ସୁଦ୍ଧା ନ ଥିଲା – ସିଏ ଆଜି ଅଣ୍ଡା ପାଣି କରିବାକୁ ବାହାରିଲେ ମଟର ଗାଡ଼ି ଲୋଡ଼ା ପଡୁଚି । କୁଡ଼ିଆ ଖଣ୍ଡକରେ ଯେଉଁଠି ଚନ୍ଦ୍ରସୂର୍ଯ୍ୟ ଆତଯାତ ହେଉଥିଲେ, ସେଇ ଜାଗାରେ ଆଜି ପାଞ୍ଚତାଲା କୋଠା ଠିଆ ହୋଇଚି । ଉତ୍ସବର ସମାରୋହ ଭିତରେ ସକାଳ ଆରମ୍ଭ ହୋଇ ତା'ରି ଭିତରେ ସଞ୍ଜ ହେଉଚି ।

ଆଉ ଏଠି ଯେତେବେଳେ ଆସ ଦେଖିବ, ଭଙ୍ଗା ଅରଟର ଘଡ଼ର ଘଡ଼ର ଆଉ ଲମ୍ୱା ଲମ୍ୱା କଥା !

ସୁଦର୍ଶନ ପୁଣି କହୁଥିଲେ – ତମର ତ ଜାଣିବା କଥା ନୁହେଁ । ମୋତେ କିନ୍ତୁ ସେଦିନର ଘଟଣା ସବୁ ଜଳ ଜଳ ଦିଶୁଚି । କାଠଯୋଡ଼ି ବାଲିରେ ସେ ଯେଉଁ ସଭା । ଗାନ୍ଧୀ – ମହାତ୍ମାଙ୍କ ପାଖରେ ବସିଛନ୍ତି ଦାସ ଆପଣେ । ଟିକିଏ ତଳକୁ କସ୍ତୁରବା –

ଗାନ୍ଧୀଙ୍କ ଘରଣୀ । ଲୋକ ଯେ ଲୋକ ଥାଟ ପଟାଳି ଭାଙ୍ଗୁଛନ୍ତି । ଜୀବନ ସରିଗଲା । ଆଉ ସେମିତି ଦୃଶ୍ୟ ଏ ପାପନେତ୍ର ତ ଦେଖିଲା ନାହିଁ ।

ବାହାରିଲା ଇଏ ଆଉ ଗୋଟାଏ ବେଙ୍ଗି – ଜୟକୃଷ୍ଣ ମନେ ମନେ ଭାବୁଥିଲେ ।

ସତେ ଯେମିତି ସେଦିନର ସେଇ ଦୃଶ୍ୟ ଆଖି ଆଗରେ ଦେଖୁଛନ୍ତି, ଏମିତି ଭାବି ସୁଦର୍ଶନ ପୁଣି କହିଲେ ସେଦିନ ଦାସ ଆପଣଙ୍କର ଯୋଉ କାନ୍ଦଣା – ହୃଦୟ-ଫାଟି ଯେମିତି ପବିତ୍ର ଗଙ୍ଗା ଜଳ ବାହାରି ଆସୁଚି ! ସେଇଦିନ ମୁଁ ସ୍କୁଲ ଛାଡ଼ି ବାହାରି ଆସିବାକୁ ଠିକଣା କଲି ସିନା ।

ହଃ – କୁଳ ଉଦ୍ଧାର କରି ପକାଇଛ ! ଜୟକୃଷ୍ଣ ମନେ ମନେ ସୁଦର୍ଶନଙ୍କୁ ଅଭିସମ୍ପାତ ଦେବାକୁ ଆରମ୍ଭ କରିଥିଲେ । ପାଟି ଖୋଲିଲେ ଅନର୍ଥ ହୋଇଯିବ । ବୁଢ଼ା କିଛି କହିବ ନାହିଁ ସିନା । ପେଚୁଆ ଆଖିର ଅନ୍ତର୍ଭେଦୀ ଚାହାଣିରେ ତାଙ୍କ ମନ ତଳକୁ ଯେମିତି ସଫା ଜରୀବ କରି ପକାଇବ ।

ଏକବାଗିଆ ଲୋକ । କଣ ନାଇଁ କ'ଣ କରି ପକାଇବ । ସେଦିନର ଘଟଣା କଣ ମଲା ପର୍ଯ୍ୟନ୍ତ ମନରୁ ଯିବ ? ଛୁଆଁରେ ଛିଡ଼ିବା ପଦାର୍ଥ ପାଇଁ ଶାବଳ ଲୋଡ଼ା ପଡ଼ିଥିଲା । ■ ଖାସ ଏଇ ଲୋକଟା ପାଇଁ ।

ଯେତେହେଲେ ବୀର କିଶୋର ହେଲେ ଇଂରେଜୀ ଅମଳର ପଞ୍ଚାୟତ ପ୍ରେସିଡେଣ୍ଟ । ହାଲକୁ ହେଲେ ସରପଞ୍ଚ – କେଡ଼େ ମାନୀ ଲୋକ । କ୍ଷମତା ତାଙ୍କ ହାତରେ । ଲୋକ ତାଙ୍କ ଆଗରେ ପଛରେ ।

ତାଙ୍କ ଆଗରେ ଇଏ । ହାତୀ ପାଖରେ ମଶା !!

ସାମାନ୍ୟ ଗୋଟାଏ ବରଗଛକୁ ନେଇ ସେଦିନ କୁମ୍ଭାରପଡ଼ା, ଗାଁରେ ଯେଉଁ ହଇଚଇ ସୃଷ୍ଟି ହୋଇଥିଲା, ତା'ର ସ୍ମୃତି ଏବେ ମଧ ଜୟକୃଷ୍ଣଙ୍କ ମନରେ ଜୀବନ୍ତ ରହିଛି ।

କୁମ୍ଭାର ପଡ଼ାର ସେଇ ଗଛ କେଉଁ ଅନାଦିକାଳରୁ ଶାଖା ପ୍ରଶାଖା ବିସ୍ତାର କରି ପୁତ୍ର ପୌତ୍ରାଦି କ୍ରମେ ବଂଶ ବିସ୍ତାର ପୂର୍ବକ ଗ୍ରାମ-ଜୀବନର ଏକ ପରିଚୟ ହୋଇ ପଡ଼ିଥିଲା । ମରକତ ସନ୍ନିଭ ପତ୍ର ସମ୍ଭାର ଫାଙ୍କେ ଫାଙ୍କେ ପ୍ରବାଳ ବର୍ଣ୍ଣର ଫଳ ମଣ୍ଡିତ ସେଇ ବନସ୍ପତି ମ୍ନାନେ ହେଉଥିଲା ସ୍ୱର୍ଗରୁ ଖସିପଡ଼ିଥିବା ନନ୍ଦନ ବନର ଏକାଂଶ ଭଳି ।

କେଉଁ ପୁରୁଷରୁ ତାହାର ପାଦ ମୂଳରେ ଆଶ୍ରା ନେଇଥିଲେ ବରାଭୟ ଦାୟିନୀ ସିନ୍ଦୂର ଚର୍ଚ୍ଚିତା ଦେବୀ ପଣସେଇ, ସୁଖରେ ଦୁଃଖରେ ଯାହାଙ୍କ କଥା ଗ୍ରାମବାସୀବୃନ୍ଦ ସର୍ବଦା ମନେ ପକାଉଥିଲେ । ଭଗ୍ନ ଅର୍ଦ୍ଧଭଗ୍ନ ନିଖୁଣ ମୃତ୍ତିକାଶ୍ୱଗଜ କୁଳର ସମଭି ବ୍ୟାହାରରେ ସ୍ୱୟଂ ଦେବୀ ବସି ରହିଥିଲେ ପାରିଷଦ ପରିବୃତ୍ତ ଆରକ୍ଷୀ-ଅଧିକାରୀଙ୍କ ଭଳି ।

କୁମ୍ଭାରପଡ଼ା ଆଉ ଠାକୁରାଣୀ ବର - ଏ ଦୁଇଟିର ଇତିହାସ ମିଳିମିଶି ଏକାକାର ହୋଇ ଯାଉଥିଲା । ଗଛ - ପକ୍ଷୀ-ମଣିଷ ଆଉ ପଶୁ - ଏ ଚାରିଜାତିର ଏ ଭଳି ନିବିଡ଼ ସମ୍ପର୍କ ଖୁବ୍ କମ କ୍ଷେତ୍ରରେ ଦେଖିବାକୁ ମିଳିବ ।

ଗ୍ରାମବାସୀମାନେ ପରିବେଶ ବିଶେଷଜ୍ଞ ନଥିଲେ କିମ୍ବା ଉଦ୍ଭିଦ ଆଉ ପ୍ରାଣୀ ଜଗତ ସ୍ଥିତି ପାଇଁ କି ଭଳି ପରସ୍ପର ଉପରେ ନିର୍ଭରଶୀଳ - ଏ ତତ୍ତ୍ୱ ମଧ୍ୟ ସେମାନଙ୍କୁ ଜଣା ନଥିଲା । ତଥାପି ଠାକୁରାଣୀ ବରର ସୁସ୍ୱାସ୍ଥ୍ୟ ପ୍ରତି ପ୍ରତ୍ୟେକ ଗ୍ରାମବାସୀଙ୍କର ସେଇଭଳି ସତର୍କ ଦୃଷ୍ଟି ଥିଲା, ଯେଉଁଭଳି ମନୋଭାବ ଥାଏ ପରିବାରର ବୟୋବୃଦ୍ଧ ସଦସ୍ୟଙ୍କ ପ୍ରତି ।

ସ୍ୱାଧୀନତା ପରେ ପରେ ଯେତେବେଳେ ମଧ୍ୟ ସ୍ୱତ୍ତ୍ୱଧାରୀ ଜମିଦାର ଗୋଷ୍ଠୀ ଲୋପ ପାଇବା କଥା ଶୁଣାଗଲା, ସେତେବେଳେ ସେମାନେ ପ୍ରଥମେ ହରିଲୁଟ୍ ଆରମ୍ଭ କଲେ ଗଛ ଆଉ ମାଛକୁ ନେଇ । କେତେ କେତେ ପୁରାଣ ମହାଦ୍ରୁମମାନ ଟଳି ପଡ଼ିଲେ । ଅନାବାଦୀ, ଗଛ, ମାଛ ପୋଖରୀ ଉପରେ ଜମିଦାରଙ୍କ ସ୍ୱତ୍ତ୍ୱ ସରକାର ମାନି ନେଇଥିଲେ ।

ସେତେବେଳେ ଜମିଦାର ସାମନ୍ତକୃଷ୍ଣ ପ୍ରସନ୍ନ ସୁଦ୍ଧା ଠାକୁରାଣୀ ବର ଦେହରେ ହାତ ଦେବାକୁ ସାହସ କରି ପାରି ନଥିଲେ । ଜମିଦାରୀ ପ୍ରଥା ତ ଲୋପ ପାଇଲା । ବର୍ତ୍ତମାନ ଯେଉଁ ମାର୍ଫତଦାରମାନେ ଆସିଲେ, ସେମାନଙ୍କ କ୍ଷମତା ଯେ ଜମିଦାରମାନଙ୍କଠୁ ଅଧିକ । 'ମଠ ଧନକୁ କୋଠ କରିବା'ର ପବିତ୍ର ଲକ୍ଷ୍ୟଟିଏ ଲେଖା ନେଇ ଏମାନେ ଗାଦି ମାଡ଼ି ବସିଲେ ।

ବୀର କିଶୋର ଏଇ ଗୋଷ୍ଠୀର ପ୍ରତିନିଧି । ହେଲା ଏବେ ପିତୃ ପିତାମହ ଅମଳରୁ ତାଙ୍କର ଦେଢ଼ ବଖୁରିଆ ଚାଳଘର ଖଣ୍ଡେ ଥିଲା । ବଂଶର କୁଳପ୍ରଦୀପ ହୋଇ ସେ କୋଠା ଘର ଖଣ୍ଡେ ଠିଆ କରି ପାରିବେ ନାହିଁ ?

ଦିନେ ଦେଖାଗଲା ଠାକୁରାଣୀ ସ୍ୱୟଂ ନିଜର ଏତେକାଳର ଆସ୍ଥାନ ଛାଡ଼ି କୁଆଡ଼େ ଉଭାନ ହୋଇ ଯାଇଛନ୍ତି । ରାଉଳଙ୍କୁ ସପନ ହେଲା – ପାପର ଭାରା ବଢ଼ିଲା । ଠାକୁରାଣୀ ଆଉ ସହି ପାରିଲେ ନାହିଁ – ଗୋପ୍ୟାନ ହେଲେ ।

କେତେଦିନ ପରେ ଦେଖାଗଲା – କୋଉ ଗାଁର ମଟର ସାଇକେଲ ଚଢ଼ା କାନ୍ତରାଟି ଲୋକବାକ ନେଇ ଠାକୁରାଣୀ ବରକୁ ହାଣିବାକୁ ତିଆର ।

ଲୋକେ ଆଚମ୍ବିତ ହେଲେ । ବାବୁଭାୟାଙ୍କ କଥା । କ'ଣ ନାଇଁ ହୋଇଯିବ । ପ୍ରତିକାର ଆଶାରେ ସେମାନେ ବୀର କିଶୋରଙ୍କ ପାଖକୁ ଧାଇଁଲେ ।

ବୀର କିଶୋର ଆସିଲେ ଅବଶ୍ୟ । ତେବେ ତାଙ୍କଠୁ ଲୋକମାନେ ଶୁଣିଲେ, ବାବୁ ଜଣକ ଖୋଦ କଲେକ୍ଟରୀରୁ ତହସିଲଦାରଙ୍କ ଠାରୁ ପରମିଟ୍ ନେଇ ଆସିଛନ୍ତି । ସରକାରୀ ମାମଲା, ଏଥକୁ ଆଉ ଚାରା କଣ ?

ଗାଁ ଲୋକେ ଉପରକୁ ଚାହିଁଲେ । କଲେକ୍ଟର ଜଣେ ଥାଆନ୍ତି ସେମାନଙ୍କୁ ଜଣା । ମାତ୍ର କେଉଁଠି ଥାଆନ୍ତି କିଏ ଜାଣେ ?

ଏଇଠି ଆସରକୁ ପ୍ରବେଶ କଲେ ସୁଦର୍ଶନ । କାନ୍ତରାଟିଙ୍କ ପାଖକୁ ଯାଇ କଥାବାର୍ତ୍ତା କଲେ । ତାଙ୍କର ମେଳେଛା ଚେହେରା, ନରମ କଥା, କାନ୍ତରାଟିଙ୍କ ମିଜାଜ ବିଗାଡ଼ି ଦେଲା ।

ସୁଦର୍ଶନ ଆଉ ବୃଥା ବାଦବିବାଦକୁ ଗଲେ ନାହିଁ । ଚୁପ୍‌ଚାପ୍ ଗଛର ଚେର ଉପରେ ନିଜର ବେକଟିକୁ ଥୋଇ ଦେଇ ଶୋଇ ପଡ଼ିଲେ ।

କାନ୍ତରାଟି ଉଦ୍ୟକ୍ତ ହୋଇ ଚରମ ପଦକ୍ଷେପ ନେଲା ବେଳକୁ ଜନତା ମଧ୍ୟରେ ଗୁଂଜରଣ ଦେଖା ଦେଲା । କାଚଗୁଲୀ ଭଳି ନିଷ୍ପଲକ ଆଖି ଭିତରୁ ସତେ ଯେମିତି ଅଗ୍ନିର ସ୍ଫୁଲିଙ୍ଗ ଛୁଟି ବାହାରିଲା । ଶୁଖିଲା କାଠି ଖଣ୍ଡ ଭଳି ଯେଉଁ ହାତ କେବଳ କାନ୍ଧର ଦୁଇ ପାଖରେ ଝୁଲି ରହିଥିଲା, ସେଇ ହାତ ଯାହା ପାଇଲା, ତାକୁ ଧରି ସହରୀ ଲୋକଙ୍କୁ ଘେରିଗଲା ।

ଅଗତ୍ୟା ବୀରକିଶୋର ହସ୍ତକ୍ଷେପ କରି ଘଟଣାଟାକୁ ଚପାଚପି କରି ଦେଲେ ।

ଜୟକୃଷ୍ଣ ସବୁ ଘଟଣା ଜାଣନ୍ତି । ହେଲା ଏବେ ବରଗଛଟାକୁ ହାଣି ବୀର କିଶୋର ଇଟା ପୋଡ଼େଇ ଥାଆନ୍ତା । ଗଛ ତ ଆଜି ନ ମରିଥିଲେ, କାଲି ମରି ଥାଆନ୍ତା ।

ତମର କି ବିଷ୍ ପଡ଼ିଥିଲା ମଝିରେ ପଶି ମାନୀ ଲୋକଟାର ମାନ ଉପରେ ହାତ ପକାଇବାକୁ ?

ସେଇ ଲୋକ ଇଏ । ଜାନ ଦବ ସିନା, ଆନ୍ ଛାଡ଼ିବ ନାହିଁ । ସିଏ ନିଜେ ଏବେ କୋଉ ନିଜ ପାଇଁ କିଛି ମାଗୁଛନ୍ତି । କଲେ କରିବେ ତାଙ୍କ ନାତି/ନାତୁଣୀଙ୍କ ପାଇଁ । ବୋହୂ ପାଇଁ । ସୁଦର୍ଶନ ସବୁ ଶୁଣିଲେ । କହିଲେ ଆଜିର କଥା ଭାବୁଛ । ଜୀବନ କିନ୍ତୁ ଏତେ ଛୋଟ ନୁହେଁ । ଭୁଲିଯାଅନା, ଦୁଃଖର ଦିନରେ ବିପଦର ମୁହୂର୍ତ୍ତରେ ବିପର୍ଯ୍ୟୟର ମୁହାଁମୁହିଁ ହୋଇ ଠିଆ ହେଲେ ହିଁ ମଣିଷର ଅଦୃଷ୍ଟ ନିର୍ଦ୍ଧାରିତ ହୁଏ ।

ସମ୍ପର୍କ ତୁଟି ଯାଇ ଥିଲା । ଜୟକୃଷ୍ଣ ସେଦିନ ସଦ୍ୟ ବିଧବା କନ୍ୟା ଆଉ ତା'ର ସନ୍ତାନମାନଙ୍କୁ ନେଇ ନିଜ ଘରକୁ ଫେରି ଯାଇ ଥିଲେ । ରାଜେଶ୍ୱରୀ କ'ଣ କହିବେ କହିବେ ବୋଲି ଭାବୁ ଭାବୁ ସବୁ ଶେଷ ହୋଇଯାଇଥିଲା ।

କନ୍ୟାହୀନ ତାଙ୍କର ସଂସାରରେ ସୁକାନ୍ତର ବଧୂ କନ୍ୟା ସ୍ଥାନ ଅଧିକାର କରି ବସିଥିଲା । ପିଲା ଦିଓଟି ଜାଣିଥିଲେ ତାଙ୍କର ଦୁଇ ଆଖିର ମଣି । ସେମାନେ ଚାଲିଗଲା - ପରେ ସହସ୍ର ସ୍ମୃତିର ଦଂଶନ ରାଜେଶ୍ୱରୀଙ୍କ ପ୍ରାଣକୁ ଅହରହ ରକ୍ତାକ୍ତ କରୁଥିଲା ।

ସୁଦର୍ଶନ ଚିର ଅଶାନ୍ତିମୟ ସଂସାର ଜୀବନରେ ଶାନ୍ତିର ଅନ୍ୱେଷଣ କରିବା ନିମନ୍ତେ ଆପ୍ରାଣ ଉଦ୍ୟମ କରୁଥିଲେ ହେଁ ସେଥିରେ ସଫଳ ହୋଇପାରୁନଥିଲେ । ପ୍ରଥମ ସନ୍ତାନ ବୋଲି ନୁହେଁ, ସୁକାନ୍ତର ଅନମନୀୟ ଆଦର୍ଶବାଦୀ ମନୋଭାବ ହିଁ ତାଙ୍କୁ ତା' ଆଡ଼କୁ ଟାଣି ନେଇ ଯାଇଥିଲା ।

ଶ୍ରୀକାନ୍ତ ଆଉ ଏକାନ୍ତ ମଧ ସେଇ ଗୋଟିଏ ଘଟଣା ପରଠାରୁ ତାଙ୍କ ଠାରୁ ଦୂରେଇ ଯିବାରେ ଲାଗିଥିଲେ । ରାଜେଶ୍ୱରୀଙ୍କର ମମତାର ବନ୍ଧନ ହିଁ ପରିବାରକୁ ଗୋଟିଏ ସୂତ୍ରରେ ବାନ୍ଧିଥିଲା । ସେଇ ଘଟଣା ପରେ ରାଜେଶ୍ୱରୀଙ୍କ ଉଦାସୀନତା- ସମ୍ପର୍କ ବୃକ୍ଷକୁ କୀଟ ଦ୍ରଂଷ୍ଟ କରି ପକାଇଥିଲା ।

ସୁଦର୍ଶନ ବୁଝୁଥିଲେ, ଏମାନେ ଏବେ ଡେଣା ଝାଡୁଛନ୍ତି । ସୁଯୋଗ ପାଇଲେ ହିଁ ଉଡ଼ିଯିବେ । ଯେଉଁ ଗଛରେ ବଜ୍ରର ଆଘାତ ଲାଗିଛି, ସେ ଗଛରେ କିଏ କାହିଁକି ବସା ବାନ୍ଧନ୍ତା ?

ସେମାନଙ୍କ ଆଗରେ ବିପୁଳ ଜୀବନ । ସୁଦର୍ଶନଙ୍କ ଆଗରେ ସମସ୍ୟା ସଙ୍କୁଳ ବାର୍ଦ୍ଧକ୍ୟ । କାହାକୁ ଆଶ୍ରା କରି ତେବେ ତାଙ୍କର ଏଇ ଦୁର୍ବହ ଜୀବନ କଟିବ ?

ନିଜ ସାଙ୍ଗରେ ଲଢ଼ି ଲଢ଼ି ସୁଦର୍ଶନ ବୁଝିଛନ୍ତି, ସେ ରାଜନୀତିଜ୍ଞ ନୁହଁନ୍ତି ଜଣେ ସାଧାରଣ କର୍ମୀ ମାତ୍ର । ଲୋକଙ୍କ ଅଭାବ ଅସୁବିଧା ବେଳେ ତାଙ୍କ ପାଖରେ ଠିଆହେବା ହିଁ ହେଉଛି ତାଙ୍କର କାମ । ଏଥିପାଇଁ ସେ ପାରିଶ୍ରମିକ ଲୋଡ଼ିବେ ? ଛିଃ...

ସଂସାରରେ କେହି ତାଙ୍କୁ ବୁଝିଲେ ନାହିଁ । ଏଭଳି କି ଶ୍ରୀକାନ୍ତ ଏବଂ ଏକାନ୍ତ ମଧ୍ୟ ନୁହେଁ । ସେମାନେ ଯେତେବେଳେ ଉଡ଼ିଲେ, ସୁଦର୍ଶନ ପାଟି ଖୋଲିଲେ ନାହିଁ । ନିଜର ପତାକା ଯେ ତାଙ୍କୁ ନିଜେ ବହନ କରି ବାକି ଜୀବନ ତକ ଏକାକୀ ଚାଲିବାକୁ ପଡ଼ିବ, ଏକଥା ସେ ନିଜେ ନିଜକୁ ବୁଝାଇ ସାରିଥିଲେ ।

ଗୋଟିଏ ଗୋଟିଏ ବନ୍ଧନ ଏମିତି ଛିଡ଼ିବା ସହିତ ବରାଳ ପରିବାରର ଦେହଳୀରୁ ଗୋଟିଏ ପରେ ଗୋଟିଏ ଦୀପ ଲିଭିବାରେ ଲାଗିଥିଲା । ସୁଦର୍ଶନଙ୍କୁ ଦେଖାଯାଉଥିଲା ଆଗରେ କଳା ଘୁମର ରାତି – ନିର୍ମମ ଆଉ ନିଷ୍ଠୁର ।

ସୁକାନ୍ତର ବିଦାୟ ସହିତ ରାଜେଶ୍ୱରୀଙ୍କର ଅବକ୍ଷୟ ଆରମ୍ଭ ହୋଇ ଯାଇଥିଲା । ପାଟି ଖୋଲି ସେ ନିଜ ବିଷୟ କେବେ କାହାକୁ କହନ୍ତି ନାହିଁ । ସାରା ଜୀବନ ଧରି ଯେତେବେଳେ ପର ଗୋଡ଼ ଧରି ତାଙ୍କୁ ଚାଲିବାକୁ ହୋଇଛି ସେତେବେଳେ ତାଙ୍କର ମୁଣ୍ଡ ତ ନଇଁ ଯିବା କଥା । ପାଞ୍ଚଜଣଙ୍କ ପାଖରେ ସାଙ୍ଗ ସରିବା ହୋଇ ବସିବା ଭଳି ତାଙ୍କର କଣ ଥିଲା ?

ଦୁଃଖକୁ ମାନିନେଇ ବଞ୍ଚିବାର ମାନସିକ ପ୍ରସ୍ତୁତିକୁ ଯଦି ସୁଖ ବୋଲି କୁହାଯାଏ, ତେବେ ସେମିତି ଜୀବନ ତାଙ୍କର ଥିଲା । ପ୍ରତ୍ୟାଶା ବର୍ଜିତ ଜୀବନ । ସୁଦର୍ଶନ ତ ଥାଇ ନ ଥିଲା ପରି । ସେ ଯେତେବେଳେ କିଛି ଦେଇ ନାହାନ୍ତି, ଆଉ ବା କିଏ କ'ଣ ଦିଅନ୍ତା ?

ବରଂ ଦୁନିଆ ଯେତେବେଳେ ପାଉଛି ତାଙ୍କ ହାତରୁ ଛଡ଼ାଇ ନେଇଛି । ଚାଲିବାର ପଥ – ଆଉ ତା' ସାଙ୍ଗକୁ ବାଧା ଏ ଦୁଇଟି ରହିଛି ପାଖା ପାଖି । କେହି କେବେ ପଦେ ପ୍ରଶଂସା କରି ନାହାନ୍ତି । ଏ ଘରେ ପାଦ ଦେବାଠାରୁ ବରଂ ସେ ନିନ୍ଦା ଶୁଣି ଆସିଛନ୍ତି କାନଭରି ।

ଅଲକ୍ଷଣୀର ଅପବାଦ ନେଇ ସାରାଜୀବନ ତାଙ୍କର କଟିଯାଉଛି । ବନ୍ଧୁତା ପାଇଁ ଯାହା ଆଡ଼କୁ ହାତ ବଢ଼ାଇଛନ୍ତି ସେ ପାଲଟି ଯାଇଛି ଶତ୍ରୁ । ଦରକାର ବେଳେ

ସମସ୍ତେ ପାଖକୁ ଆସିଛନ୍ତି । କଅଁଳେଇ ପଦେ କଥା କହି କାମଟି ହାସଲ କରି ନେଇ ଦୂରେଇ ଯାଇଛନ୍ତି ।

ତାଙ୍କ ପଛରେ ଆଲୋଚନା ତ ହୁଏ ନାହିଁ । ହୁଏ ସମାଲୋଚନା । ବେଳ ଅବେଳରେ କାହା ଦୁଆରେ ପାଦ ଦେଲେ, ସେମାନେ ଅନାନ୍ତି ପଚାରିଲା ଆଖିରେ । ତାଙ୍କର ଜୀବନରେ ଭଲତ କିଛି ହେବାର ନାହିଁ– ଖରାପଟା ହେବାହିଁ ହେଉଛି ତାଙ୍କର ନିୟତି ଏକଥା ସେ ଯେମିତି ଜାଣନ୍ତି ଅନ୍ୟମାନେ ବି ସେମିତି ଧରି ନେଇଥାଆନ୍ତି ।

ଜୀବନକୁ ସତେ ଯେମିତି ତାଙ୍କର କେବଳ ଦେବାର ଭୂମିକା – ତା'ଠୁ ପାଇବାର କିଛି ନାହିଁ । ଭଲପାଇବା କଥାଟି ସେ କେବେ କାନରେ ଶୁଣିଥିଲେ ଶୁଣିଥିବେ ଅବା । ଜୀବନ ପଥରେ ଚାଲୁ ଚାଲୁ ଆକଣ୍ଠ ଘୃଣା ଛଡ଼ା କେବେ କିଛି ପାଇନାହାନ୍ତି । କେମିତି ବୁଝିବେ ତା'ର ସ୍ୱାଦ ?

ଜୀବନରେ ସମସ୍ତେ କିଛି ଗୋଟାଏ ହେବାକୁ ଚାହିଁଛନ୍ତି । ସେ ପରିବାରରେ ହେଉ ଅବା ବାହାରେ ହେଉ । ରାଜେଶ୍ୱରୀ ସବୁବେଳେ କିଛି ନ ହୋଇ ପାରିବାର ଆନନ୍ଦରେ ମସଗୁଲ ଥାଆନ୍ତି ଆଉ ଉପରକୁ ନ ଅନାଇ ସଦାବେଳେ ତଳକୁ ଅନାନ୍ତି, ଯେଉଁଠି ତାଙ୍କୁ ଜଳ ଜଳ ଦିଶେ ତାଙ୍କରି ଭଳି ଅନକୋଟି ଜୀବନ ।

ରାଜେଶ୍ୱରୀ ଭାବନ୍ତି, ଯେଉଁମାନେ ଲଢ଼େଇ କରନ୍ତି ପାହାଡ଼ ଚଢ଼ନ୍ତି କି ସମୁଦ୍ର ଲଘନ୍ତି ସେମାନେ ତ ବୀର । ଆଉ ଜାତିଏ ମଣିଷ ବି ସେ ଦେଖିଛନ୍ତି ଯେଉଁମାନେ ତିଳ ତିଳ କରି ନିଜର ଜୀବନ ଯୌବନ, ସବୁ ଆନନ୍ଦ ଆହ୍ଲାଦ ଖାଇବାଧ ପିନ୍ଧିବାର ସୁଖ, ଶରୀରର ସବୁ ସୁଖକୁ ହସି ହସି ପ୍ରତିଦିନ ନିଃଶବ୍ଦରେ ଗଳାଚିପି ମାରନ୍ତି ନିଜ ବାପ ମା ପରିବାର ପାଇଁ ହେଉ ଅବା ଦେଶ ଜାତି ପାଇଁ ହେଉ, ସେମାନେ କ'ଣ ବୀର ନୁହନ୍ତି ? ପ୍ରତି ମୁହୂର୍ତ୍ତରେ ନିଜ ସାଙ୍ଗରେ ଲଢ଼େଇ କରି ଯେଉଁ ଯୋଦ୍ଧା ନିଜକୁ ବାରବାର ପରାଜିତ କରେ ତାକୁ କ'ଣ ଲଢୁଆ ବୀର କୁହାଯିବ ନାଇଁ ?

ଆଦ୍ୟ ଯୌବନରେ କେବେ ହୁଏତ ସୁଦର୍ଶନଙ୍କୁ ଆସାମୀର କାଠଗଡ଼ାରେ ଠିଆ କରାଇ ତାଙ୍କଠୁଁ ଜବାବ୍ ମାଗିଥିବେ ମନେ ମନେ । ମାତ୍ର ପରେ ଏଇ ପାଗଳ ଲୋକଟି ପାଇଁ ତାଙ୍କ ମନରେ ମମତା ଜାଗିଚି । ସମସ୍ତେ ଯେ ଗୋଟାଏ ଶଗଡ଼ ଗୁଳାରେ ଯିବେ, ଏମିତି ତ କିଛି କଥା ନାହିଁ । ନିଜ ପାଇଁ ଅଲଗା ବାଟ ଖୋଜି ନେଇ ଯିଏ ତାର ଚୁପ୍‌ଚାପ ଚାଲୁଥାଏ, ସେଇତ ପ୍ରକୃତ 'ବୀର-ନ ଥାଉ ତା'ର ନାଆଁ

ପୋଥିପତ୍ରରେ । ଏଇ ମଣିଷ ତ ସବୁ ଲେଖୁଛି, ଲିଭାଉଛି ପୁଣି ଲେଖୁଛି । କି ମିଳିବ ସେଥିରୁ ?

ଭଗବାନ୍ ତାଙ୍କୁ ତିନୋଟି ପିଲା ଦେଇଛନ୍ତି । ସୁଦର୍ଶନ ଯେ ଆଉ ଗୋଟିଏ ପିଲା, ନିଜ ବିଷୟରେ ଉଦାସୀ । ଖାଇବାକୁ ନ ଡାକିଲେ ନିଜର ଭୋକ ଜାଣିପାରନ୍ତି ନାହିଁ । ତିନିଠାଆ କାଢ଼ି ଦେଲେ, ଦୁଇଟି ଜାଗାରେ ହାତ ବାଜେ ନାହିଁ । ମନେ ପକାଇ ଦେଲେ କେମିତି ଦୋଷ କରି ପକାଇଥିବା ଭଳି ଲାଜୁଆ ହସ ହସନ୍ତି । ଚିରା ଫଟା ବୁଝନ୍ତି ନାହିଁ । ମୁଣ୍ଡରେ କେବେ ତେଲହାତ ବାଜେ ତ କେବେ ବାଜେ ନାହିଁ । ଖଟ ପଲଙ୍କ ଲୋଡ଼ନ୍ତି ନାହିଁ । ସଦାବେଳେ ଭୂମି ଆସନ ।

ସଂସାରରେ ଥାଇ ଶ୍ମଶାନ ବାସର ଯନ୍ତ୍ରଣା ତାଙ୍କ ଭଳି କେତେ ଜଣ ହସି ହସି ଭୋଗିଛନ୍ତି ? ତେଣୁ ତ ସେ ଶିବ–ଭୋଳାମହେଶ ।

ରାଜେଶ୍ୱରୀଙ୍କ ଆଉ କୌଣସି ଅଭିଯୋଗ ନ ଥିଲା । ମନକୁ ବୁଝାଇ ଦେଲା ପରେ ବେଳ ଗଡ଼ି ଚାଲିଥିଲା ତା'ର ନିଜସ୍ୱ ଅଳସ ଛନ୍ଦରେ ।

ଶେଷ ଜୀବନରେ ରାଜେଶ୍ୱରୀ ବହୁତ ଦୁଃଖ ପାଇଲେ । ଅନନ୍ଭୂତି ଦଇବୀ ଦଣ୍ଡରେ ତାଙ୍କ ପ୍ରାଣ ଛଟପଟ ହେଉଥିଲା ବେଳେ କେବଳ ଗୋଟିଏ ଚିନ୍ତା । ଜୀବନ ପ୍ରତି ତାଙ୍କର ମୋହ ନ ଥିଲା ! ଯିବା ପାଇଁ ତାଙ୍କର କଳପଣା ନଥିଲା ।

ସେ ଚିନ୍ତା କରୁଥିଲେ କେବଳ ଏଇ ଲୋକଟି କଥା । ତାଙ୍କ ପରେ ଯା'ଙ୍କର କଣ ହେବ ? ପାଣି ଗିଲାସେ କି ମୁଢ଼ି ମୁଠାଏ ଦେବାପାଇଁ କାହାକୁ କହିଯିବେ ?

ହରିଣୀ ଜଙ୍ଗଲରେ ଚରୁଥିବାବେଳେ ନିଘା ରଖିଥାଏ ପାଖରେ ଖେଳୁଥିବା ତା'ର ଛୁଆ ଉପରେ । କାଳ–ବ୍ୟାଧ କୁଆଡୁ ଛପି ଛପି ଆସେ । କାନ ପର୍ଯ୍ୟନ୍ତ ଟାଣି ଶର ଛାଡ଼ିଦିଏ । ପଡ଼ିଯାଇ ଛଟପଟ ହେଉଥିବା ବେଳେ ହରିଣୀର ଆଖି ଥାଏ ତା'ର ଛୁଆଟି ଉପରେ ।

ରାଜେଶ୍ୱରୀଙ୍କ ଚିନ୍ତା ଶେଷ ହୋଇଗଲା । ଜୀବନ ଶାଖାରୁ କାଳ – ନିଷାଦର ଶରାଘାତରେ ସେ ଟପ୍ କରି ଖସି ପଡ଼ିଲେ ।

ସୁଦର୍ଶନ ପାଖରେ ଥିଲେ । ମୃତ୍ୟୁପଥ ଯାତ୍ରିଣୀର ମୁହଁରେ ପାଣି ଟୋପିଏ ଟୋପିଏ ଦେଉଥିଲେ । ପାଖରେ ବସି ଗୀତା ପଢ଼ି ଶୁଣାଉଥିଲେ । ସଂସାରର ବିଷ

ବାଷ୍ପରେ ଅବରୁଦ୍ଧ ଗୋଟିଏ ମହାପ୍ରାଣର ମହାକାଳରେ ମିଶିଯିବାର ନିଃଶବ୍ଦ ଲୀଳାକୁ ନୀରବରେ ଦେଖୁଥିଲେ ।

ହୁଏତ ତାଙ୍କର ହୃଦୟରୁ ରକ୍ତକ୍ଷରଣ ହେଉଥିଲା । ପ୍ରକାଶରେ କିନ୍ତୁ କୌଣସି ଉଚ୍ଛ୍ୱାସ ନ [illegible] । ଶୋକ ସୂଚକ ବିନ୍ଦୁଏ ଲୁହ ବି ଆଖି କୋଣରେ ଦେଖାଯାଉ ନଥିଲା ।

ସୁଦର୍ଶନ ସେମିତି ସେଇଠି ବସି ରହିଥିଲେ, ସତେ ଯେମିତି ଖଣ୍ଡେ ପଥର ।



# ଦୁଇଟି ମନ ଓ ଗୋଟିଏ ହୃଦୟର କାହାଣୀ

ଦୁଃଖର ଅଙ୍କୁରରୁ ଜୀବନର ସୃଷ୍ଟି । ଜୀବନ ବୃକ୍ଷ–ତାହା ବିଷ ହେଉ କି ଅମୃତ ହେଉ–ତା'ର ଛାଇଟିକିଏ ତ ନିଶ୍ଚୟ ରହିବ । ସୁଖ ହେଉଚି ସେଇ ଛାଇ – କେତେବେଳେ ଥାଏ, କେତେବେଳେ ନ ଥାଏ । ଜୀବନକୁ ରମା ଏମିତି ବୁଝିଚି । ଛାଇର ଭରସାରେ ଯେଉଁମାନେ ଅଟକି ରହନ୍ତି, ସେମାନଙ୍କର କପାଳରେ ଜୁଟେ ଧୂଧୂ ଖରା – ରମା ଜାଣେ– ବାଟତ ଯେମିତି ହେଲେ, ଚାଲିବାକୁ ହେବ । ସବୁ ବାଟ ଚଲାର ଦିନେ ଶେଷ ହୁଏ । ତା'ପରେ ଆଉ କିଏ କାହାର ? ମନ ଭୁଲାଇବାକୁ ରାମ ଯେମିତି ସୁନାର ସୀତାଟିଏ ଗଢ଼ି ନିଜର ବାମ ପାଖରେ ଥୁଅନ୍ତି କି ଆଉ କିଏ କୋଟି କୋଟି ଟଙ୍କା ଖର୍ଚ୍ଚ କରି ଶଙ୍ଖ ମଲମଲ ପଥରରେ ମହଲ ବନାଇ ଦେଇଯାଆନ୍ତି, ସେଥିରେ ଯିଏ ଯାଇଥାଏ ସିଏ କୋଉ ଫେରି ଆସେ ନା ଆଖି ଟେକି ଅନାଏ ? ଖାଲି ମନ ବୁଝାଇବା କଥା ।

ରମା ସେଇ କଥା କାଶୀନାଥକୁ କହିଲା । ଗାଁ' ଲୋକେ ଦୋଭେଇ ବରରେ ରମାକୁ ଛନ୍ଦି ଦେବେ ବୋଲି ଠିକଣା କରିଥିଲେ । ବୋଉ ଆଗରେ ଆକାଶରୁ ତୋଳିଆଣି କଥା ମାନ ଗପି ଯାଇଥିଲେ । ବୋଉ କେତେ ବିଶ୍ୱାସ କରିଥିଲା, ତା' ସିଏ ଜାଣିଥିବ ତେବେ ଗାଁ' ବାଲାଙ୍କ ଆଗରେ ମୁହଁ ଖୋଲି ନଥିଲା । ରମା ପାଇଁ ପରା ଗାଁ ଲୋକେ ମୁଣ୍ଡଟେକି ବାଟ ଚାଲିପାରୁ ନାହାନ୍ତି । ବୋଉ ଅବା କ'ଣ କରନ୍ତା ? ଦୁନିଆଦାରୀର ସେ କେତେ ଅବା ବୁଝେ ? କପାଳର ଲେଖାତ କେହି ବଦଳେଇ ଦେଇ ପାରିବେ ନାହିଁ । ରମାର ଭାଗ୍ୟରେ ଯଦି ସୁଖଥାଏ, ତେବେ ଦୂବ ତା' ଆଗରେ ଦାରୁ ହୋଇ ଠିଆ ହେବ । ଆଉ ଯଦି ତା' କପାଳରେ ଦୁଃଖ ଥାଏ – ତେବେ ବୋଉ ନିଜକୁ ବୁଝାଇ ଦେଇଥିଲା ।

ସବୁ ନ ହେଉ – ଏମାନେ ଯାହା କହୁଛନ୍ତି, ସେଥିରୁ କିଛି ହେଲେ ତ ସତ ହୋଇଥିବ । ଧୋବ ଫର ଫର ସରୁ ଚାଉଳ ନୁହଁ, ଅକାଣ୍ଡିଆ, ଖୁଦମୁଠିକରେ ତା'ର ଭରସା । ଜୀବନ ସେଇଥିରେ ଚାଲିଚି ସେଇଥିରେ ବି ଚାଲିବ ।

କାଶୀନାଥର ଆଖିରେ ସେତେବେଳେ ଆଖିଏ ସ୍ୱପ୍ନ । ସେ ଏସବୁ କଥା ମାନିବାକୁ ରାଜି ହୁଅନ୍ତା କାହିଁକି ? ରମା ତାକୁ ନିଜ କପାଳ ଦେଖାଇ ଦେଇଥିଲା । ରୂପରେ ଗୁଣରେ ଅପସରୀଟିଏ ହେଲେ ବି ମଲାଟତ ଆଉ ଲଲାଟକୁ ବଦଳାଇ ଦେଇପାରିବ ନାହିଁ । ଯାହାଥିବ ତା' ଭାଗ୍ୟରେ ।

କାଶୀନାଥ ସେତେବେଳକୁ ଅସ୍ଥିର । କେଡ଼େ କଷ୍ଟରେ ହାତ ପାହାନ୍ତାକୁ ନେଇ ଆସିଥିବା ପାଚିଲା ଫଳଟି ଦେଖୁ ଦେଖୁ ଦୂରକୁ ଖସି ଯାଉଥିବାର ହତାଶରେ ବିକଳ ହୋଇ ପଚାରିଲା – ଆଉ ଆମ ଭଲ ପାଇବା ? କୋଡ଼ିଏ ବର୍ଷର କାଶୀନାଥ ଅଠର ବର୍ଷର ରମା ଆଗରେ ଭଲପାଇବାର ବଡ଼ାଇ କରିପାରେ । ଏ ବୟସରେ ତା' ଦୁନିଆଟା ସେଇଆ ମାତ୍ର ରମା ଜାଣେ, ଉଚ୍ଚ ପଥର ପିଣ୍ଡା ଉପରେ ବସି ମାମଲତି କରୁଥିବା କାଶୀନାଥର ବାପା ଏକଥା ମାନିବେ ନାହିଁ । ତାଙ୍କର ଚୂନ ଧଉଳା ପଦ୍ମ କହ୍ଲାର ଚିତ୍ରିତ ପିଣ୍ଡା ତଳୁ ଯେଉଁ ବାଟ ତାହା କେବେହେଲେ ଦିନରେ ସୂର୍ଯ୍ୟ ଆଉ ରାତିରେ ଚନ୍ଦ୍ର ଦେଖୁଥିବା ରମାର ଅଳ୍ପ ଆଣି ଘର ପାଖରେ ଶେଷ ହେବ ନାହିଁ । ଗାଁ'ର ଆମ୍ବତୋଟାରେ ଉଚ୍ଚଡାଳରୁ ଆମ୍ବ ତୋଳି ଦେବା କି ବାରି ପୋଖରୀରୁ ଖୁଦ୍ରୁକୁଣି ପାଇଁ ପଦ୍ମକଇଁ ତୋଳି ଆଣିବା ଭିତରେ ଗୋଟିଏ ମନ ହୁଏତ ଆଉ ଗୋଟିଏ ମନ ଆଡ଼କୁ ଆଉଜି ଯାଏ । ମାତ୍ର ସଂସାରୀ ମଣିଷ ପାଖରେ ମନର ମୂଲ୍ୟ ବା କେତେ ?

ରମା ସେଇ କଥା କାଶୀକୁ କହିଲା । ତାକୁ ବୁଝାଇଲା –କାଶୀ ଭାଇ, ଯିଏ ଭଲପାଏ, ଭଲପାଇବା ହେଉଚି ତା'ର ପ୍ରକୃତି । ସେଇଥିରେ ତା'ର ସୁଖ । ଯିଏ ସେତକ ପାଏ, ସେଥିରେ ତା'ର କ'ଣ ଲାଭ ? ଆମେ ନଈ ବାଲିରେ ବାଲୁଙ୍କା ଗଢ଼ି ସେଥିରେ ଚନ୍ଦନ ସିନ୍ଦୂର ଦେଉ, ଫୁଲମାଳରେ ସଜାଉ । ତା' ଆମର ଧର୍ମ । ସେଇଥିରେ ଆମର ଆନନ୍ଦ । ହେଲେ ସେଥିରେ ବାଲୁଙ୍କାର କ'ଣ ଲାଭ ?

କାଶୀନାଥ ସେ ଦିନ ଛଳ ଛଳ ଆଖିରେ ତା'ର ଏଇ ନିଷ୍ଠୁର ହୃଦୟା ପ୍ରେମିକାଟି ଆଡ଼େ ଚାହିଁଥିଲା । ତା'ର ଆଖି ଛଳ ଛଳ ହୋଇ ଯାଇଥିଲା । ତା'ର ରମାକୁ କହିବାକୁ ମନ ହେଉଥିଲା ଯେ, ବାଲୁଙ୍କାରେ ଥରେ ଚନ୍ଦନ ଟୋପାଏ ଲାଗିଗଲେ, ସେ ଆଉ

ବାଲି ହୋଇ ରହିଯାଏ ନାହିଁ । ଠାକୁରେ ନିଜେ ଆସି ତା' ଭିତରେ ବିଜେ କରନ୍ତି – ତାକୁ ଧନ୍ୟ କରନ୍ତି ।

କାଶୀକୁ ଏଇ ଭଳି ଫେରାଇ ଦେଇ ରମାର ମନ ମଳି ହୋଇଯାଉଥିଲା । ତା'ର ଅନେକ କଥା ମନେ ପଡୁଥିଲା । ଦୁଇବର୍ଷ ତଳେ ଏକ ମେଘ ମନ୍ଦ୍ର ସନ୍ଧ୍ୟାରେ ଯେଉଁ ପୁଷ୍ପକୋମଳ ଆଖ୍ୟାୟିକାଟିର ଆରମ୍ଭ ହୋଇଥିଲା, ତାହାର ଅନ୍ତ ଘଟିଥିଲା ସେଇଦିନ କାଶୀନାଥର ବିଦାୟରେ । ସେ କଥା ରମାର ସ୍ପଷ୍ଟ ମନେଅଛି, ମନେ ବି ରହିବ ଚିର ଦିନ । ଚିନ୍ତାଶୂନ୍ୟ ହୋଇ ବାଟ ଚାଲୁ ଚାଲୁ ହଠାତ୍ ଯଦି ଆଖି ଆଗରେ ବଜ୍ରପାତ ଘଟିଯାଏ, ସେ କଥା କଣ ବଞ୍ଚିଥିବା ଯାଏ ଭୁଲି ହୁଏ ?

କାଶୀନାଥଙ୍କ ଦାଣ୍ଡରେ ବାଘନାଚ ହେଉଥିଲା । ପ୍ରତି ବର୍ଷ ମହରମ ଦିନ ହୁଏ । ପାଖ ଗାଁର ମୁସଲମାନମାନେ ଟୋକାଟିଏକୁ ବାଘ ସଜାଇ ଆଖ ପାଖ ଗାଁର ବର୍ଦ୍ଧିଷ୍ଣୁ – ଗୃହସ୍ଥମାନଙ୍କ ଦୁଆରେ ନଚାନ୍ତି । ବାଜାର ତାଳେ ତାଳେ ଦେହସାରା ହଳଦିଆ ଆଉ ପଟାପଟା କଳା ଦାଗରେ ମଣ୍ଡି ହୋଇଥିବା ବାଘମୁଖା ପିନ୍ଧା ସେଇ ଯୁବକର ଉଦ୍ଦାମ ନାଚ ନିସ୍ତରଙ୍ଗ ଗ୍ରାମୀଣ ପରିବେଶରେ ସାମୟିକ ଉଷ୍ଣତାର ଘୂର୍ଣ୍ଣି ସୃଷ୍ଟି କରେ । ସେଇ ବ୍ୟାଘ୍ର ପୁଙ୍ଗବ ପୁଣି ଯେତେବେଳେ ନାଚର ଶେଷରେ ପୂର୍ବରୁ ଶୟାନ ଏକ ବାଳକକୁ ଟେକି ନେଇ ଅନ୍ଧାର ଆଡ଼କୁ ପଳାଏ, ସେତେବେଳେ ପିଲ୍ୱାତ ପିଲା – ବଡ଼ ମାନେ ମଧ୍ୟ ଶିହରିତ ଅବସ୍ଥାରେ ତାକୁ ବାଟ ଛାଡ଼ି ଦିଅନ୍ତି ।

ଗ୍ରାମର ବାୟୁମଣ୍ଡଳରେ ଭାସି ବୁଲୁଥାଏ ବହୁ ବିଧ ଗୁଜବ । ବ୍ୟାଘ୍ରନର୍ତ୍ତକ ଦେହରେ କୁଆଡ଼େ କେତେବେଳେ ସବାର ହୋଇଯାଏ ଶିମିଳପାଳ ଜଙ୍ଗଲର ମହାବଳବାଘର ଅମୋକ୍ଷ ଆତ୍ମା । ସେତେବେଳେ ନାଚୁଆ ପିଲାଟି ଆଉ ମଣିଷ ହୋଇ ରହେ ନାହିଁ । ରକ୍ତମୁଖା ସେଇ ମୁହୂର୍ତ୍ତରେ ଯିଏ ତା' ଆଗରେ ପଡ଼େ, ସେଇ ହୋଇଯାଏ ତା'ର ଶିକାର । ଏ ଭଳି ଘଟଣା କୁଆଡ଼େ ଦୂର ଅତୀତରେ ବହୁବାର ଘଟିଯାଇଛି । ଗାଁର ପିଲାଠୁଁ ବୁଢ଼ାଯାଏ ସମସ୍ତେ ଏକଥା ଜାଣନ୍ତି । ନିହାତି ଅଦୂରଦର୍ଶୀଙ୍କ ବ୍ୟତୀତ ଉଣା ଅଧିକେ ସମସ୍ତେ ଏ ଦିଗରେ ଆପେ ସତର୍କ ରହିବା ସାଙ଼୍ଗେ ସାଙ୍ଗେ ଆପଣାର ପିଲା କବିଲାଙ୍କୁ ମଧ୍ୟ ଆଖିରେ ରଖିଥାଆନ୍ତି ।

ରମା ପିଲାଦିନୁ ନାଚ ଦେଖୁଚି । ଏ ସବୁଥିରେ ତା'ର ଏତେ ଡର ଭୟବି ନ ଥାଏ । ଘରେ ଜୋଉ ଠେଙ୍ଗାଧରା ଭାଇ ଅଛି ନା ଛତାଧରା ବାପ ଅଛି ଯେ, ତାକୁ ଏ

ବିଷୟରେ ସାବଧାନ କରିଦେବ ! ଅଭିଭାବକ କହିଲେ ବୋଉ – ସିଏତ ଏତେବେଳେ ବି ଦୁଇଟା ଚିରକ୍ଷୁଧିତ ପେଟର ହାଁ– ବୁଜିବାକୁ ଗାଁର କାହାଘରେ ବିରିବାଟୁ ଥିବ କି ପିଲାକୁ ତେଲ ଲଗାଇ ଦେଉଥିବ କି... ରମା ତେଣୁ ନିର୍ବିକାର ହୋଇ ନାଚ ଦେଖୁଥିଲା....

ଢୋଲ ଆଉ ମହୁରୀର ଯୁଗଳବନ୍ଦୀ ସେତେବେଳକୁ ଯାଇ ଚରମ ବିନ୍ଦୁରେ । ମିଞ୍ଜି ମିଞ୍ଜି ଲଣ୍ଠନ ଆଲୁଅରେ, କଳା କଳା ମଣିଷ ମୁଣ୍ଡର ସେଇ ଅରଣ୍ୟ ଭିତରେ ମୁଖା ପିନ୍ଧା ବାଘର ସଦା ବ୍ୟାଦିତ ମୁହଁରୁ ସତେ ଯେମିତି ଉଷୁମୁଳିଆ ରକ୍ତ ବିନ୍ଦୁ ବିନ୍ଦୁ ହୋଇ ଥୋପି ପଡୁଥିବାର ରମାକୁ ଦେଖାଗଲା । ଛାତିଟା କେମିତି ଧଡ଼ପଡ଼ ହୋଇ ଦେହସାରା କଣ୍ଟାକିଆ ଲାଗିଲା । ରମାଟିକିଏ ପଛକୁ ଘୁଞ୍ଚିଗଲା । ହଠାତ୍ କାନ ପାଖରେ ଯେମିତି କାହାର ତତଲା ନିଃଶ୍ୱାସ ବାଜି ତା'ର ଗାଲ ପୋଡ଼ିଗଲା ଭଳି ଲାଗିଲା । ରମା ଚମକି ପଡ଼ି ପଛକୁ ଅନାଇଲା ଦେଖିଲା କାଶୀଠିଆ ହୋଇଚି । କାନ୍ଧରେ ଗୋଟିଏ ହାତ ଥୋଇ କାଶୀ କହିଲା ଡରିଲୁ କିଲୋ ? ତା' କଣ୍ଠ କେମିତି ଓଜନିଆ ଶୁଣାଯାଉଥିଲା... ଗଭୀର ସ୍ନେହରେ କାଶୀନାଥ ରମାକୁ ଆଉ ଟିକିଏ ପାଖକୁ ଟାଣି ନେଲା... ରମା ଶିହରିତ ହେଲା ଦ୍ୱିତୀୟ ଥର ପାଇଁ....

ବେଳେବେଳେ ସେ ଭାବେ ଏମିତି କାହିଁକି ହେଲା ? ଭାଦ୍ରବ ମାସର ସେଇ ଫୁଟା ଶିଉଳି ଗନ୍ଧରେ ଭାରି ପବନରେ ଏମିତି କ'ଣ ମାଦକତା ଥିଲା ଯେ, ନିତି ବୋହୂ ଚୋରି, ବାଗୁଡ଼ି, ଖେଳରେ ଧରାଧରି ଛଡ଼ାଛଡ଼ି କାଶୀଭାଇର ଟିକିଏ ଛୁଆଁ ତାର ମନେହେଲା ଜଣେ ପୂର୍ଣ୍ଣ ପୁରୁଷର ଅନ୍ତରଙ୍ଗ ସ୍ପର୍ଶ ଭଳି ! ତା' ଜୀବନରେ ପ୍ରଥମ ପୁରୁଷର ସେଇ ମନକିଣା ଛୁଆଁ ଟିକିକ ତାକୁ କାହିଁକି ଓଦା କରିଦେଲା, ସେ ଏବେ ବି ତା'ର କୂଳ କିନାରା ପାଏ ନାହିଁ ।

ରମାର ସ୍ପଷ୍ଟ ମନେ ଅଛି ତା'ର ରୋମ ସବୁ ଟାଙ୍କୁରି ଉଠିଲା.... ପାଦତଳୁ ମାଟି ଯେମିତି ଖସିଯିବାରେ ଲାଗିଲା ଆଉ ସେ ଥର ଥର ହୋଇ କମ୍ପିବାକୁ ଆରମ୍ଭ କଲା । କାଶୀନାଥ ତାକୁ ଆସ୍ତେ ଆକର୍ଷି ଧରିଲା.... ପାଦେ ପାଦେ ପଛକୁ ଘୁଞ୍ଚି ତାକୁ ସେ ଭିଡ଼ ଭିତରୁ ବାହାରକୁ ନେଇ ଆସିଲା... ସମସ୍ତେ ନାଚ ଦେଖାରେ ବ୍ୟସ୍ତ – କିଏ ଅବା ଏମାନଙ୍କୁ ଲକ୍ଷ୍ୟ କରୁଚି ? ଏମାନଙ୍କ ପାଇଁ ସୁବିଧା ବି ଥିଲା ଚାରିପାହୁଣ୍ଡ ଘୁଞ୍ଚିଗଲେ ଘର ଦକ୍ଷିଣମୋଡ଼ ହୋଇ ଉତ୍ତର ଆଡ଼କୁ ଲମ୍ବିଯାଇଛି । କୋଣ ବୁଲିଗଲେ ନିର୍ଜନତା – କାଶୀନାଥ ତାକୁ ସେଇ ଆଡ଼କୁ ନେଇ ଯାଇଥିଲା....

ବଂଶୀ ସ୍ୱନରେ ମୁଗ୍ଧା ମୃଗୁଣୀଟିଏ ଭଳି ସମ୍ମୋହିତା ରମା ସେଦିନ କାଶୀନାଥକୁ ଅନୁସରଣ କରିଥିଲା । ସେ ଜାଣିନଥିଲା – ସେଇ ଦିନ ଲକ୍ଷତାରାର ଫୁଲଫୁଟା ସେଇ ରୋଷଣୀ ଭିତରେ ତା'ର ସଦ୍ୟୋତ୍ତୀର୍ଣ୍ଣ କୈଶୋରର ଖୋଳପା ଫଟାଇ ବାହାରି ଆସିଥିଲା ପୂର୍ଣ୍ଣ ବୟସ୍କା ଏକନାରୀ, ପୁରୁଷର ଟିକିଏ ସ୍ପର୍ଶ ପାଇବା ପାଇଁ ଯିଏ ଯୁଗ ଯୁଗ ଧରି ତପସ୍ୟା କରି ଆସିଛି । ରମା ଆହୁରି ଜାଣିନ ଥିଲା ବାଘ ନାଚ ଦେଖିବାକୁ ଆସି ନିଜ ଅଜାଣତରେ ସେ ସେଇ ବାଘର ଶିକାର ହୋଇଯାଇଛି । ଜାଣିଥିଲେ ଅବା କ'ଣ କରିପାରିଥାଆନ୍ତା ଯେ ? ସୁଖ ବୋଲି ଯାହାକୁ ଧରିବାକୁ ସେ ଅନ୍ଧାର ଭିତରକୁ ଲମ୍ଫ ଦେଇଚି, ତାହା ସୁଖର ମଲାଟ ଭିତରେ ଦୁଃଖର ଅସରନ୍ତି ଗ୍ରନ୍ଥଟିଏ ସିନା !

ସେଦିନ – ଛାଇ ଆଉ ଅନ୍ଧାରର ସେଇ ଗୋଳିଆ ମିଶା ଆକାଶ ତଳେ ଅନନ୍ତ ଯୁଗର ପୁରୁଷ ଆଉ ନାରୀ ନିବିଡ଼ ହୋଇଥିଲେ । ଜାତିକୁଳମାନ ସାମାଜିକ ପ୍ରତିଷ୍ଠା ସେତେବେଳେ ଆବେଗର ପ୍ରଖର ସୁଅରେ ଭାସି ଯାଇଥିଲା । ପୁରୁଷ ରୋମାଞ୍ଚିତ ହୋଇଥିଲା ଜଳପୂର୍ଣ୍ଣ ମେଘ ପ୍ରଥମ ପବନର ସ୍ପର୍ଶରେ ଯେମିତି ବର୍ଷିଯିବାକୁ ବ୍ୟାକୁଳ ହୋଇ ଉଠେ ଠିକ୍ ସେମିତି । ନାରୀ ଶିହରିତ ହୋଇ ଉଠିଥିଲା – ଆଦ୍ୟ ଆଷାଢ଼ର ପ୍ରଥମ ବାରି ବିନ୍ଦୁଟିକୁ ତୃଷିତ ମାଟି ଯେମିତି ନିଜର ସମଗ୍ର ସତ୍ତା ଦେଇ ଶୋଷି ନିଏ ଠିକ୍ ସେମିତି । ପୁରୁଷର ସେଇ ସ୍ପର୍ଶରେ ଦେହ ଯେ ଏକ ମୂର୍ଚ୍ଛାଳିଆ ଆନନ୍ଦର ନିଶାରେ ମତୁଆଲା ହୋଇଯାଏ ଯେତେ ପିଇଗଲେ ବି ଶୋଷ ମେଣ୍ଟେ ନାହିଁ – ନାରୀର ଅନୁଭବରେ ତାହା ସେ ଦିନ ଧରାପଡ଼ିଲା....

ବିଦାୟ ଦେବା ପୂର୍ବରୁ କାଶୀନାଥ ରମାକୁ ପଚାରିଲା.... କାଲି କେତେବେଳେ ଦେଖା ହେବ ? ରମା ତାକୁ ଜିଭ ଦେଖାଇ କହିଥିଲା... ବଜାରୀ !

ସବୁ ମନେପଡୁଛି । ସେ ଦିନର ପ୍ରତିଟି ମୁହୂର୍ତ୍ତର ବିବରଣୀ ପଥରରେ ଖୋଦେଇ ହୋଇ ରହିଲା ଭଳି ତାର ମନର ଫଳକରେ ଉତ୍କୀର୍ଣ୍ଣ ହୋଇରହିଛି । ବଞ୍ଚିଥିବା ଯାଏ ରହିବ । ତା' କ'ଣ ଭୁଲିହୁଏ ? ପରିଣାମ ଚିନ୍ତା ନ କରି ସେଦିନ ଦୁଇଟି ତରୁଣ ନିଆଁକୁ ଡେଇଁଥିଲେ । ଆବାଲ୍ୟରୁ ଯେଉଁ ଅନୁରାଗର ବୀଜ ପଥର ଚାପା ଦିଆଯାଇ ଦୁଇଟି ହୃଦୟରେ ଲୁଚି ରହିଥିଲା ଗୋଟିଏ ମୁହୂର୍ତ୍ତର ଅନୁକୂଳତା ତାକୁ ଅଙ୍କୁରିତ କରି ଦେଇଥିଲା । ଶୀଘ୍ର ତାହା ଡାଳପତ୍ର ମେଲିଲା । ପୁଷ୍ପଫଳ – ସମନ୍ୱିତ ଏକ ଦର୍ଶନୀୟ ବୃକ୍ଷରେ ପରିଣତ ହେଲା ବେଳକୁ ତାହାର ଚେରରେ କୀଟ ଲାଗିଗଲା....

ଗାଁରୁ ବିଦାୟ ଦେବା ପୂର୍ବରୁ କାଶୀନାଥ ସହିତ ରମାର ସାକ୍ଷାତ୍ ହୋଇଥିଲା । କାଶୀନାଥ ରମାକୁ କହିଥିଲା–ମୋର କ'ଣ ହେବ ? ମୁଁ ଯେ ମରିଯିବି.....

ରମା ଫିକା ହସ ହସିଥିଲା । କହିଲା କାଶୀଭାଇ, ଖେଳଣାଟାଏ ହଜିଗଲେ ପିଲାମରିଯାଏ ନାହିଁ, ଖୁବ୍ ବେଶୀରେ ଘଡ଼ିଏ ଅଧେ କାନ୍ଦେ.....

କାଶୀନାଥ ଆହୁରି ଥରେ ଆଶ୍ଚର୍ଯ୍ୟ ହେଲା । ତା'ର ମନ ଭିତର ଯାହା ହେଉଥିଲା, ରମା ଯେତେବେଳେ ସେ କଥା ବୁଝି ପାରୁ ନାହିଁ, ତେବେ ସେ ଆଉ କାହାକୁ କହିବ ? କେମିତି ବୁଝାଇବ ?

ଦୁଇ ବର୍ଷ ତଳର କିଶୋରୀ ରମା ଏହା ଭିତରେ ଦୁନିଆ ଦାରୀର ଅନେକ କଥା ବୁଝିଯାଇଥିଲା.... ତା'ର ଆଉ କାଶୀନାଥ ଭିତରେ ଯେଉଁ ଦୁସ୍ତର ଖାଇଟି–ଧୀରେ ଧୀରେ ଆଖି ଆଗରେ ସ୍ପଷ୍ଟ ହେଉଥିଲା । ପୁରୁଷର ଅନଭିଜ୍ଞ ବେପରୁଆ ଦୃଷ୍ଟି ନେଇ କାଶୀନାଥ ତାକୁ ଦେଖିପାରୁ ନ ଥିଲେ ମଧ୍ୟ ରମା ଦେଖୁଥିଲା... ତା ନିଜ ଭିତରେ କେହି ତାକୁ ଯେମିତି ସତର୍କ କରାଇ ଦେଇ କହୁଥିଲା ଏଥର ସମ୍ଭାଳି ଯିବାର ସମୟ ଆସିଯାଇଚି..... ମାତ୍ର କାଶୀ ବୁଝୁନଥିଲା ସେ ଆଗଭଳି ରମାକୁ ଖୋଜୁଥିଲା... ରମା ଦୂରେଇ ରହିଲେ, ସେ ପାଖକୁ ଟାଣୁଥିଲା.....

ଏତିକି ବେଳେ ବିବାହର ଆୟୋଜନ । ରମା ଜାଣିଥିଲା....ବିଶି ବଡ଼ା'ପା କାହିଁକି ଏଥିରେ ଏମିତି ଆଗ୍ରହ ଦେଖାଉଥିଲେ । ଫୁଲ ଫୁଟିଲେ ତ ନିଶ୍ଚେ ନାକରେ ଗନ୍ଧ ବାଜିବ । ଯେତେ ଲୁଚାଇଲେ ବି ପୁଅର ମନକଥା ବିଶ୍ୱନାଥ ଜାଣିଥିଲେ । ସେଇଥି ପାଇଁ ସେ ରମାକୁ ପଗାର ପାର୍ କରିଦେବା ପାଇଁ ଅଣ୍ଟା ଭିଡ଼ିଥିଲେ । ନିଜ ଗୋଡ଼ ଯାହାର ଦମ୍ଭ ନୁହେଁ, ସିଏ ପୁଣି ଏ ସବୁ ବିଷୟରେ ଚିନ୍ତା କରିବ କ'ଣ ? ଗାଲ ଚିପିଲେ ଦୁଧ ବାହାରି ପଡ଼ିବ.... ତା'ର ପୁଣି କ'ଣ ନା... ଟୋକାଟା ମାସେ ପନ୍ଦର ଦିନ ବାଡ଼େଇ କଚାଡ଼ି ହେବ । ପୋଖରୀ ପାଣିରେ ଟୋକାଟାଏ ପଡ଼ିଲେ ସେଥିରେ ଢେଉ ତ ଉଠିବ.... ମାତ୍ର ସେ କେତେ ବେଳ ପାଇଁ ?

ବିଶ୍ୱନାଥ ହୁଏତ ଠିକ୍ ଭାବିଥିଲେ । ରମାର ବିଦାୟ କାଶୀନାଥର ଜୀବନରେ କିଛି ଛୋଟ ଛୋଟ ଢେଉ ସୃଷ୍ଟି କଲା ଠିକ୍ । ମାତ୍ର କାହାରି ଆଖିରେ ପଡ଼ିବା ପୂର୍ବରୁ ତାହା ପୁଣି ପୂର୍ବଭଳି ନିସ୍ତରଙ୍ଗ ହୋଇଗଲା । ସୌରଜଗତ୍‌ର ବିଶାଳ ସାମିଆନା ତଳେ ପ୍ରତି ମୁହୂର୍ତ୍ତରେ କେତେ ଯେ ହୃଦୟକ୍ଷତ ବିକ୍ଷତ ହୁଏ, ତା'ର ଖବର୍ କିଏ ରଖେ ?

ପୁଣି ହୃଦୟର କ୍ଷତତ ଅଦୃଶ୍ୟ... ତାକୁ ଅନୁଭବ କରି ହୁଏ ସିନା.... କାହା ପାଖରେ ଦେଖାଇ ହୁଏ ନାହିଁ କି ନିଜେ ବି ଦେଖିହୁଏ ନାହିଁ । କେଉଁଠି ତାହା ଆପେ ଆରୋଗ୍ୟ ହୁଏ ସମୟର ପ୍ରଲେପରେ... କେଉଁଠି ଅବା ସେଥିରୁ ରକ୍ତ ଝରୁଥାଏ, ଶେଷ ପର୍ଯ୍ୟନ୍ତ ।

ରମା ବିଦାୟ ନେଇଗଲା ନୂଆ ବାଟରେ ଚାଲିବାର ଶପଥ ନେଇ । ସେ ବୁଝି ଯାଇଥିଲା – ସମାଜଟି ସିନା ପୁରୁଷ ଶାସିତ – ହେଲେ ସବୁ ପୁରୁଷଙ୍କ ହାତରେ ଶାସନ ଦଣ୍ଡ ନ ଥାଏ । ଯେଉଁମାନଙ୍କ ହାତରେ ଥାଏ, ସେମାନେ ସେଇଆକୁ ଦେଖାଇ ଅନ୍ୟ ମାନଙ୍କ ଉପରେ ହାକିମାତି କରୁଥାଆନ୍ତି ଆପେ କିନ୍ତୁ ଥାଆନ୍ତି ଶାସନର ବହୁ ଉର୍ଦ୍ଧ୍ୱରେ । ବିଶ୍ୱନାଥଙ୍କର ନାପିତୁଣୀ ଅପବାଦ କଥା ଗାଁରେ ସମସ୍ତେ ଜାଣନ୍ତି । ମାତ୍ର କେହି ପାଟି ଫିଟାଇ ପାରନ୍ତି ନାହିଁ । ସମସ୍ତଙ୍କର ଭୟ ସେଇ ଦଣ୍ଡକୁ । କାଶୀନାଥମାନେ ବିଦ୍ରୋହ କରିବା କଥା ଚିନ୍ତା କରୁ କରୁ ନେଡ଼ିଗୁଡ଼ କହୁଣୀକୁ ବହିଯାଇଥାଏ । ଅତଏବ କୋଚିଆ ପରି ମୋଡ଼ିମାଡ଼ି ହୋଇ ଆତ୍ମଗୋପନ କରିବା ହିଁ ସାର ହୁଏ ।

ରମା କାଶୀନାଥ ବ୍ୟାପାରଟିକୁ ମନଗହନର ଅଦେଖା କୋଣରେ ତାଲା ପକାଇ ସଂସାର ଆରମ୍ଭ କଲା.... ସୁବିଧା ହେଉଚି – ସଂସାରଟି ଛୋଟ.... ପୂର୍ବପକ୍ଷର ଦୁଇପୁତ୍ର କନ୍ୟା... ଦୁନିଆ ବିଷୟରେ ଜାଣିବା ବୟସର– ଆଉ ନିଜେ ରାଧାମାଧବ... ପଇଁତାଳିଶ ବର୍ଷ ବୟସର ସ୍ୱାସ୍ଥ୍ୟବାନ୍ ପ୍ରୌଢ଼ । ଯୁବତୀ ସ୍ତ୍ରୀର ସନ୍ତୋଷ ବିଧାନ ପାଇଁ ବାସନା ତେଲ ବୋଲି ହେବା କି ଧଳା ପଡ଼ି ଆସୁଥିବା କଲିରେ କଳାବୋଳି ହେବା ପାଇଁ ଆଗ୍ରହର ଅଭାବ ନାହିଁ । ତାଙ୍କର ଜମିବାଡ଼ିର ଦଲାଲି ।

ରାଧାମାଧବ କେତେବେଳେ କୁଆଡ଼େ ଯାଆନ୍ତି, କେତେବେଳେ କୋଉଠୁ ଫେରନ୍ତି, ତା'ର କୌଣସି ଠିକଣା ନ ଥାଏ । ଚଞ୍ଚଳା ଲକ୍ଷ୍ମୀ ସବୁବେଳେ ଏଣେ ତେଣେ ଦୌଡୁଥାନ୍ତି । ତାଙ୍କୁ ଦିନରାତି ଜଣାପଡ଼େ ନାହିଁ । ଉଦ୍‌ଯୋଗୀ ପୁରୁଷ ତାଙ୍କ ପଛରେ ଧାଇଁ ଥାଏ.... କେତେବେଳେ କୋଉଠି ତାଙ୍କର କୃପା କଟାକ୍ଷଟିକେ ପଡ଼ି ଜୀବନ ଧନ୍ୟ ହୋଇଯିବ ତାହା କାହାକୁ ଜଣା ? ଅତଏବ ଧାଉଁ ଥାଅ, ଦଉଡୁ ଥାଅ । ଏହାରି ନାମ ଯେ ଜୀବନ । ରମାର ସେଥି ପାଇଁ ଚିନ୍ତା ନାହିଁ । ଉତ୍ତରାଧିକାର ସୂତ୍ରରେ ସେ ଯେଉଁ ଦୁଇ ପୁତ୍ର କନ୍ୟାଙ୍କର ମାଆ ହୋଇ ବସିଚି, ସେମାନଙ୍କ ପାଇଁ ତା'ର ସମୟ ଥାଏ – ମାତ୍ର ସେମାନଙ୍କର ତା' ପାଇଁ ବେଳ କାହିଁ ? ନୂଆ ନୂଆ ଉଡ଼ି ଶିଖୁଛନ୍ତି... ଆଗ୍‌ରେ ବିଶାଳ ଦୁନିଆଁ – କେତେ ରଙ୍ଗ... କେତେ ଗନ୍ଧ...ତା'ର ଆକର୍ଷଣ

ଏଡ଼ାଇ ଗୃହର ପରିଧି ଭିତରେ ନିଜକୁ ଆବଦ୍ଧ କରି ରଖିବା କ'ଣ ଏଡ଼େ ସହଜ ? ଦରକାର ବା କ'ଣ ? ଯେତେ ଯାହା କଲେ ବି କଲମୀ ଡାଳ କ'ଣ ମୂଳ ଗଛର ଅଂଶ ହୋଇପାରେ ?

ରାଧାମାଧବ ଏସବୁ ଜାଣନ୍ତି ନାହିଁ । ଘର ଭିତର କଥା ବୁଝିବାକୁ ସ୍ତ୍ରୀ ଲୋକଟିଏ ଦରକାର । ଘରର ଲୋକ ଠିକ୍ ସମୟରେ ପାଣିମୁନ୍ଦାଏ, ଭାତ ମୁଠାଏ ପାଇବେ । ଘରେ କାଠିକୁଟା, ଧୂଳିମାଟି ଜମିବ ନାହିଁ....ଆଉ.... ରାଧାମାଧବ ତା'ର ବ୍ୟବସ୍ଥା କରି ପାରିଛନ୍ତି । ରମା ଆସିଲା ଦିନୁ ଅନ୍ତତଃ ଏସବୁ ସମସ୍ୟା ନାହିଁ । ଲକ୍ଷ୍ମୀଙ୍କ ପଛରେ ଧାଇଁବାକୁ ତାଙ୍କୁ ବେଳ ମିଳୁଛି ସେ ସେଇଥିରେ ସନ୍ତୁଷ୍ଟ...

ତାଙ୍କର ଅଧିକାଂଶ ସମୟ ବାହାରେ କଟେ । ପାଞ୍ଚବର୍ଷତଳୁ ପତ୍ନୀ ବିୟୋଗ ହୋଇଥିଲା । ରମା ଶୁଣିଚି, ତାଙ୍କର ମୃତ୍ୟୁ ସ୍ୱାଭାବିକ ନଥିଲା । ରାଧା ମାଧବ ବାହାରୁ ରଙ୍ଗ ସାଉଁଟି ନିଜ ଦେହ ମୁଣ୍ଡରେ ମାଖି ହୋଇ ଆପଣାକୁ ପୃଥିବୀର ସର୍ବଶ୍ରେଷ୍ଠ ଦର୍ଶନୀୟ ପୁରୁଷ ମନେ କରୁଥିବା ବେଳେ ଦୁନିଆ ଲୋକେ ତାଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ ତାଙ୍କୁ ଜୋକର୍ ସାବ୍ୟସ୍ତ କରି ଛାଡ଼ିଥିଲେ । ସେଥିରେ ତାଙ୍କର କୌଣସି ସଂକୋଚ ନଥିଲା– ମାତ୍ର ସୁଲୋଚନାଙ୍କର ଥିଲା । ସେ ନିଜର ବଢ଼ି ଆସୁଥିବା ଦୁଇ ପିଲାଙ୍କର ଭବିଷ୍ୟତ ଆଡ଼େ ହାତ ଦେଖାଇ ତାଙ୍କୁ ରଙ୍ଗର ଦୁନିଆରୁ ବାହାରକୁ ଆଣିବା ନିମନ୍ତେ ଚେଷ୍ଟା କରିଥିଲେ । ମାତ୍ର ସ୍ୱାମୀ ହସରେ ଉଡ଼ାଇ ଦେଇଥିଲେ । କୁକୁରର ପ୍ରକୃତି ହେଉଛି ଭୁକିବା... କାରଣ ଅକାରଣରେ ସେ ନିଶ୍ଚୟ ଭୁକିବ । ସେହି ଡରରେ ଲୋକେ ବାହାରକୁ ଯିବା ଆସିବା ଛାଡ଼ିଦେବେ ନା କ'ଣ ?

ପୁଣି ସୁଲୋଚନାଙ୍କର ଦୁଃଖ କ'ଣ ? ତାଙ୍କର ଘର ସଂସାର ଅଛି । ପିଲାମାନେ ଅଛନ୍ତି । କର୍ତ୍ତୃତ୍ୱ ଦେଖାଇବାକୁ କେତୋଟି ଲୋକ ଅଛନ୍ତି । ସେ ନିଜେ ବି ସବୁ ବେଳେ ତାଙ୍କ ପାଖରେ ଅଛନ୍ତି । ଯା ବୋଲି କ'ଣ ସେ ତାଙ୍କ କାନିତଳେ ରହି ବାଟ ଚାଲିବେ ! ସିଦ୍ଧାନ୍ତ ହେଲା... ତୁଚ୍ଛାଟାରେ ଅଶାନ୍ତି ସୃଷ୍ଟି ନ କରି ସୁଲୋଚନା ନିଜର ସଂସାର ନେଇ ରହନ୍ତୁ । ବାହାର ବିଷୟରେ ମୁଣ୍ଡ ଖେଳାଇବା ତାଙ୍କର ଦରକାର ନାହିଁ । ସେ ଏତେଦିନ ଯେଉଁ ବାଟରେ ଚାଲି ଆସିଛନ୍ତି, ସନ୍ୟାସୀ ହୋଇ ସେଇ ବାଟ ଛାଡ଼ି ଦେଇ ପାରିବେ ନାହିଁ ।

ସୁଲୋଚନା ବୁଝି ନଥିଲେ । ସଂସାର କହିଲେ ଯାହା ବୁଝାଯାଏ, ତାଙ୍କ କପାଳରେ ତାହା ନାହିଁ, ଏଇତକ ବୁଝିବାକୁ ସେ ପନ୍ଦର ବର୍ଷ ସମୟ ନେଲେ । ଶୂନ୍ୟ ସିଂହାସନକୁ ଅନାଇ ଦେବତାଙ୍କର ଧ୍ୟାନ କରିବା ଭଳି ଏକାଗ୍ରତା ତାଙ୍କର ନଥିଲା । ପିଲାମାନେ ବଡ଼ ହେଲେଣି । ନିଜର ଦରକାରରେ ମାଆଙ୍କୁ ଖୋଜନ୍ତି । ସେ ନଥିଲେ ଏ ଘରେ କାହାରି କିଛି ଯାଏ ଆସେ ନାହିଁ... ତେଣୁ...

ରମା ଏସବୁ ଶୁଣିଚି.... ହାଡ଼େ ହାଡ଼େ ବୁଝିଚି, ନିଜର ଦାବୀ ନେଇ ପୁରୁଷର ସିଂହାସନ ତଳେ ଦୀନ ଭାବରେ ଠିଆ ହେବା ଅପେକ୍ଷା ଚୁପ୍ ଚାପ୍ ରହିଯିବା ବରଂ ଶତେଗୁଣ ଭଲ ।ନିଜ ମନ ଭିତରକୁ ଯିଏ ଭଲ କରି ଅନେଇ ଦେଖିଚି, ସିଏ ଜାଣେ, ତାର ସୀମା କୋଉଠି । ନିଜର ପ୍ରୟୋଜନ ମେଣ୍ଟାଇବା ବ୍ୟବସ୍ଥା ସିଏ ଆପେ କରିନେଇ ପାରିବ, ସେଥିପାଇଁ ସଂସାରରେ ଅଯଥା ଅଶାନ୍ତି ସୃଷ୍ଟି କରି ଲାଭ କ'ଣ ? ଏହାକୁ ଯଦି ବୁଝାମଣା କୁହାଯିବ, ତେବେ ସେଇଆ ହେଉ । ଏହାରି ଉପରେ ସଂସାର ତିଷ୍ଠିଚି ।

ରାଧାମାଧବଙ୍କ ପାଇଁ ତେଣୁ କୌଣସି ସମସ୍ୟା ନାହିଁ । ସେ ଯୋଉ ବାଟରେ ଯେମିତି ଚାଲୁଥିଲେ, ଛାତି ଫୁଲେଇ ସେମିତି ଚାଲୁଛନ୍ତି । ଥରଟିଏ ମାତ୍ର ସେ ରମାର ମନ ଭିତରକୁ ଉଙ୍କି ମାରି ଅନାଇଥିଲେ । ସେଠି ଯେମିତି କ'ଣଅଣ୍ଡାଳି ଅଣ୍ଡାଳି ଖୋଜିଥିଲେ । ରମା ସ୍ଥିର ଦୃଷ୍ଟିରେ ତାଙ୍କୁ ଅନାଇ ଠିଆ ହୋଇଥିଲା । ସେ ଦୃଷ୍ଟିରେ କ'ଣ ଥିଲା କେଜାଣି – ରାଧାମାଧବଙ୍କ ମୁଣ୍ଡ ତଳକୁ ହୋଇଯାଇ ଥିଲା । ତଥାପି ସେ ମୁହଁ ଟାଣ ଛାଡ଼ି ନଥିଲେ । ପଚାରି ଥିଲେ... ଶୁଣିଲି କୋଉ କାଶୀନାଥ କୁଆଡ଼େ ତମକୁ ବାହାହବ ବୋଲି ଧନୁଭଙ୍ଗା ପଣ କରି ବସିଥିଲା....

ରମା ସେମିତି ତାଙ୍କ ଆଡ଼କୁ ଅନାଇ କହିଥିଲା... ଯାହା ଶୁଣିଚ ଭୁଲ୍ ଶୁଣିଚ ସେମିତି ହୋଇଥିଲେ, ମୁଁ ତମ ସାଙ୍ଗରେ ବେଦିରେ ବସି ଥାଆନ୍ତି କେମିତି ? କାଶୀ ଭାଇର ବାପା ଏ ପ୍ରସ୍ତାବରେ ରାଜି ହେଲେ ନାହିଁ । ଆଉ ପୁଣି ଝିଅ ଥିଲେ, ପୁଅ ଥିଲେ ଏମିତି ଦଶ ଜାଗାରେ ପ୍ରସ୍ତାବ ପଡ଼େ– ବାହାଘର ହୁଏ କିନ୍ତୁ ଗୋଟିଏ ଜାଗାରେ....

ରାଧାମାଧବ କ'ଣ ଯେମିତି ଭାବିଲେ । ରମାର ମୁହଁରେ ଅପରାଧ ବୋଧର କୌଣସି ଚିହ୍ନ ତାଙ୍କ ଆଖିରେ ପଡ଼ିଲା ନାହିଁ । କହିଲେ କାଶୀନାଥ ତମର ଫେରିବା ବାଟକୁ ଅନାଇ ବସିଚି ବୋଲି ଶୁଣିଲି....

ରମା ଫିକା ହସ ହସିଲା.... କହିଲା ନାରୀ ଜନ୍ମ ପରା ମାଟି ହାଣ୍ଡିଟିଏ ଏଇକଥା ତ ମୁଁ ପିଲାଦିନୁ ଶୁଣିଆସୁଚି.... ଥରେ ଚୁଲୀରେ ବସିଲେ ମାରା... ତା' ପାଇଁ ଆଉ କିଏ କେବେ କୋଉଠି ଦୀପ ଜାଳି ବସିଥାଏ ? ମୋର ସେମିତି କପାଳ କାହିଁ ?

ରାଧାମାଧବ ଭାବୁଥିଲେ । ତାଙ୍କ ଜୀବନର ଦୁଇ ନାରୀଙ୍କୁ ମନେ ମନେ ତଉଲୁଥିଲେ । ସୁଲୋଚନାଙ୍କ କଣ୍ଠରେ ବଜ୍ର ଥିଲା । ନୟନରେ ଅଗ୍ନି ଥିଲା । ସେଇ ଅଗ୍ନି କେବଳ ଆଲୋକ ଦେଇ ନଥିଲା.... ତାଙ୍କ ସଂସାରକୁ ପୂରାପୂରି ଜାଳିପୋଡ଼ି ପାଉଁଶ କରି ଥୋଇଗଲା । ରମା ଆଖିରେ ବି ନିଆଁ ଅଛି । ତେବେ ସେ ନିଆଁ ସଂସାରକୁ ଆଲୋକିତ କରି ରଖିଚି.... ଅନ୍ତତଃ ଏ ପର୍ଯ୍ୟନ୍ତ ସେଥିରେ ବ୍ୟତିକ୍ରମ ହୋଇନାହିଁ । ସୁଲୋଚନା ପ୍ରତିବାଦ କରୁଥିଲେ, ପ୍ରତିରୋଧ କରୁଥିଲେ । ତହିଁରେ ଅସଫଳ ହେଲେ ତୂଣୀରରୁ ବଛା ବଛା ବାକ୍ୟ ବାଣ ମାନ ବାହାର କରି ପ୍ରତିପକ୍ଷକୁ ତହିଁରେ ଜର୍ଜରିତ କରିବାକୁ ଚେଷ୍ଟା କରୁଥିଲେ । ରାଧାମାଧବ ମୂଳରୁ ହିଁ ତାଙ୍କର ପ୍ରତିପକ୍ଷ ।

ରମାକୁ ରାଧାମାଧବ ଠିକ୍ ବୁଝିପାରି ନାହାନ୍ତି । ସେ ପାଟି ଖୋଲେ ନାହିଁ । ଯୁକ୍ତି ତର୍କ ଭିତରକୁ ଯାଏ ନାହିଁ । ଯାହା କହିବାର କଥା ଥରଟିଏ କହିଦିଏ । ମନକୁ ନ ପାଇଲେ ବାମ ଆଖିଟି ଛୋଟ ହୋଇଯାଏ । ସେତିକ ତାର ଅସନ୍ତୋଷର ଚିହ୍ନ । ବେଶ ଭୂଷାରେ ମନନାହିଁ... କପାଳରେ ଲାଲ ଟିପାଟିଏ । ବେକରେ ସରୁଚେନ୍ ଆଉ ହାତରେ ଦି'ପଟ ଚୂଡ଼ି – ସେତିକି ସଧବାର ସନ୍ତକ। ଲୁଗାପଟା ଯାହା ଯେମିତି ମୋଟା ରୋଟା ଖଣ୍ଡେ ମିଳିଗଲା... ଖଣ୍ଡକୁ ପାଞ୍ଚ ଖଣ୍ଡ ନାହିଁ । ତେଣୁ ବାଛ ବିଚାର ବି ନାହିଁ... କ୍ରିମ ପାଉଡ଼ର ତ ଦୂରର କଥା... ବାଳରେ ତେଲ ହାତ ଟିକିଏ ବାଜେ କି ନ ବାଜେ... ରାଧାମାଧବ ବେଳେ ବେଳେ ଆଶ୍ଚର୍ଯ୍ୟ ହୁଅନ୍ତି । ଯୌବନରେ ଯୋଗିନୀ ସାଜି ବୁଲୁଥିବା ରମାର, ଅବସ୍ଥା ପାଇଁ ସେ ନିଜକୁ ଦାୟୀ କରନ୍ତି । ମନହୁଏ, କେବେ ତାକୁ ଏ କଥା କହିବେ...

କହିବେ ଯେ କ'ଣ କହିବେ ? ରମା ବିରୁଦ୍ଧରେ ତ ତାଙ୍କର କୌଣସି ଅଭିଯୋଗ ନାହିଁ । ପିଲା ଦୁହିଙ୍କ ପ୍ରତି ରମାର ସଜାଗ ଦୃଷ୍ଟି ରହିଚି । ସେମାନେ ତାକୁ ମା ବୋଲି ମାନନ୍ତୁ ଅବା ନ ମାନନ୍ତୁ । ରମା ନିଜ ଆଡୁ ସେମାନଙ୍କ ପ୍ରତି ନିଜ କର୍ତ୍ତବ୍ୟରେ ହେଳା କରେ ନାହିଁ । ନିଜ ପାଇଁ ରମାକୁ ତାଙ୍କୁ କିଛି କହିବାକୁ ପଡ଼େ ନାହିଁ । ତାଙ୍କୁ ବୁଝିବାକୁ

ରମା ଖୁବ୍ ବେଶୀରେ ଗୋଟିଏ ସପ୍ତାହ ନେଇଥିଲା... ତା' ପରଠୁ ସବୁ ଚାଲିଚି । ଚମତ୍କାର ରୁଟିନ ମାଫିକେ...ରମା ଜାଣେ, କେତେବେଳେ ତାଙ୍କର କଣ ଦରକାର....

ସବୁଚାଲେ ଠିକ୍‌ଠାକ୍ । ତଥାପି ରାଧାମାଧବ ବୁଝିପାରନ୍ତି, ସେଥିରେ ଯେମିତି ପ୍ରାଣ ନାହିଁ । ଯାନ୍ତ୍ରିକ ରୀତିରେ ସବୁ ହୋଇଯାଉଚି ସିନା, ମମତାର ସ୍ପର୍ଶରୁ ସବୁ ଯେମିତି ଦୂରେଇ ଯାଉଚି । ସେଇ କଥା ସେ ରମାକୁ କହିଲେ । ପଚାରିଲେ ତମର କ'ଣ ଏଠି କିଛି ଅସୁବିଧା ହେଉଚି ?

ରମା ଆଶ୍ଚର୍ଯ୍ୟ ହେଲା । କହିଲା କାଇଁ ନା ତ ! ହଠାତ୍ ଏଭଳି ପ୍ରଶ୍ନ ପଚାରିବାର ଅର୍ଥ ?

ରାଧାମାଧବ କହିଲେ – ମନେହେଲା ତମେ ଯେମିତି ଏଠି ଶାନ୍ତିରେ ନାହଁ ।

ରମା କହିଲା... ଶାନ୍ତି ତ ଗଛର ଫଳ ନୁହେଁ ଯେ କିଏ କାହାକୁ ପାରି ଆଣିଦବ ! ଯାହାର ଯେମିତି କପାଳ... ରାଧାମାଧବ ଉଦାର ହେଲେ । କହିଲେ, ଗାଁକୁ ଫେରିଗଲେ ଯଦି ତମେ ଖୁସିରେ ରହିପାରିବ, ତେବେ ମୋର ସେଥିରେ ଆପତ୍ତି ନାହିଁ । ମୁଁ ଜାଣେ, ଜୋର୍ ଖଟାଇଲେ, ସେବା ମିଳେ – ଆନୁଗତ୍ୟ ମିଳେନାହିଁ...

ରମା କହିଲା ନାରୀଟିଏ ଯେତେବେଳେ କାହାର ହାତଧରି ଚିର ଜୀବନ ଲାଗି ବାହାରକୁ ପାଦ ବଢ଼ାଏ, ସେତେବେଳେ ବାପଘରର ବାଟ ସେ ପୋଡ଼ି ଦେଇ ଆସେ । ବୋଉର ଅବସ୍ଥା ତମକୁ ଅଛପା ନାହିଁ । ତା' ଉପରେ ମୁଁ ଆଉ ବୋଝ ହେବାକୁ ଚାହେଁନା...

ରାଧାମାଧବ ଜଣାଇଲେ – ମୁଁ ବୋଉଙ୍କ କଥା କହୁନାହିଁ....ହୁଏତ ଆଉ କେହି ବା ଆଉ କେଉଁଠି କିଏ....

ରମା ବୁଝିଲା । କହିଲା ତମ ମନରେ ସନ୍ଦେହର ଯେଉଁ ଭୂତ ପଶିଚି, ମୁଁ ଯେତେ ଯାହା କଲେବି ତା' ଦୂର ହେବ ନାହିଁ । ମୁଁ ଜାଣେନା, ମୋର ଅପରାଧ କ'ଣ... ତେବେ ତମ ପାଖରେ ମୁଁ ଆଉ ମୋର ପରିବାର ଚିର ଜୀବନ ପାଇଁ ଋଣୀ ।

ରାଧା ମାଧବ ଜାଣନ୍ତି । ରମା ଯେଉଁ ବିଷୟରେ ସୂଚନା ଦେଉଚି, ସେ କଥା ଆଲୋଚିତ ନ ହେବା ଭଲ... କାହାରି ଅସହାୟତାର କଥା ଉଖାରି ତହିଁରେ ପୌରୁଷ ଦେଖାଇବା ଭଳି ନୀଚତା ତାଙ୍କର ନାହିଁ । ସେ ବ୍ୟବସାୟୀ ଲୋକ । ଗୋଟାଏ ହାତରେ

ଧରିଲେ, ଅନ୍ୟ ହାତରେ ଦିଅନ୍ତି । ଯାହା ସେ କରିଛନ୍ତି, ନିଜ ସ୍ୱାର୍ଥ ପାଇଁ କରିଛନ୍ତି । ରମା କ'ଣ ସେ କଥା ଜାଣି ନାହିଁ ?

ବିବାହ ପୂର୍ବରୁ ଯେଉଁ କରୁଣ ଘଟଣାଟି ଘଟିଯାଇଥିଲା, ତାହା ରମାର ମନେ ପଡୁଥିଲା । ଆପଣାର ସ୍ୱାର୍ଥ ହାସଲ କରିବା ପାଇଁ ମଣିଷ କେ ତଳକୁ ଖସିଯାଇପାରେ ବିଶ୍ୱନାଥ ତାହା ସେଦିନ ଦେଖାଇ ଦେଇଥିଲେ । କିମ୍ବା ବିଚାର କରି ଦେଖିବାକୁ ଗଲେ ବିଶ୍ୱନାଥ ଯାହା କରିଥିଲେ, ତାହାହିଁ ହେଉଛି ସଭ୍ୟ ମଣିଷ ଜାତିର ଏକମାତ୍ର ପରିଚୟ । ସେମାନେ ହିଁ ସବୁବେଳେ ଅନ୍ୟର ଦୋଷ ଦୁର୍ବଳତା ଶୁଙ୍ଘି ବୁଲୁଥାଆନ୍ତି । ପାଣି ଯେମିତି ବନ୍ଧର ଦୁର୍ବଳ ସ୍ଥାନକୁ ଫଟାଇ ଦେଇ ବାଟେ ପ୍ରଚଣ୍ଡ ବେଗରେ ବହିଯାଇ ପ୍ରଳୟ ସୃଷ୍ଟି କରେ ଏମାନେ ବି ସେମିତି ମଣିଷର ଦୁର୍ବଳ ଜାଗାଟିକୁ ଜାବୁଡ଼ି ଧରି ନିଜର ସ୍ୱାର୍ଥସିଦ୍ଧି କରି ନିଅନ୍ତି । ରମା ବୋଉ ସହଜେ ନାରୀ– ଏଣେ ପୁଣି ରମା – ବାପାଙ୍କର ଅସୁସ୍ଥତା ସମୟରେ ନିଜର ଅଭାବ ମେଣ୍ଟାଇବା ପାଇଁ ବିଶ୍ୱନାଥଙ୍କ ପାଖରେ ମୁଣ୍ଡ ବିକି ବସିଥିଲେ, ବିଧବାର ଶେଷ ସମ୍ବଳ ଭିଟାମାଟି ଅରାକ ବିଶ୍ୱନାଥଙ୍କ ପାଖରେ ବନ୍ଧା ପକାଇ ।

କାଶୀନାଥ ଅବଶ୍ୟ ରମା ବିଷୟରେ ତା'ର ମନକଥା ଘରେ କହି ନଥିଲା । କହିବା ଭଳି ସାହସ ତାର ନଥିଲା । ସମାଜର ଆଢୁଆଳରେ ପରଝିଅ କାନ୍ଧରେ ହାତ ଥୋଇ ତା' କାନରେ ଭଅଁର ଭଳି ଗୁଞ୍ଜନ କରିବା ଗୋଟାଏ କଥା, ଆଉ ଦୋର୍ଦ୍ଦଣ୍ଡ ପ୍ରତାପ ପୋଷଣାହାରୀ ବାପ ଆଗରେ ସେଇ କଥା ସ୍ୱୀକାର କରିଯିବା ଆଉ ଗୋଟାଏ କଥା ଯୁଗେ ଯୁଗେ ବୀର ପୁଙ୍ଗବମାନେ ପ୍ରଥମଟିରେ ତ ବେଶ୍ ସଫଳତା ହାସଲ କରିନିଅନ୍ତି, ଦ୍ୱିତୀୟ କଥାଟି ଉଠିଲା ବେଳକୁ... ନାଃ– ସେ କଥା ଆଉ ଆଲୋଚନା କରି ଲାଭ ନାହିଁ । ଦାୟିତ୍ୱ ହୀନ ଭୋଗର ପରିଣାମ ଆବହମାନ କାଳରୁ ରମାମାନଙ୍କର କରୁଣ ପରିଣତିର ରକ୍ତ ରଞ୍ଜିତ ଇତିହାସରେ ଲେଖା ହୋଇଆସୁଛି ।

ସତର୍କ ବିଶ୍ୱନାଥ ରମା ବୋଉଙ୍କୁ ଚରମ ପତ୍ର ଧରାଇ ଦେଇଥିଲେ । ହୁଏତ ସପ୍ତାହକ ଭିତରେ ରମାର ବିବାହ ରାଧାମାଧବଙ୍କ ସହ କରିବାକୁ ହେବ– ନଚେତ ଭିଟା ଛାଡ଼ି ନିଜର ରାସ୍ତା ଦେଖିବାକୁ ହେବ । କରୁଣ ଅନୁନୟର ଉତ୍ତରରେ ବିଶ୍ୱନାଥ ବୁଝାଇ ଦେଇଥିଲେ, ବଡ଼ଦାଣ୍ଡ ଭଳି ଫରାକାତ୍ ଜାଗା ପୁଣି ରମା ଭଳି ବାର ବୁଲୀ

ଝିଅ ଥାଉ ଥାଉ ଆଶ୍ରୟର ଚିନ୍ତା କ'ଣ ? କାନରେ ହାତ ଦେଇ ବୋଉ ସେଠୁ ଫେରି ଆସି ଥକ୍କା ହୋଇ ବସି ପଡ଼ିଥିଲା ।

ରମା ଶୁଣିଲା ପରେ ତା'ର ଛାତି ଭିତରେ କ'ଣ ହେଲା, ତା' ସେ ଜାଣିନାହିଁ । ମୁଣ୍ଡ ଘୁରାଇ କଚାଡ଼ି ହୋଇ ପଡ଼ିଲା । ଚେତା ଆସିଲା ବେଳକୁ ଦେହରେ ତାତି ଭର୍ତ୍ତି । ରମାର ଅବସ୍ଥା ଦେଖି ଦୟାବନ୍ତ ପଡ଼ୋଶୀମାନେ ବାହାଘର ଘୁଞ୍ଚାଇ ଦେବାକୁ ବିଶ୍ୱନାଥଙ୍କୁ ଅନୁରୋଧ କରିବାକୁ ଯାଇ ବ୍ୟଙ୍ଗ ବାଣରେ ଜର୍ଜରିତ ହୋଇ ବାହୁଡ଼ିଥିଲେ । ରମା କ'ଣ ଭାବୁଥିଲା ? ଭାବୁଥିଲା କି କାଳେ କାଶୀନାଥ... ନିଃଶ୍ୱାସ ଚାଲୁଥିଲା ଯାଏ ଆଶା... ବାହାଘର କିନ୍ତୁ ବନ୍ଦ ହେଲା ନାହିଁ । ଅଚେତନ କନ୍ୟାକୁ ଧରାଧରି କରି ଯେତେବେଳେ ବେଦିକୁ ଅଣାଯାଉଥିଲା, ସେତେବେଳେ ଏଇ ଅପୂର୍ବ ଘଟଣା ଦେଖିବାକୁ ଗାଁ ସାରା ଭାଙ୍ଗିପଡ଼ିଥିଲା । ସେଇ ଅଚେତନ ଅବସ୍ଥାରେ ଇତିହାସ ସୃଷ୍ଟି କରି ରମା ଯେତେବେଳେ ବିଦା ହୋଇଗଲା, ସେତେବେଳେ ବି ତାଙ୍କର ଯୋଗନିଦ୍ରା ଭାଙ୍ଗିଲା ନାହିଁ । ପଥରରେ କ'ଣ ପ୍ରାଣ ଥାଏ ?

ତା'ପରେ ଏଇ ଜୀବନ... ବିଶ୍ୱନାଥ କୁଆଡ଼େ କହିଥିଲେ – ମାଇକିନିଆ ଝିଅର ଜୀବନ ଯେ କଉମାଛର ଜୀବନ । ତତଲା ତେଲ କରେଇରୁ ଖପ୍ କରି ପାଣିକି ଡେଇଁ ପଡ଼ିବା ଭଳି ଭେଳିକି ସେମାନେ ଦେଖାଇ ପାରନ୍ତି । ହେଲେ ଅବା ହୋଇଥିବ । ନ ହେଲେ ତା'ର ସେତେବେଳେ ଯୋଉ ଅବସ୍ଥା ସେଥିରେ ସିଏ ଯେ ପୁଣି ଉଠି ଠିଆ ହୋଇପାରିବ, ଏ କଥା କିଏ ଜାଣିଥିଲା ? ବିଶ୍ୱନାଥ ଅବା କୋଉ ଭାବିଥିବେ ? ସିଏତ ସେତେବେଳେ ପାପ ବିଦାୟ କରିବାର ଆନନ୍ଦରେ ମତୁଆଲା ହୋଇ ପୁଅର ଦୋଳ ମୁକୁଟ ଦେଖିବାର ସ୍ୱପ୍ନରେ ବିଭୋର ଥିବେ ।

ରମା ଉଠିଲା । ସମୁଦ୍ର ଭଳି ଦୁଃଖ ଯାହାର ଅନନ୍ତ, ଶିଶିର ଟୋପା ଭଳି ବିନ୍ଦୁଏ ଦୁଃଖ ତାକୁ ଦୋହଲାଇ ଦେଇ ତା' ବାଟରେ ଚାଲିଗଲା । ଯାହାର ଭୋଗିବାକୁ ଥାଏ, ତା ଦିନ କୋଉ ଏମିତିରେ ସରେ ?

ରାଧାମାଧବ ସଂସାରୀ ମଣିଷ । ଏ ପରିବାର ରମାଠୁ ଯାହା ଦାବୀ କରୁଥିଲା, ତାହା ସେ କଡ଼ା ଗଣ୍ଡାରେ ମେଣ୍ଟାଇ ଦେଉଛି । ଏ ବିଷୟରେ ଅନ୍ତତଃ କାହାରି ଆଙ୍ଗୁଠି ଉଠାଇବାର ସୁଯୋଗ ନାହିଁ । ତେବେ ରାଧାମାଧବଙ୍କର ମନ ବୁଝୁନାହିଁ । ସେ ଚାହୁଁଛନ୍ତି, ପିତୁଳା ଦେହରେ ପ୍ରାଣ ସଂଚରୁ । ମରଣର ଶୀତଳ ପରିବେଶରେ ଜୀବନର ଉଷ୍ଣତା

ଭରିଯାଉ... ହେଲେ ସେ ଭୁଲିଯାଉଥିଲେ ଯେ ସୁବର୍ଣ୍ଣସୀତା କେବେ ତୁଣ୍ଡରୁ ପଦଟିଏ ବଚନ କାଢ଼େ ନାହିଁ । ତାର ସେ ଶକ୍ତି ନଥାଏ ।

ରମା ଜୀବନର ସରସତା ସବୁଦିନ ପାଇଁ ଲିଭି ଯାଇଥିଲା । ତାର ମନେ ହେଉଥିଲା, ସିଏ ଯେମିତି ନୁଖୁରା ସଳିତାଟିଏ ! ଆଲୁଅ ଅପେକ୍ଷା ତା'ଠୁ ଧୂଆଁ ବାହାରୁଚି ବେଶି–ଯେତେ ଶୀଘ୍ର ଲିଭିଯାଏ, ସେତେ ମଙ୍ଗଳ....

ଏତିକି ବେଳେ ପଲେଇ ପରିବାରରେ ଗୋଟିଏ ଘଟଣା – ନା'ତାକୁ ବରଂ ଦୁର୍ଘଟଣା କୁହାଯାଉ – ଘଟିଗଲା, ରାଧାମାଧବ ନିଜ ଧନ୍ଦାରେ ବ୍ୟସ୍ତ । ଦୁଇସନ୍ତାନଙ୍କର ଦୁଇଟି ଅଲଗା ବୃତ୍ତ । କଣ କରନ୍ତି, କୁଆଡ଼େ ଯାଆନ୍ତି, କେତେ ବେଳେ ଫେରନ୍ତି, ସେ କଥା ଘରର ଘରଣୀ ରମା ବୁଝେ ନାହିଁ । ଥରେ ପଚାରିବାକୁ ଚେଷ୍ଟା କରି ଇଂରେଜୀ ଧମକ ଖାଇ ନୀରବି ଯାଇଥିଲା । ରାଧାମାଧବଙ୍କର ଏସବୁ ଦେଖିବାକୁ ସମୟ ନାହିଁ । ନିୟନ୍ତ୍ରଣହୀନ ଜୀବନ ପାଇଁ ଭାଇ ଭଉଣୀଙ୍କ ଭିତରେ ସତେ ଯେମିତି ପ୍ରତିଦ୍ୱନ୍ଦ୍ୱିତା ଚାଲିଥାଏ ।

ରମାର ଆଖିରେ ପଡ଼େ, କେଉଁ ଏକ ବ୍ୟାପାରକୁ ନେଇ ଦୁଇଜଣଙ୍କ ଭିତରେ ପ୍ରାୟ କଥା କଟା କଟି ଚାଲୁଚି । ରମା କାନ ଦିଏ ନାହିଁ । ସେ ଜାଣେ, ଏ ଘରର ହାନିଲାଭରେ ପାଟି ଫିଟାଇବାର ଅଧିକାର ତାକୁ ଦିଆଯାଇନାହିଁ । କପା କିଆରୀରେ ଗୋରୁ ମୁଣ୍ଡ ଥପା ହେଲାଭଳି ପରିବାର ପାଇଁ ସିଏ ଗୋଟିଏ ପତିଆରା ମାତ୍ର । ଆଖି ତେଣୁ ଯାହା ଦେଖେ, ତା ମନ ପାଖରେ ପହଞ୍ଚେ ନାହିଁ ।

ସେ ଦିନ ପ୍ରାୟ ଏଗାରଟା ହେବ । ରମା ଶୋଇବା ଘରେ ଅପେକ୍ଷା କରୁଛି । ରାଧାମାଧବ ଦୁଇଦିନ ହେବ ନାହାନ୍ତି । ହୁଏତ ଆଜି ଫେରିବେ । ଏବେ ବି ଫେରିପାରନ୍ତି । ହଠାତ୍ ଉପର ମହଲାରେ କିଛି ଶବ୍ଦ ଶୁଣାଗଲା । ଧଡ଼୍‌କରି କବାଟ ବନ୍ଦ ହେଲା ଭଳି ଲାଗିଲା... ତା' ସହିତ ଶୁଣାଗଲା... ଜତୁର କଣ୍ଠ । ଚାକରକୁ ଡାକି ସେ ଆଦେଶ ଦେଉଥାଏ ଦୁଆର ଜଗି ବସିବାକୁ । ଘରେ କୁଆଡ଼େ ଚୋର ପଶିଚି । ଜତୁ ତାକୁ ବନ୍ଦୀ କରି ପୋଲିସ୍ ଡାକି ବାକୁ ବାହାରିଚି । ଚୋର ଯେମିତି ପଳେଇ ନ ଯାଏ ।

ରମାର ଛାତିରୁ ଅତଡ଼ା ଖସି ପଡ଼ିଲା । ଘର ଭିତରେ ଚୋର । ପୁଣି ଏତେ ଲୋକ ଥାଉଁ ଥାଉଁ ? କୋଉ ବାଟେ ଆସିଲା ? କେତେବେଳେ ପଶିଲା ? ରମା ଅଗତ୍ୟା କଥାଟାକୁ ବୁଝିବାକୁ ବାହାରି ଆସିଲା...

ସେ ଜାଣେ ଛତ୍ରୁ ତାକୁ କିଛି କହିବ ନାହିଁ । ଭାଇ ଭଉଣୀ ଦିହେଁ ତା ସହିତ କଥାବାର୍ତ୍ତା କରନ୍ତି ନାହିଁ । ରମା ସେମାନଙ୍କ ପାଇଁ ଘରର ଆଉ ପାଞ୍ଚଜଣ ଭଳି ଜଣେ ସେବିକା ।

ବାହାରକୁ ଆସି ପ୍ରଥମେ ଚାରି ଆଡ଼କୁ ଅନାଇ ରମା ଯାହା ଲକ୍ଷ୍ୟ କଲା, ତାହା ହେଉଛି, ଲଡୁର ଅନୁପସ୍ଥିତି । ଅଥଚ ଘରେ ଯାହା ଘଟେ, ସବୁଥିରେ ତା'ରି ପାଟି ଆଗ ଶୁଭେ । ରମା ଚାକର ଆଡ଼କୁ ଅନାଇଲା । ତା' ଆଖିରେ କେମିତି ବିହ୍ୱଳ ଦୃଷ୍ଟି । ଚାପା ଉତ୍ତେଜନା ଫୁଟି ଦିଶୁଚି । ତାକୁ ପଚାରିଲା, ''ଦେଈ କାହାନ୍ତି'' ? ସେ ତଳକୁ ମୁହଁକଲା.... ଅର୍ଥାତ୍ ସେ ଜାଣେ – କିନ୍ତୁ କହିବ ନାହିଁ...

ହଠାତ୍ ରମା ମନ ଭିତରେ ବିଜୁଳି ଖେଳିଗଲା... ତେବେ କ'ଣ ଶେଷରେ.. ନାଃ... ତାକୁ ଏ ବନ୍ଦ ଦ୍ୱାରର ରହସ୍ୟ ଉଦ୍‌ଘାଟନ କରିବାକୁ ହେବ... ଗୁଣମଣି ଭାଇ ଯାଇଛନ୍ତି ପୁଲିସ୍ ହାତରେ ପଳେଇ ପରିବାରର ଅବଶିଷ୍ଟ ମାନ ସମ୍ମାନ ଟିକିକ ଟେକି ଦେବାକୁ । ବାପା ଲକ୍ଷ୍ମୀଙ୍କ ପଛରେ ଗୋଡ଼ାଇ ଗୋଡ଼ାଇ କୋଉ ବାରରେ କି ହୋଟେଲ-ସୁଟ୍‌ରେ ଥକ୍କା ମେଣ୍ଟାଉଥିବେ.... ଘରର ମାନ ହେଉଛି ବୋତଲର ଜିନ୍ – ଥରେ ବାହାରକୁ ବାହାରି ଗଲେ ପୁଣି ବୋତଲ ଭିତରକୁ ବାହୁଡ଼ିବା ଯେ, ତା' ପାଇଁ କାଠିକର ପାଠ – ତାହା ଏମାନେ ବୁଝିବେ ନାହିଁ ।

ରମା ମାନୁ ବା ନମାନୁ ଦୁନିଆ ଆଖିରେ ସେ ଏଇ ପରିବାରର ସଦସ୍ୟ । ପିଲାମାନେ ସ୍ୱୀକାର କରନ୍ତୁ ଅବା ନ କରନ୍ତୁ, ପରିବାର ପାଇଁ ତା'ର ଗୋଟାଏ ଦାୟିତ୍ୱ ରହୁଚି... ତାକୁ ସେ ଏଡ଼ାଇ ଦେଇପାରିବ ନାହିଁ । କାଲି ରାଧାମାଧବ ଯେତେବେଳେ ଆସି ପଚାରିବେ.... ତମରି ଆଖି ଆଗରେ ପରିବାରର ସମ୍ମାନ ରାଜ ରାସ୍ତାକୁ ଚାଲିଗଲା, ଆଉ ତମେ ତାକୁ ସମ୍ଭାଳି ରଖିପାରିଲ ନାହିଁ ? ସେ ତାଙ୍କୁ କ'ଣ ଉତ୍ତର ଦେବ ?

ସେ ଜାଣେ ସାରୁ ପତ୍ର ଉପରେ ପ୍ରଥମ ବର୍ଷାର ଜଳ ବିନ୍ଦୁଟିଏ ଭଳି ଏ ପରିବାରରେ ତା'ର ସ୍ଥିତି । ଘରେ ଥାଇ ବି ସେ କେହି ନୁହେଁ । କେହି ତାକୁ ନମାନିଲେ ବି ସେ ତା'ର କର୍ତ୍ତବ୍ୟରେ ହେଳା କରିବ କାହିଁକି ?

ରୁମ୍‌ରେ ତାଲା ଦେଇ ଭାଇ ଯାଇଛନ୍ତି ଚୋର ଧରାଇବାକୁ । ବାହାରେ ବସିଚି ସତର୍କ ପ୍ରହରୀ । ତେବେ ସେଥିରେ କିଛି ଅସୁବିଧା ନାହିଁ । ପୁରୁଣା କାଳିଆ ଘର, ଗୋଟିଏ ଘରୁ ଆର ଘରକୁ ଯିବାକୁ ବାଟ । ଉତ୍ତେଜନାରେ ଏମାନେ ହୁଏତ ସେ କଥା ଭୁଲି ଯାଇଛନ୍ତି । ରମା ଭୁଲି ନାହିଁ ।

ରମା ଚୁପ୍ ଚାପ୍ ସେଠୁ ଫେରିଆସିଲା ।

ଘର ଭିତରେ ଯୁଗଳ ମୂର୍ତ୍ତିଙ୍କୁ ଦେଖି ରମା ଆକାଶରୁ ପଡ଼ିଲା, ଯଦିଓ ସେ ଏହି ଭଳି କିଛି ଗୋଟାଏ ଆଶଙ୍କା କରିଥିଲା । ସହବାସୀ ଯୁବକଟିର ଆଶ୍ରୟ ଛାଡ଼ି ଲତୁ ଦୁମ୍ କରି ରମାର ପାଦତଳେ କଚାଡ଼ି ହୋଇ ପଡ଼ିଲା । ତା' ଦେହ ଥର ଥର ହୋଇ କମ୍ପୁଥିଲା । ତା' ଆଡ଼କୁ ଅନାଇ ରମା ଭାବୁଥିଲା କଥାରେ ଥରକୁ ଥର ତାକୁ ଢାଙ୍କି ଦେଉଥିବା ଏଇ ବାରୁଦ କାଠିଟି କେଡ଼େ ଅସହାୟ, କେତେ ଦୁର୍ବଳ ସତେ !

ଅଥବା ଦୁର୍ବଳତା ହେଉଛି ସ୍ୱେଚ୍ଛାଚାରିତାର ଅନ୍ୟ ଏକ ରୂପ !

ସେଇ ପୁରୁଣା ସମସ୍ୟା । ନିର୍ଦ୍ୱନ୍ଦ୍ୱ ଉପଭୋଗରେ ପ୍ରତିବନ୍ଧକ ସୃଷ୍ଟି ଜନିତ ଦୁଇ କ୍ରୁଦ୍ଧ ଶ୍ୱାନଙ୍କର ଯୁଦ୍ଧ ଘୋଷଣା । ଏ କାଳର ପ୍ରେମରେ ବାସନା ଥାଏ – ଆନୁଗତ୍ୟ ନ ଥାଏ । ପ୍ରେମ ସେମାନଙ୍କ ପାଇଁ ଏକ ଦେହଜ ବ୍ୟାପାର – କ୍ଷୁଧା, ତୃଷା ଭଳି ଏକ ନିତ୍ୟ କ୍ରିୟା । ସେଥିରେ ସ୍ଥାନ କାଳ ପାତ୍ରର ବିଚାର ନ ଥାଏ । ସଂସାର ସାରା ଫୁଲ ଫୁଟିଚି... ଭଅଁର ବି ମେଳା ମେଳା ବୁଲୁଛନ୍ତି । ଗୋଟିକରେ ବସି ଆଉ ଗୋଟିକ ପାଖକୁ ଉଡ଼ି ଯାଉଛନ୍ତି । ପଛକୁ ଫେରି ଅନାଇବା ସେମାନଙ୍କ ସ୍ୱଭାବ ନୁହେଁ । ତେବେ ବେଳେବେଳେ ଏମିତି ବି ହୋଇଯାଏ । ଆଗକୁ ଉଡ଼ି ଯାଇଥିବା ଭଅଁରଟି କ'ଣ ମନେ କରି ପଛକୁ ଅନାଇ ଯଦି ଦେଖେ ଯେ, ତା'ର ଆସନଟି ଆଉ ଶୂନ୍ୟ ନାହିଁ, ତେବେ....

ଲତୁର କଥାରୁ ସେଇଆ ଜଣାଗଲା । ଗୋଟିଏ ଫୁଲକୁ ନେଇ ଦୁଇ ଭଅଁରଙ୍କର ପ୍ରତିଦ୍ୱନ୍ଦ୍ୱିତା ଶେଷରେ ଆସି ବନ୍ଦୀ ହୋଇଚି ପଲେଇ ପରିବାରର ଅନ୍ତଃପୁରରେ । ଲତୁ ସହିତ ସମୀରର ଅନ୍ତରଙ୍ଗତାକୁ ସତର୍କତାର ସହିତ ଲକ୍ଷ୍ୟ କରୁଥିବା ଜତୁ ତାକୁ ନିଜ ଇଲାକା ଭିତରେ ଧରିଚି । ପ୍ରତିଶୋଧର ନିଶାରେ ଅନ୍ଧ ହୋଇ ଏତିକି ବି ବୁଝିନାହିଁ ଯେ, ସମୀରକୁ ପୁଲିସ୍ ହାତରେ ବନ୍ଧାଇବା ଆଉ ନିଜ ନାକ କାଟି ପର ହାତରେ ଦେବା ସମାନ କଥା....

ମୁହୂର୍ତ୍ତକ ମଧ୍ୟରେ ରମା ଏ ସବୁ ଭାବିଗଲା.... ଜତୁ ଗଲାଣି ଅନେକ ବେଳୁ । ହୁଏତ ସିପାହୀ ସନ୍ତ୍ରୀ ନେଇ ଫେରୁଥିବ । ଏଇ ମୁହୂର୍ତ୍ତରେ ଯାହା ହେଲେ କରିବାକୁ ହେବ । ଯାହା ସେ କରିବାକୁ ଯାଉଚି, ଗୋଟିଏ ପରିବାରର ମାନସମ୍ମାନ ହୁଏତ ବଂଚିଯିବ । ଅବିବାହିତା ଝିଅଟିର ମୁହଁରେ କଳଙ୍କର ଦାଗ ଲାଗିବ ନାହିଁ । ହେଲେ

ତା'ର କ'ଣ ହେବ ? ତା'ର ସମ୍ବଳ ଭିତରେ ଏଇ ଦେହଟି । ଏଇଆକୁ ନେଇ ଅତୀତରେ କେତେ ନାଟକ ହୋଇଚି କିଏ କହିଛି, ଅଲକ୍ଷଣି, କିଏ କହିଚି ସତ୍ୟାନାସୀ.... ଶେଷରେ ଯୋଉ ଚରିତ୍ରକୁ ନେଇ ହିନ୍ଦୁନାରୀ ଗର୍ବକରେ, ତାରି ଦେହରେ ବି ସେମାନେ ମେଞ୍ଚା ମେଞ୍ଚା ପଙ୍କ କାଦୁଅ ଲେପିଦେଲେ... ଅଥଚ ଈଶ୍ବର ଜାଣନ୍ତି, ପ୍ରକୃତ ସତ୍ୟ କଣ ! ସୀତା ସାବିତ୍ରୀଙ୍କ ଦେଶରେ ଜନ୍ମ ହୋଇଚି ଯେତେବେଳେ, ଏତିକି ତା'ର ପ୍ରାପ୍ୟ ।

ଏଇ ଦେହ କେତେ ନିନ୍ଦା ଶୁଣିଚି । ନାକଟେକା, ମୁହଁଛିଅଡ଼ା ଭିତରେ ଜୀବନଟା କଟିଯାଇଚି । 'ଆହା' ପଦଟିଏ ଶୁଣାଇବାକୁ କାହାରି ମନ ଡାକିନାହିଁ । ଏ ଯେଉଁ ଘଟଣା ଘଟିବାକୁ ଯାଉଛି, ହୁଏତ ଆଉ କେତେ ମେଞ୍ଚା କାଦୁଅ ତା' ଆଡ଼କୁ ଫିଙ୍ଗା ଯିବ । ସେଥିରେ ଅବା ତା'ର କ୍ଷତିବୃଦ୍ଧି କ'ଣ ହେବ ? ବରଂ ଆଜିଯାଏ ବାର ନିନ୍ଦା ଅପବାଦ ଭିତରେ ଯେଉଁ ଜୀବନ କଟି ଆସିଛି ତା ଗୋଟିଏ ଭଲ କାମରେ ଲାଗିବ । ତା'ର ଯାହା ହେବାର ହେଉ, ଏ ପରିବାରର ମନ୍ନରେ ଆଞ୍ଚ ନ ଆସୁ ।

ରମା ମନସ୍ଥିର କରି ନେଲା ।

ଲଡୁ ଆଡ଼କୁ ଅନାଇ କହିଲା ତୁ ତୋ' ରୁମ୍‌କୁ ଚାଲିଯା । ଲଡୁ କଥା ମାନିଲା । ତା' ପରେ ସବୁ ଘଟିଗଲା ବିଜୁଳୀ ଗତିରେ । ଜଡୁ ଆସିଲା ଯଥାରୀତି ପୁଲିସ୍ ନେଇ । କବାଟ ଫିଟାଇ ସମୀର ସାଥିରେ ତାକୁ ଦେଖି ଭୂତ ଦେଖିଲା ଭଳି ଚମକି ପଡ଼ିଲା... ତା ପାଟିରୁ ବାହାରି ଆସିଲା – ତମେ !!

ଅଳ୍ପ ହସି ରମା ଉତ୍ତର ଦେଲା...ହଁ ମୁଁ । ସମୁ ସାଙ୍ଗରେ ବସି ଗପୁଚି.... ସମୁକୁ ଚିହ୍ନିଚୁଚି ? ଆମ ଲଡୁର ସାଙ୍ଗ । ଆରେ ଇଏ କ'ଣ ? ତୁ ଏମିତି ଥରୁଚୁ କାଇଁକି ? ପଛରେ କିଏ ? ପୁଲିସ୍ ନା କ'ଣ ? କ'ଣ ହେଇଚି ?

ତା' ପର ଘଟଣା କ୍ରମରେ ବୈଚିତ୍ର୍ୟ କିଛି ନାହିଁ । ଘରର ଘରଣୀଙ୍କ ସାଙ୍ଗରେ ଅନ୍ତରଙ୍ଗ ଭାବରେ ଗପୁଥିବା ଲୋକଟିକୁ କେଉଁ ଦଫାରେ ଚାଲାଣ ନେବେ ସେ କଥା ପୁଲିସ୍ ବାବୁ ବୁଝିପାରିଲେ ନାହିଁ । ସେ ତାଙ୍କର ଯାହା ବୁଝିବାର ବୁଝିନେଇ ବିଦାୟ ନେଇଗଲେ । ବଡ଼ ଘରର ବଡ଼ ଗୁମର । ଏମିତି ହଜାର ଘଟଣା ତାଙ୍କ ଆଗରେ ଘଟୁଛି..... ଝିଅଟାର ସାଙ୍ଗ ସହିତ ମାଆଟା.... ଛିଃ.... ଛିଃ....

ଯତୀନ୍ଦ୍ର କେବଳ ପଚାରିଲା.... ତମେ ଏ କଥା କାହିଁକି କଲ ? ତା'ର ସ୍ୱରରୁ ବିଷ ଝରି ପଡୁଥିଲା । ରମା କେବଳ ହସିଥିଲା ।

ରାଧାମାଧବ ମଧ ତାକୁ ସେଇ କଥା ପଚାରିଲେ । କହିଲେ – ତମେ ଏକଥା କାହିଁକି କଲ ? ତାଙ୍କ ସ୍ୱରରେ କିନ୍ତୁ ତିକ୍ତତା ନଥିଲା ।

ରମା କହିଲା – ଏହାଛଡ଼ା ତ ମୋ ଆଗରେ ଆଉ ଅନ୍ୟ ବାଟ ନଥିଲା ।

ରାଧାମାଧବ ଅଭିଜ୍ଞ ମଣିଷ । ରାତି ପାହିଲେ ଏଇ ଦୁଇଗୋଡ଼ିଆ ବିଚିତ୍ର ଜନ୍ତୁଙ୍କ ସାଙ୍ଗରେ ତାଙ୍କର କାରବାର । ବିଶେଷ କରି ନିଜ ପିଲାମାନଙ୍କୁ ସେ ଭଲ ଭାବରେ ଜାଣନ୍ତି । ଜାଣନ୍ତି ବି ରମାକୁ । ମଣିରେ କାଦୁଅ ଲାଗିଲେ କ'ଣ ତା'ର ମୂଲ କମିଯାଏ ?

ରମା ପୁଣି କହିଲା... ପରିବାରର ମାନ ସମ୍ମାନ ମୋରି ଆଖି ଆଗରେ ଧୂଳିରେ ଲୋଟିବ ଏକଥା ମୁଁ କେମିତି ସହି ପାରିଥାନ୍ତି ? ଯେତେ ହେଲେ ମୁଁ ଏ ପରିବାରର ଲୁଣ ଖାଇଚି ତ !

ରାଧାମାଧବ ଅଳ୍ପ ହସିଲେ । କହିଲେ – ତମେବିତ ଏ ପରିବାରର ଅଂଶ । ଏକଥା କ'ଣ ତମେ ଅସ୍ୱୀକାର କରିବ ?

ରମା ଉତ୍ତର ଦେଲା... ମୁଁ ବାହାରର ଲୋକ । ପଙ୍କ କାଦୁଅରୁ ଜନ୍ମ ହୋଇଚି... ସେଇଠିକି ଫେରିଯିବି....

ରାଧାମାଧବ ଏଥର ରମାକୁ ପାଖକୁ ଟାଣିଲେ । ରମା ଚକିତ ହେଲେ ବି ବାଧା ଦେଲା ନାହିଁ । ରାଧାମାଧବ ସ୍ନେହ କୋମଳ କଣ୍ଠରେ କହିଲେ – ଏତେ ବଡ଼ କାଣ୍ଡଟିଏ କରି ବସିଲ । ତମର କଳଙ୍କ ଯେ, ବୁମେରାଂ ହୋଇ ଏ ପରିବାରର କଳଙ୍କ ହୋଇ ଫେରିଆସିବ, ଏ କଥା କେମିତି ତମ ମନକୁ ଆସିଲା ନାହିଁ ?

ରମା ଏଥର କାନ୍ଦିବାକୁ ଆରମ୍ଭ କଲା । ମୁଁ ନିଜେ ମୂର୍ତ୍ତିମତୀ କଳଙ୍କ । ବିନ୍ଦୁଏ କାଦୁଅ ମୋର ବା ଆଉ କ'ଣ କ୍ଷତି କରିବ ?

ରମାର ପିଠି ଆଉଁସୁ ଆଉଁସୁ ରାଧାମାଧବ କହିଲେ – ପାଗଳିଟା !!!



# ହେ ମହାଜୀବନ

ଗତ ରାତିର ବତାସରେ ଗଛଟି ଉପୁଡ଼ି ପଡ଼ିଚି। ତା' ସହିତ ଧୂଳିରେ ଲୋଟୁଚି ଗୋଟିଏ ଶତାବ୍ଦୀର ଐତିହ୍ୟ ଆଉ ପରମ୍ପରା। ଚାରା ଅବସ୍ଥାରେ ଗୋଟିଏ ଛୋଟିଆ ଟିଣ ଡବାରେ ଏଇଟି ଆସିଥିଲା ସୁଦୂର ବୃନ୍ଦାବନରୁ ଆଜିଠୁ ଷାଠିଏ ବର୍ଷ ତଳେ। ଗୁରୁଦେବ ନିର୍ଲିପ୍ତାନନ୍ଦ ଏଇଟିକୁ କାନୁଗୋଇ ଘରଣୀ ସୁନ୍ଦରମଣିଙ୍କ ହାତକୁ ବଢ଼ାଇ ଦେଇ କହିଥିଲେ – ବେଟୀ, ୟେ ବିଷ୍ଣୁ ବୃକ୍ଷ ହୈ। ଇସେ ଯତନ୍ ସେ ପାଲ୍‌ନା। ତୁମ୍ହାରୀ ହର କାମନା ପୂରୀ ହୋଗୀ।

ସୁନ୍ଦରମଣି ସେତେବେଳେ ସପରିବାର ତୀର୍ଥଯାତ୍ରାରେ ଯାଇଥିଲେ। ପ୍ରୟାଗ ତୀର୍ଥରେ ଶାଶୁ-ଶ୍ୱଶୁରଙ୍କର ଅସ୍ଥି ବିସର୍ଜନ ଦେଇ ମଥୁରା-ବୃନ୍ଦାବନ ଦର୍ଶନ ଅଭିଳାଷରେ ସେଠାରେ ପହଞ୍ଚିଥିଲେ ମଧ ଦୀକ୍ଷାନେବାର ଗୋଟିଏ ଗୋପନ କାମନା ତାଙ୍କର ଥିଲା। ତେବେ ସେ ମନକଥା କାହାକୁ ଫିଟାଇ କହି ନ ଥିଲେ। ବିବାହର ଛଅବର୍ଷ ପରେ ମଧ ତାଙ୍କର କୋଳ ଖାଲିଥିଲା। ଗୁରୁଦେବଙ୍କର ଆର୍ଶୀବାଦରୁ କାଳେ...

' ଚୌଦବର୍ଷ ବୟସରେ ସୁନ୍ଦରମଣି ଯେତେବେଳେ ସବାରୀରୁ ଓହ୍ଲାଇ କାନୁନ୍‌ଗୋ ପରିବାରର ଦେହଳୀରେ ପାଦ ରଖିଲେ, ସେତେବେଳେ ସେଇ ପରିବାରରେ ପଡ଼ନ୍ତ ଅବସ୍ଥା ଭିତରୁ ମୁଣ୍ଡ ଟେକି ଉଠିବାର ପ୍ରକ୍ରିୟା ଆରମ୍ଭ ହୋଇଯାଇଛି। ଦେଢ଼ଶୁର ଆକୁଳଚନ୍ଦ୍ର ଦୂରର କୌଣସି ଗଡ଼ଜାତରେ ସେଟଲମେଣ୍ଟ ଅଫିସର ହୋଇ ପ୍ରଭୂତ ପରିମାଣରେ ନାମଯଶ ଅର୍ଜନ ସାଙ୍ଗକୁ ଅର୍ଥ ମଧ ଅର୍ଜନ କରୁଛନ୍ତି। ମାସକେ ଥରେ ସେ ଯେତେବେଳେ ହାତୀ ପିଠିରେ ଗ୍ରାମକୁ ଆସନ୍ତି, ସେତେବେଳେ ତାଙ୍କର ଆଗରେ ପଛରେ ଷ୍ଟେଟର ପିଆଦା ପଏଲ୍, ଗହଣରେ ଭାରୁଆ ବାହିନୀ, ଦ୍ରବ୍ୟ ସମ୍ଭାରରୁ ସେଠାରେ ତାଙ୍କର ପ୍ରତିପତ୍ତିର ସୂଚନା ଦଶଖଣ୍ଡ

ମୌଜାରେ ପ୍ରଚାରିତ ହୁଏ। କିଶୋର ଆକୁଳି ଯେତେବେଳେ ଘରଛାଡ଼ି ପଳାଇ ଯାଆନ୍ତି, ସେତେବେଳେ ପରିବାରର 'ଅଦ୍ୟ ଭକ୍ଷ ଧନୁର୍ଗୁଣ' ଅବସ୍ଥା । ତା'ପରେ ସାତ/ଆଠ ବର୍ଷ ତାଙ୍କର କୌଣସି ଖୋଜ-ଖବର ନ ଥିଲା। ଏହି ଅବସ୍ଥାରେ ତାଙ୍କୁ ଶ୍ରାଦ୍ଧ ହୋଇ ପଡ଼ିବା ଉଚିତ ହେବ କି ନାହିଁ, ଏ ବିଷୟରେ ପିତା ନବୀନ ଚନ୍ଦ୍ର ଯେତେବେଳେ ଗ୍ରାମର ପାଞ୍ଚଜଣ ପୁରୁଖା ଲୋକଙ୍କ ସହିତ ପରାମର୍ଶ ଆରମ୍ଭ କରିଛନ୍ତି, ସେତିକିବେଳେ ସେ ହଠାତ୍ ଦିନେ ଘୋଡ଼ା ପିଠିରେ ବସି [illegible] ଗ୍ରାମରେ ଆସି ହାଜର। ଏହି ସମୟ ଭିତରେ ସେ କେଉଁଠିଥିଲେ, କ'ଣ କରୁଥିଲେ, କପର୍ଦ୍ଦକ ଶୂନ୍ୟ ଏକବସ୍ତ୍ରଧାରୀ ଗୃହତ୍ୟାଗୀ ଏକ କିଶୋରର ଯେଉଁଠି ସଂସାରର ଏଇ ଦୁର୍ଗମ ଜନଅରଣ୍ୟ ଭିତରେ ହଜିଯିବା କଥା, ସେଠାରେ ହଠାତ୍ ନବତାରୁଣ୍ୟରେ ଉଦ୍‌ଭାସିତ ଅଶ୍ୱାରୋହୀ ଏକ ଦୃପ୍ତ ପୁରୁଷର ଆବିର୍ଭାବ ସେତେବେଳେ କେବଳ ପରିବାରରେ ନୁହେଁ, ସମଗ୍ର ଅଞ୍ଚଳରେ ଚମକ ସୃଷ୍ଟି କରିଥିଲା। ପନ୍ଦର ଦିନଯାଏ ତାଙ୍କୁ ଦେଖିବାପାଇଁ ଲୋକଙ୍କର ଛୁଟଣ ନାହିଁ ଥିଲା।

କଥା ହେଉଛି, ପ୍ରତ୍ୟେକ ମଣିଷର ଏକ ନିଜସ୍ୱ ବୃତ୍ତ ଥାଏ ଏବଂ ଜୀବନସାରା ସେ ସେଇ ବୃତ୍ତରେ ଘୂରୁଥାଏ। ଦୂରକୁ ଛିଟିକି ଯାଇଥିଲେ ମଧ୍ୟ କେନ୍ଦ୍ରର ଆକର୍ଷଣରେ ନିଜର କକ୍ଷ ପଥଆଡ଼କୁ ଟାଣି ହୋଇ ଆସିବା ହିଁ ହେଉଛି ତାହାର ଧର୍ମ – ତାକୁ ତା'ର ନିୟତି କୁହାଯାଉ କିମ୍ବା ଭାଗ୍ୟ । ଆକୁଳଚନ୍ଦ୍ର କକ୍ଷ ପଥରୁ ଛିଟିକି ଯାଇ ମହାଶୂନ୍ୟରେ ହଜିଯିବା ପୂର୍ବରୁ ହଠାତ୍ କେନ୍ଦ୍ର ବିନ୍ଦୁର ପ୍ରଚଣ୍ଡ ଆକର୍ଷଣରେ ନିଜର କକ୍ଷପଥକୁ ଫେରିଆସିଥିଲେ, ଏହାହିଁ ହେଉଛି ତାଙ୍କର ସୌଭାଗ୍ୟ।

ଏସବୁ କଥା ସୁନ୍ଦରମଣି ପରେ ଶୁଣିଛନ୍ତି। ଆକୁଳଚନ୍ଦ୍ର ହିଁ ଥିଲେ କାନୁନ୍‌ଗୋ ପରିବାରର ସୌଭାଗ୍ୟୋଦୟର ହେତୁ। ସେତେବେଳେ ସେ ଷ୍ଟେଟ୍ ଚାକିରିରେ ସଦ୍ୟ ପ୍ରବେଶ କରିଥିଲେ ହେଁ ରାଜାଙ୍କର ପ୍ରିୟ ପାତ୍ର ହୋଇଥିବାରୁ ବୃତ୍ତିଗତ ଜୀବନରେ କ୍ଷିପ୍ର ଉନ୍ନତି କରିବା ତାଙ୍କ ପକ୍ଷରେ ସହଜ ହୋଇଛି। ସେଇ ଦୌଲତ୍‌ରୁ କାନୁନ୍‌ଗୋ ପରିବାରର ଧୂମିଳ ଛବି ମଧ୍ୟ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହେବାରେ ଲାଗିଛି। ଇତି ମଧ୍ୟରେ ଆକୁଳଚନ୍ଦ୍ରଙ୍କର ମହା ସମାରୋହରେ ବିବାହ, ଅନୁଜ ଗୋକୁଳଚନ୍ଦ୍ରଙ୍କୁ ନିଜର ଚାକିରି ସ୍ଥାନକୁ ଆନୟନ ଏବଂ ପିତା ନବୀନଚନ୍ଦ୍ରଙ୍କର ତିରୋଧାନ ପ୍ରଭୃତି ଗୋଟିକ ପରେ ଗୋଟିଏ ଯଥାରୀତି ଘଟି ଯାଇଛି।

ସୁନ୍ଦରମଣି ଶୁଣିଛନ୍ତି, ନବୀନଚନ୍ଦ୍ରଙ୍କ ଶୁଦ୍ଧିକ୍ରିୟାରେ ଯେଉଁ ସମାରୋହ ହୋଇଥିଲା, ବିଗତ ଶହେବର୍ଷ ମଧ୍ୟରେ ଏ ଅଞ୍ଚଳରେ ଏଭଳି ଆୟୋଜନ କେହି ଦେଖି ନ ଥିଲେ କିମ୍ବା ଶୁଣି ନ ଥିଲେ।

ନବୀନ ଥିଲେ, ଗୋଟିଏ ସୁଦୀର୍ଘ ତଥା ବଳିଷ୍ଠ ପରମ୍ପରାର ଶେଷ ସ୍ତିମିତ ଦୀପଶିଖା। ଗ୍ରାମାଞ୍ଚଳ ପ୍ରଶାସନର ସୁପରିଚାଳନା ନିମନ୍ତେ କାନୁନ୍‌ଗୋ ପଦବୀ ହେଉଛି ମରହଟ୍ଟାମାନଙ୍କର ସୃଷ୍ଟି। ଏମାନେ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର କର ଆଦାୟ କରି ରାଜସରକାରରେ ପଇଠ କରିବା ସହିତ ସେଠାକାର ଅଭାବ ଅସୁବିଧା ବୁଝିବା ଆଉ ଆଇନ୍‌ଶୃଙ୍ଖଳା ରକ୍ଷା ଦାୟିତ୍ୱରେ ମଧ୍ୟ ଥିଲେ। ତେଣୁ ସେମାନଙ୍କର ଅର୍ଥ ସହିତ ପ୍ରଭାବ ପ୍ରତିପତ୍ତିର ଅଭାବ ନ ଥିଲା। ନବୀନଙ୍କର ପ୍ରପିତାମହ ପ୍ରଶାସନର ନିକଟବର୍ତ୍ତୀ ହୋଇ ଏହି ମହାର୍ଘ ପଦ୍ବୀକୁ ହାସଲ୍ କରିଥିଲେ ଏବଂ ଅତି ଅଳ୍ପଦିନ ମଧ୍ୟରେ ଘରଦ୍ୱାର, ବାଡ଼ିବଗିଚା, ଗଛ, ମାଛ, ଜମି ଜମିଦାରୀ ଢାରି କରି ଦେଇଥିଲେ। ତୃତୀୟପୀଢ଼ି ଗୋଲୋକଚନ୍ଦ୍ରଙ୍କ ବେଳକୁ ଆରମ୍ଭ ହୋଇଗଲା ଇଂରେଜ ଅମଳ। ପଦବୀଟି ତ ରହିଗଲା, ତେବେ ମରହଟ୍ଟା ପକ୍ଷୀୟ ଲୋକମାନଙ୍କୁ ନବାଗତ ଇଂରେଜମାନେ ସନ୍ଦେହର ଦୃଷ୍ଟିରେ ଦେଖିବା ସ୍ୱାଭାବିକ। ଗୋଲୋକ ଚନ୍ଦ୍ର ନିଜ ଅମଳ କଟାଇ ଦେଲେ ପ୍ରଚଣ୍ଡ ଦାପଟରେ। ତେବେ ତାଙ୍କର ଶେଷ ବେଳକୁ ପରିବାରରେ ଅବକ୍ଷୟ ଆରମ୍ଭ ହୋଇଯାଇଥିଲା। ତେଣୁ ଚତୁର୍ଥ ପୀଢ଼ି ନବୀନ ଚନ୍ଦ୍ର ପଦବୀ ସର୍ବସ୍ୱ ହୋଇ ବଡ଼ ହନ୍ତସନ୍ତରେ ସମୟ କଟାଉଲେ। ସ୍ଥାବର, ଅସ୍ଥାବର ଯାହା କିଛି ଗଚ୍ଛିତ ଥିଲା, ତାହା ଉପରେ ହାତ ପଡ଼ି ସାରିଥିଲା, ଗୋଲୋକଙ୍କ ଅମଳରୁ। ଲକ୍ଷ୍ମୀ କାନୁନ୍‌ଗୋ ପରିବାର ଛାଡ଼ି ଦ୍ରୁତଗତିରେ ଅପସରି ଯାଉଥିଲେ। ତାଙ୍କୁ ଦୃଢ଼ ହସ୍ତରେ ବାନ୍ଧି ରଖିବାପାଇଁ ଯେଉଁ କୌଶଳ ଲୋଡ଼ା ତାହା ନବୀନଙ୍କର ନ ଥିଲା। ତେଣୁ ସେ କର୍ପୂରର ବାସନା ଟିକିଏ ଖୋଜୁ ଖୋଜୁ ଆଉ ଏଠି ସେଠି ଘୂରି ବୁଲୁବୁଲୁ ହଠାତ୍ ତାଙ୍କର ସୌଭାଗ୍ୟୋଦୟର ସୂଚନା ମିଳିଲା; ଅଶ୍ୱାରୋହୀ ଆକୁଳଚନ୍ଦ୍ରଙ୍କର ଆକସ୍ମିକ ଆବିର୍ଭାବରେ। ମାତ୍ର ଦୁର୍ଭାଗ୍ୟ କୃତୀପୁତ୍ରର ସମାରୋହ ଦେଖିବା ନିମନ୍ତେ ସେ ବେଶୀ ଦିନ ବଞ୍ଚି ରହିଲେ 'ନାହିଁ...

ନବୀନଚନ୍ଦ୍ରଙ୍କ ତିରୋଧାନରେ କାନୁନ୍‌ଗୋ ପରିବାରର ସିଢ଼ି ଚଢ଼ା କିନ୍ତୁ ଅଟକି ରହିଲା ନାହିଁ। ଆକୁଳଚନ୍ଦ୍ର ଅନୁଜଙ୍କୁ ନିଜ ପାଖରୁ ଆଣି ଗ୍ରାମରେ ସ୍ଥାୟୀ ଭାବରେ ରଖାଇଲେ। ରାଜସରକାରରେ ତାଙ୍କର ପ୍ରତିପତ୍ତି ଯାହା ତହିଁରେ ଗୋକୁଳଙ୍କୁ ସେଠାରେ ଗୋଟାଏ କିଛି ପଦପଦବୀ ମିଳିଯିବା ଅସମ୍ଭବ ନ ଥିଲା। ଆକୁଳି ଭାବି ଦେଖିଲେ, ଗ୍ରାମରୁ ତାଙ୍କର ନିୟମିତ ଅନୁପସ୍ଥିତିରେ ସେଠାରେ ଯେଉଁ ଛୋଟବଡ଼ ସମସ୍ୟାର ସୃଷ୍ଟି ହେଉଛି, ତାହାର ଆଶୁ ସମାଧାନ ନିମନ୍ତେ ଜଣେ ପୁରୁଷ ଅଭିଭାବକର ରହିବା ନିତାନ୍ତ ଆବଶ୍ୟକ। ସମ୍ପତ୍ତି ଧୀରେ ଧୀରେ ବଢୁଥିଲା। ଆହୁରି ବଢ଼ିବବି। ସମ୍ପତ୍ତି ଅର୍ଥ ମାଲିମକଦ୍ଦମା, କୋର୍ଟକଚେରୀ ବାରଝମେଲା ଏତେବେଳେ ଦେଖାଶୁଣା କରିବା ପାଇଁ ତ କେହି ଜଣେ ଥିବା ଦରକାର... ଆକୁଳି ସାନଭାଇକୁ ସେଇଆ ବୁଝାଇଲେ, ଚାକିରି ତାଳଗଛ ଛାଇ... ଏଇ ଅଛି ତ ଏଇ ନାହିଁ... ବିଶେଷ କରି ରଜାଘର ଚାକିରି ଯେ ସବୁଠୁଁ ନିଉଛୁଣା... ଏଇନେ ସେ ଏଠି ଅଛନ୍ତି, ରାଜାଙ୍କୁ ତାଙ୍କର ସବୁ ସୁନ୍ଦର ଦିଶୁଛି ରାତି ପାହିଲେ କ'ଣ ହେବ କିଏ ଜାଣେ? ତା' ଅପେକ୍ଷା...

ଗୋକୁଳି ବୁଝିଲେ। ତାଙ୍କର ଘରପଶା ସ୍ୱଭାବକୁ ବଡ଼ଭାଇଙ୍କର ଏଇ ପ୍ରସ୍ତାବଟି ବଡ଼ ମନୋହର ଲାଗିଲା... ସେ ତତ୍‌କ୍ଷଣାତ୍ ପେଡ଼ିପୁଟୁଳି ବାନ୍ଧି ଗାଁକୁ ଲେଉଟି ଆସିଲେ। ଆକୁଳି ଯାହା ଅର୍ଜନ କରୁଥିଲେ, ଗୋଟିକଠୁଁ ଠୁଳ କରି ଗାଁକୁ ବୋହି ଆଣୁଥିଲେ। ଗାଁରେ ଗୋକୁଳି କୃଷି ବଢ଼ାଉ ଥିଲେ, ଗୋଧନ ବୃଦ୍ଧି କରୁଥିଲେ। ନିୟମିତ ଜମିବାଡ଼ି କିଣାକିଣି ଚାଲିଥିଲା... କାନୁଗୋଇଙ୍କର ସାବିକ ଉଆସ ସ୍ଥାନରେ ନୂଆ ପ୍ରାସାଦ ମୁଣ୍ଡ ଟେକି ଉଠୁଥିଲା... ସବୁ ଚାଲିଥିଲା ସୁରୁଖୁରୁରେ...

ଇତି ମଧ୍ୟରେ ପରିବାରରେ ଶନିଙ୍କର ପ୍ରବେଶ।

ଦୀର୍ଘ ଦିନ ଧରି ପରିବାରର ସଦସ୍ୟମାନଙ୍କ ମଧ୍ୟର ଅସନ୍ତୋଷ ହଠାତ୍ ଦିନେ ହୁତ୍‌ହୁତ୍ ହୋଇ ଜଳିବାକୁ ଆରମ୍ଭ କଲା'ଆକୁଳି-ଗୃହିଣୀ ନେପୁରୀ ଦେବୀ ଜିଦ୍ ଧରି ବସିଲେ... ଆଉ ନୁହେଁ... ଏ ପରିବାରରେ ପରଙ୍କ ହାତ ଟେକା ଉପରେ ସେ ମୁହୂର୍ତ୍ତେ ଚଳି ପାରିବେ ନାହିଁ...

ପରିବାରରେ ପର କହିଲେ ଗୋକୁଳି ଆଉ ତାଙ୍କର ସ୍ତ୍ରୀ। ତାଙ୍କର ବାହାଘରର ପାଞ୍ଚବର୍ଷ ବି ପୂରି ନ ଥିଲା... ଏମିତିରେ ପରିବାରରେ ଲୋକସଂଖ୍ୟା ଖୁବ୍ ବେଶୀ

ନ ଥିଲା। ପରିବାରର ମୁଣ୍ଡ ରୂପରେ ନବୀନଚନ୍ଦ୍ରଙ୍କ ବିଧବା ସ୍ତ୍ରୀ ଅବଶ୍ୟ ଥିଲେ। ମାତ୍ର ସେ ଥାଇ ନ ଥିଲାପରି। ଘରର କୋଉ କ'ଣରେ ପଡ଼ିଥାଆନ୍ତି ଆଉ ନିଜର ଓଷାବାର ପୂଜିଅଁପରବ ନେଇ ବ୍ୟସ୍ତ ଥାଆନ୍ତି। ଆକୁଳଚନ୍ଦ୍ର ଯଦିଓ ଗର୍ଭଧାରିଣୀଙ୍କ ପ୍ରତି ନିଜର କର୍ତ୍ତବ୍ୟରେ ଅବହେଳା କରନ୍ତି ନାହିଁ, ତେବେ ସେତ ଚିରକାଳ ପରବାସିଆ... ବାକି ରହିଲେ ଗୋକୁଳି... ସଞ୍ଜ ସକାଳେ 'ବୋଉ' ବୋଲି ଡାକି ପାଖରେ ବସିବାକୁ ସେ କେବେ ବି ଭୁଲନ୍ତି ନାହିଁ। ତାଙ୍କ ନିର୍ଦ୍ଦେଶରେ ନବବଧୂ ସୁନ୍ଦରମଣିବି ନିୟମିତ ଶାଶୁଙ୍କର ଖବରାଖବର ନିଅନ୍ତି... ଗୋଡ଼ରେ ହାତରେ ହାତ ଦିଅନ୍ତି...

ଜ୍ୟେଷ୍ଠା ପୁତ୍ରବଧୂ ନେପୁରା... ସ୍ୱଭାବରେ ମୁଖରା ଆଉ ଅତ୍ୟନ୍ତ ସ୍ୱାର୍ଥ ପରାୟଣା ଏଇ ନାରୀ ଥିଲେ ସଦାକୋପନ ଚରିତ୍ରା... ଯଦିଓ ଏଇ ପରିବାରର ଦୁର୍ଦ୍ଦିନ ସେ ଦେଖି ନ ଥିଲେ, ତେବେ ତାଙ୍କର ସ୍ୱାମୀ ଯେ ଏଇ ପରିବାରର ସମୃଦ୍ଧିର କେନ୍ଦ୍ରବିନ୍ଦୁ ଏହା ସେ ଯେମିତି ମୁହୂର୍ତ୍ତକ ପାଇଁ ଭୁଲୁ ନ ଥିଲେ, ଅନ୍ୟମାନଙ୍କୁ ମଧ୍ୟ ଭୁଲିବାକୁ ଦେଉ ନ ଥିଲେ। ସଦ୍ୟ କୈଶୋରୋତୀର୍ଣ୍ଣ ପୁତ୍ର ଥିଲେ ଏକାନ୍ତ ଭାବରେ ମାତୃଭକ୍ତ ଏବଂ ସ୍ୱଭାବ ଚରିତ୍ରରେ ମଧ୍ୟ ମାତାଙ୍କର ଏକ ଅବିକଳ ପ୍ରତିରୂପ। ପରବାସୀ ପିତାଙ୍କ ସହିତ ତାଙ୍କର ଚରିତ୍ରଗତ କିମ୍ବା ମାନସିକ କୌଣସି ସାମଞ୍ଜସ୍ୟ ନ ଥିଲା। ବସ୍ତୁତଃ ପୁତ୍ର ପିତାଙ୍କୁ ଏକପ୍ରକାର ଏଡ଼ାଇ ଚାଲୁଥିଲେ।

ଏକମାତ୍ର କୁଳାଙ୍କୁରଙ୍କୁ ଯୋଗ୍ୟ କରିବା ନିମନ୍ତେ ପିତାଙ୍କର କୌଣସି ତ୍ରୁଟି ନ ଥିଲା। ସୁଦୂର କଟକ ସହରରୁ ଶିକ୍ଷକ ଅଣାଇ ସେ ତାଙ୍କର ଶିକ୍ଷାର ବ୍ୟବସ୍ଥା କରିଥିଲେ ଏବଂ ତଦାରଖରେ ଦାୟିତ୍ୱ ଅର୍ପଣ କରିଥିଲେ ଗୋକୁଳଚନ୍ଦ୍ରଙ୍କୁ। ଶ୍ରୀ ଅକ୍ଷର ବିବର୍ଜିତ ନେପୁରୀ ବିଶାଳ କାନୁଗୋଇ ସାମ୍ରାଜ୍ୟର ଏକମାତ୍ର ମଉଡ଼ମଣି ଖିଆପିଆ ଭୁଲି ଦିନରାତି କୋଉ ସତ୍ୟାନାଶିଆ ମାଷ୍ଟର ପାଖରେ ପାଠ ଅଭ୍ୟାସ କରିବ, ଏ ବ୍ୟବସ୍ଥା ପସନ୍ଦ କରୁ ନ ଥିଲେ। ସ୍ୱଳ୍ପବାକ୍ ସଦାଗମ୍ଭୀର ପତିଙ୍କ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦ ଜଣାଇବେ, ଏଭଳି ଦୁଃସାହସ ତାଙ୍କର ନ ଥିଲା। ତେବେ ଆକୁଳି ଗାଁ ଛାଡ଼ିବା ମାତ୍ରେ ସେ ନିଜ ମୂର୍ତ୍ତି ଧରୁଥିଲେ। ତାଙ୍କର କେବଳ ସନ୍ଦେହ ନୁହେଁ, ଦୃଢ଼ ବିଶ୍ୱାସ ହୋଇଥିଲା ଯେ, କୌଣସିମତେ ପୁତୁରାଙ୍କୁ ଜମିବାଡ଼ି ବ୍ୟାପାରରୁ ଦୂରେଇ ରଖି ସବୁ ସମ୍ପତ୍ତି ଗ୍ରାସ କରିବା ନିମନ୍ତେ ଇଏ ହେଉଛି

ପିତୃବ୍ୟଙ୍କର ଏକ ହୀନ ଚକ୍ରାନ୍ତ। ନଚେତ୍ ତାଙ୍କର ଦୁଧଖିଆ ପିଲା ପାଠ ପଢ଼ିବା କି ଦରକାର? ସିଏ କ'ଣ ସରକାର ଘରେ ଚାକିରି କରିବ? ଏଇ କଥା ସେ ଡାକି ବଜାଇ ପ୍ରଚାର କରୁଥିଲେ । ଗୋକୁଳ ଚନ୍ଦ୍ରଙ୍କର ହୋଇଥିଲା ସମୂହ ବିପଦ... ନା ସେ ଏକଥା ଅଗ୍ରଜଙ୍କୁ କହିପାରୁଥିଲେ ନା ଅବୁଝା ସ୍ତ୍ରୀଙ୍କୁ ବୁଝାଇ ପାରୁଥିଲେ! ନେପୂରୀଙ୍କ ବାକ୍ୟବାଣର ଶରବ୍ୟ ହେଉଥିଲେ ବିଚାରୀ ସୁନ୍ଦରମଣି। ଗୋକୁଳି ବା କେତେ ସମୟ ଘରେ ରହୁଥିଲେ?

କୁହୁଳୁଥିବା ନିଆଁ ଯେତେବେଳେ ହଠାତ୍ ଦିନେ ଦପ୍ କରି ଜଳି ଉଠିଲା, ସେତେବେଳେ ଆକୁଳଚନ୍ଦ୍ର ବିମୂଢ଼ ହୋଇଗଲେ। ଘଟଣାର ଆଭାସ ଯେ, ସେ ପୂର୍ବରୁ ଆଦୌ ପାଇ ନ ଥିଲେ ଏଭଳି ନୁହେଁ। ତେବେ ଅଶାନ୍ତି, ମନକଷାକଷି ଏସବୁ ଆଉ କୋଉ ପରିବାରରେ ନାହିଁ? ଏହାକୁ ଧରି ବସିଲେ ତ ସଂସାର ଅଚଳ ହୋଇଯାଆନ୍ତା। ଅତଏବ ସେ ଏକପ୍ରକାର ନିଶ୍ଚିନ୍ତ ଥିଲେ। ଅନୁଜଙ୍କ ଉପରେ ତାଙ୍କର ଅଖଣ୍ଡ ପ୍ରତ୍ୟୟ। ତେବେ ତାଙ୍କ ଚିନ୍ତାରେ ଭୁଲ୍ ହୋଇଗଲା। ସେ ଗାଁର ଖବର ପହୁଞ୍ଚିଲା ବେଳକୁ ନେଡ଼ିଗୁଡ଼ ଯାଇ କହୁଣୀରେ। ତରୁଣୀ ପତ୍ନୀକୁ ନେଇ ଗୋକୁଳଚନ୍ଦ୍ର ଗୃହତ୍ୟାଗ କରିଛନ୍ତି ପ୍ରାୟ ଏକବସ୍ତ୍ରରେ।

ଆକୁଳି ତୁରନ୍ତ ଗ୍ରାମକୁ ଆସିଲେ। ଗୋକୁଳି ଘର ଛାଡ଼ିଛନ୍ତି, ମାତ୍ର ଗ୍ରାମ ଛାଡ଼ି ନାହାନ୍ତି... ଏ ଖବର ପାଇ ତାଙ୍କ ପାଖରେ ଉପସ୍ଥିତ ମଧ୍ୟ ହେଲେ। ବୟସରେ ଅନ୍ୟୂନ ଗୋଟିଏ ଦଶନ୍ଧିର ପାର୍ଥକ୍ୟ ଥିବା ଅଗ୍ରଜଙ୍କୁ ଗୋକୁଳ କେବଳ ଭକ୍ତି କରୁ ନ ଥିଲେ, ଯଥାରୀତି ସମୀହ ମଧ୍ୟ କରୁଥିଲେ। ସୁନ୍ଦରମଣି ଦୂରରୁ ଗଳାରେ କାନିଗୁଡ଼ାଇ ଅଗ୍ରଜୋପମ ଦେଢ଼ଶୁରଙ୍କୁ ଭୂମିଲଗ୍ନ ହୋଇ ପ୍ରଣତି ଜଣାଉଥିବା ଅବସ୍ଥାରେ ଆସିଲେ ଗୋକୁଳ। ସେ ମଧ୍ୟ ଅଗ୍ରଜଙ୍କ ଆଗରେ ପ୍ରଣତ ହେଲେ।

ଆକୁଳି ପ୍ରଶ୍ନ କଲେ – "କିରେ ଚାଲି ଆସିଲ ସବୁ..."

ଗୋକୁଳ ନିରୁତ୍ତର ରହିଲେ। ତାଙ୍କ ଆଖିରେ ଦୁଇ ବୁନ୍ଦା ଲୁହ ଢଳଢଳ କରୁଥିଲା। ଅନେକ ବେଳଯାଏ ଦୁଇପକ୍ଷ ନୀରବ ରହିବା ପରେ ଆକୁଳି ଗୋଟିଏ ଦୀର୍ଘଶ୍ୱାସ ପକାଇଲେ। ଯଦିଓ ଏହି ଗୃହତ୍ୟାଗ ପଛରେ ଥିବା ଅସୁମାରୀ ମାନ ଅଭିମାନ, ମନୋମାଳିନ୍ୟ, କଟୂକ୍ତି, ଭର୍ତ୍ସନା, ତିରସ୍କାରର ଟିକିନିଖି ଖବର ତାଙ୍କ ପାଖରେ ନ ଥିଲା, ତଥାପି ସେ କିଛି ଶୁଣିଥିଲେ। ବିଶେଷତଃ, ନିଜ ପତ୍ନୀଙ୍କର

ସ୍ୱଭାବ ତାଙ୍କ ନିକଟରେ ଅଛପା ନ ଥିଲା। ସେ ଦୂରରେ ରହୁଥିବାବେଳେ ଗୃହଭେଦର ଏକ ସ୍ଥାୟୀ ପ୍ରତିକାର କରିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା। ତେବେ ସେ ମନ ସ୍ଥିର କରିସାରିଥିଲେ। ନିତିପ୍ରତିର ଏଇ ଅଶାନ୍ତି ଅପେକ୍ଷା ଦୁଇପ୍ରତିପକ୍ଷ ଅନ୍ତତଃ କିଛିଦିନ ପାଇଁ ଅଲଗା ରହିବା ଆବଶ୍ୟକ। ଦୂରତ୍ୱ ବୈମନସ୍ୟ ଦୂର କରେ। ଯଦିଓ ତାଙ୍କ ପତ୍ନୀଙ୍କ କ୍ଷେତ୍ରରେ ଏଭଳି ହେବାର ଆଶା ଖୁବ୍ କମ୍ ଥିଲା, ତଥାପି ଆଶାର ଅନ୍ୟ ନାମ ତ ଜୀବନ... ସେ ସ୍ଥାୟୀ ଭାବରେ ଗ୍ରାମରେ ରହିବାକୁ ଆସିବା ପରେ (ଯାହା ସେ ଶୀଘ୍ର କରିବେ ବୋଲି ସିଦ୍ଧାନ୍ତ ନେଇ ସାରିଥିଲେ) ଏ ସମସ୍ୟାର ସମାଧାନ କରିବେ।

ଏହାପରେ ସେ ବାହାର କରିଥିଲେ ଏକ ମୋଟା କାଗଜ। ଗୋକୁଳଙ୍କ ଆଡ଼କୁ ବଢ଼ାଇ ଦେଇ କହିଥିଲେ, "ନେ ଧର।'' ତାଙ୍କର ପ୍ରଶ୍ନିଳ ଦୃଷ୍ଟିର ଉତ୍ତରରେ କହିଥିଲେ, "ଇଏ ହେଉଛି ବୋହୂଙ୍କର ତେଲ ହଳଦି ଜମିର କବଲା।" ଗୋକୁଳଙ୍କର ମନେପଡ଼ିଗଲା, ନବବଧୂ ସୁନ୍ଦରମଣିଙ୍କର ମୁହଁ ଦେଖା ବାବଦରେ ଇଏ ଥିଲା କୃତି ଦେଢ଼ଶୂରଙ୍କର ଉପଢ଼ୌକନ। ଦଶଏକର ଦୋଫସଲି ଜମିର ଦାନପତ୍ର। ନେପୂରୀଙ୍କର ମୁହଁମୋଡ଼ା, ନାକଛିଅଡ଼ା, ଗରଗର ଭାବ, ଦେଖାଶିଖା ହାଡ଼ ଚିଡ଼ା କଥା ଏ ସବୁକୁ ଉପେକ୍ଷାକରି ସେଟେଲମେଣ୍ଟ ହାକିମ ଆକୁଳଚନ୍ଦ୍ର ଦାନପତ୍ରକୁ ଯଥାରୀତି ରେଜେଷ୍ଟ୍ରି କରି ତାକୁ ଆଇନ୍ ସିଦ୍ଧ ରୂପ ଦେଇଥିଲେ। ସେ କାଳର ଅଭିଜାତ ପରିବାରମାନଙ୍କରେ ଏଭଳି ପ୍ରଥା ଚାଲୁ ରହିଥିବାରୁ ଏଥିରେ ଆଶ୍ଚର୍ଯ୍ୟ ହେବାର ମଧ୍ୟ କିଛି ନ ଥିଲା।

ଆଜି ସେ ଆସିଛନ୍ତି ସେଇ କାଗଜ ଧରି ଅନୁଜର ଚଳାଚଳ ନିମନ୍ତେ ନ୍ୟୂନତମ ସୁବିଧା ସୁଯୋଗର ବ୍ୟବସ୍ଥା କରିବାକୁ। ଗୋକୁଳଙ୍କୁ ତଥାପି ଇତସ୍ତତଃ କରୁଥିବା ଦେଖି ତାଙ୍କୁ ଧମକ୍ ଦେଇ କହିଥିଲେ, "ନେ ଧର। ପବନ ପିଇ ସବୁ ରହିବ ନା କ'ଣ! ମୁଁ ଦେଖୁଚି, ଆଉ କ'ଣ ବ୍ୟବସ୍ଥା କରାଯାଇ ପାରୁଚି...।"

ଗୋକୁଳି ଲକ୍ଷ୍ୟ କଲେ, ଏଇ ସାକ୍ଷାତ୍କାରରେ ଭାଇ ଥରେ ହେଲେ ବି ତାଙ୍କୁ ଘରକୁ ଫେରିବା କଥା କହି ନାହାନ୍ତି। ଏଥିପାଇଁ ସେ ମନେ ମନେ ତାଙ୍କ ନିକଟରେ କୃତଜ୍ଞ ହୋଇ ଉଠିଲେ।

ଏଇ ଯାତ୍ରାରେ ଆକୁଳି ଗାଁରେ ରହିଲେ ଦଶଦିନ। ଏହାରି ଭିତରେ କାନୁନ୍‌ଗୋ ପରିବାରର ସାବକ ଡିହ ଉପରେ ଗୋଟିଏ ଖଞ୍ଜାଘର ଠିଆ କରିଦେଲେ। ଦୁଇଜଣ ଚଳିବା ଭଳି ସ୍ୱାଚ୍ଛନ୍ଦ୍ୟର ବ୍ୟବସ୍ଥା ସେଥିରେ ରହିଲା। ସେଇ ଘରେ ଅନୁଜର ପରିବାରକୁ ପ୍ରତିଷ୍ଠିତ କରିବା ପରେ ଆକୁଳି କହିଲେ – "ତୁ କ'ଣ ଭାବିଲୁ, ତୁ ଘର ଛାଡ଼ି ଚାଲି ଆସିଲୁ ବୋଲି ମୁଁ ତୋ ଉପରେ ରାଗିଛି ! ନାହିଁରେ... ଚୌଦ ବର୍ଷରୁ ଘରଛାଡ଼ି ବାଟେରା ହୋଇ ବୁଲୁଥିଲି... ପୁଣି ମୋତେ ଘରମୁହାଁ କଲା କିଏ ? ପ୍ରତି ପରିବାରର ଗୋଟାଏ ଐତିହ୍ୟ ଥାଏ। କୃତୀ ପୁରୁଷମାନେ ନିଜର ଅସାମାନ୍ୟ ପ୍ରତିଭା ବଳରେ ଏହା ନିଜର ପରବର୍ତ୍ତୀ ପୀଢ଼ି ପାଇଁ ତିଆରି କରିଥାଆନ୍ତି। ଶୁଣିଚି ଆମ ପଣଜେଜେ କୁଆଡ଼େ ହାତୀ ପିଠିରେ ଯିବା ଆସିବା କରୁଥିଲେ। ନଈକୁ ଗାଧୋଇ ଯିବାକୁ ହେଲେ ତାଙ୍କର ସବାରୀ ଲୋଡ଼ା ହେଉଥିଲା। ମୁଁ ବି ପ୍ରତିଜ୍ଞା କରିଥିଲି, ମୁଁ ଯେଉଁଦିନ ହାତୀରେ ବସିବାର ଯୋଗ୍ୟତା ଅର୍ଜିବି – ସେଇଦିନ ଗାଁକୁ ଫେରିବି । ତୁ କ'ଣ ଭାବୁଚୁ – ଏ ଘର ମୁଁ ତିଆରି କରିଚି – ନାଇଁରେ ଓଲୁ, ଏ ଘର ହିଁ ମୋତେ ତିଆରି କରିଚି... ଏ ଘରର ପରମ୍ପରା, ଐତିହ୍ୟ... ଏସବୁ ମୋତେ ଠିଆ କରାଇଚି। ନ ହେଲେ ମୁଁ କିଏ, ଏ ବିଷୟ ଆଶୟ, ଗଛମାଛ ଜମିଜମିଦାରୀ... ଏସବୁ ବା କିଏ !

ଗୋକୁଳ ଆଶ୍ଚର୍ଯ୍ୟରେ ନିଜର ଅଗ୍ରଜଙ୍କୁ ଦେଖୁଥିଲେ। ତାଙ୍କ ଜୀବନରେ ଏଇ ପ୍ରଥମଥର ପାଇଁ ସେ ତାଙ୍କୁ ଏକାଥରେ ଏତେ କଥା କହିବାର ଶୁଣୁଥିଲେ।

ଆକୁଳଙ୍କର କଥା ଆହୁରି ସରି ନ ଥିଲା। ସେ କହୁଥିଲେ, ଗୋଟିଏ କଥା ସବୁବେଳେ ମନେରଖିବୁ। ନିଜକୁ କେବେ ଏକୁଟିଆ ଭାବିବୁ ନାହିଁ, ଘରଛାଡ଼ି ମୁଁ ଯେତେବେଳେ ବାଟରେ ଠିଆ ହୋଇଥିଲି, ସେତେବେଳେ ମୋ ପାଖରେ କିଏ ଥିଲା ? ନିଜ ଉପରେ ବିଶ୍ୱାସ ଛଡ଼ା ମୋ ପାଖରେ କ'ଣ ଥିଲା ? ମନ ଥିଲେ ମଣିଷ ସବୁ ପାରେ। ଦୃଢ଼ ଇଚ୍ଛା ଶକ୍ତି ତାକୁ ଅବାଟ ଭିତରେ ବାଟ ଦେଖାଇ ଦିଏ...

କିଛିକ୍ଷଣ ନୀରବ ରହିବା ପରେ ଆକୁଳି କହିଲେ, ଶୁଣ୍, ମୁଁ କାଲି ଆଠଗଡ଼ ଫେରିଯାଉଛି। ଶୀଘ୍ର ଆସିବି... ଏଥର ଆସିବି ସବୁଦିନ ପାଇଁ। ଚାକିରି ତ ଅନେକ ଦିନ ହେଲା... ଏଥର ଘର ବାହୁଡ଼ା... ଆଉ ହଁ ତୁ କିଛି ଦିନ ଏଠି

ରହ... ରହିବା ଦରକାର ବି। ତା'ପରେ ମୁଁ ଫେରିବା ପରେ ତତେ ବି ଫେରିବାକୁ ପଡ଼ିବ। ଆଜି ଆମର ଯେତିକି ସମ୍ପତ୍ତି... ବାପାଙ୍କ ଅମଳରେ ସେ ସବୁ କିଛି ନ ଥିଲା, ସବୁ ତୁ ତୋ ବୁଦ୍ଧି ବଳରେ ଭେଳଚୁ... ଟଙ୍କା କେଇଟା ଦବା ଛଡ଼ା ମୁଁ ତ କିଛି କରି ନାହିଁ। ନ୍ୟାୟତଃ, ଏ ସବୁ ତୋର... ତା'ର ଦାୟିତ୍ୱ ବି ତୁ ନେବୁ। ଏ ବୟସରେ ମୁଁ ସମ୍ପତ୍ତିବାଡ଼ି, ମାଲିମକଦ୍ଦମା ନେଇ ଧନ୍ଦି ହୋଇପାରିବି ନାହିଁ।

ଆକୁଳଚନ୍ଦ୍ର ବିମୂଢ଼ ଗୋକୁଳଙ୍କୁ ସେହି ଅବସ୍ଥାରେ ଛାଡ଼ି ବିଦାୟ ନେଇ ଚାଲିଗଲେ ଏବଂ ଯଥାରୀତି ଗ୍ରାମରୁ ନିଜର ଚାକିରି ସ୍ଥଳକୁ ମଧ୍ୟ ରମାନା ହୋଇଗଲେ। ଗୋକୁଳ ଜାଣି ନ ଥିଲେ (କିଏ ଅବା ଜାଣିଥାଏ?) ଭାଇଙ୍କ ସହିତ ତାଙ୍କର ସେଇ ଥିଲା ଶେଷ ସାକ୍ଷାତ୍ ।

ଦୁଇ ଦିନ ପରେ ଆକୁଳିଙ୍କର ମୃତ ଦେହ ଗ୍ରାମରେ ପହଞ୍ଚି ଥିଲା। ଶୁଣାଗଲା, ହାତୀ ପିଠିରୁ ଓହ୍ଲାଇ ସେ ନିଜର ଶୋଇବା ଘରେ ପ୍ରବେଶ କରିଥିଲେ। କିଛି ସମୟ ପରେ ତାଙ୍କର ବ୍ୟକ୍ତିଗତ ପରିଚାରକ ତାଙ୍କୁ ଡାକିବାକୁ ଯାଇ ଦେଖିଲା, ଆକୁଳଚନ୍ଦ୍ର ମହାନିଦ୍ରାରେ ଶୋଇଯାଇଛନ୍ତି।

ଶୁଦ୍ଧିକ୍ରିୟାରେ ଶୋକାହତ ଗୋକୁଳ ସମସ୍ତ ପ୍ରକାର ସହଯୋଗ କରିବାକୁ ପ୍ରସ୍ତୁତ ଥିଲେ ମଧ୍ୟ ତାଙ୍କୁ ଲୋଡ଼ାଯାଇ ନ ଥିଲା। ସେଠି ସେତେବେଳେ ମାମଲତକାର ହୋଇ ବସିଥିଲେ, ମାମୁସାଆନ୍ତ – ନେପୁରୀଙ୍କ ଭାଇ। ସମ୍ପର୍କ ଏକପ୍ରକାର ତୁଟି ଯାଇଥିଲା।

ଗୋଟିଏ ମହାନ୍ ବୃକ୍ଷର ଛାୟା ମୁଣ୍ଡ ଉପରୁ ଅପସରି ଗଲେ, ବାଟୋଇଟିର ଯାହା ଅବସ୍ଥା ହୁଏ, ଗୋକୁଳଙ୍କ ହେଲା ସେଇ ଅବସ୍ଥା। ଦୀର୍ଘକାଳ ସେ ଗାଁରେ ଥିଲେ। ସେଠାର ସବୁ ଦାୟିତ୍ୱ ଏକା ହାତରେ ତୁଲାଉଥିଲେ। ସମ୍ପତ୍ତିବାଡ଼ି ଦେଖାରଖା, ଲୋକ ସମ୍ପର୍କ ଏ ସବୁ ସେ ନିଜେ କରୁଥିଲେ। ଆକୁଳି ତ କହିଲା ପରି ଗାଁରେ ଥିଲେ ଅତିଥି। କେତେଦିନ ବା ସେଠି ରହୁଥିଲେ? କାହାକୁ ବା ଚିହ୍ନିଥିଲେ? ଅଦିନିଆ ଚଢ଼େଇ ଭଳି ଆସୁଥିଲେ ଆଉ ଦିନେ ଫୁରର୍ କରି ଉଡ଼ି ପଳାଉଥିଲେ। ତଥାପି ଭାଇ ଥିଲେ... !

ଜୀବନ ପ୍ରତି, ସଂସାର ପ୍ରତି ଗୋକୁଳିଙ୍କର ବୀତସ୍ପୃହତା ଆସିଗଲା। ସେ ପତ୍ନୀଙ୍କୁ ନେଇ ତୀର୍ଥଯାତ୍ରାରେ ବାହାରିଲେ। ଗଙ୍ଗାଯମୁନା ସଙ୍ଗମରେ ପିତାମାତାଙ୍କର ଅସ୍ଥି ବିସର୍ଜନ କରି କାଶୀ-ମଥୁରା-ଶେଷରେ ବୃନ୍ଦାବନ...

ସେଇଠୁ ଏ ବୃକ୍ଷ। ଗୁରୁଦେବ ଗଛଟିକୁ ସୁନ୍ଦରମଣିଙ୍କ ହାତକୁ ବଢ଼ାଇ ଦେଇ କହିଥିଲେ, "ୟେ ବୃକ୍ଷ ହର ମନୋକାମନା ପୂରା କରତା ହୈ । ଇସ୍‌କୀ ଶ୍ରଦ୍ଧା ସେ ସେବା କରନା –" ସୁନ୍ଦରମଣି ମଥାପାତି ଏହି ଦାନକୁ ଗ୍ରହଣ କରିଥିଲେ।

ଘରକୁ ଫେରି ସୁନ୍ଦରମଣି ଗଛଟିକୁ ତୁଳସୀ ଚଉରା ପାଖରେ ସ୍ଥାପନ କଲେ। ସରୁଆ ଚିକ୍କଣ କାଣ୍ଡ ଉପରେ ଛତା କାଠି ଭଳି ଦୁଇଚାରିଟି ଶାଖା। ତହିଁରେ ଆଠଦଶଟି ଛୋଟ ଛୋଟ ଡେମ୍ଫ... ସେଗୁଡ଼ିକ କାଳିଚିଆ ମୋଟା ମୋଟା ପତ୍ରରେ ମଣ୍ଡିତ ଠିକ୍ ଏ ଆଡ଼ର କଇଁଆ ପତ୍ର ଭଳି। ବଣଜଙ୍ଗଲର ପଥୁରିଆ ମାଟିରେ ଭଲ ବଢୁଥିବା ଏ ଗଛ ଉପକୂଳବର୍ତ୍ତୀ ଅଞ୍ଚଳର ଦୋରସା ମାଟିରେ କିଭଳି ବଢ଼ିବ, ସୁନ୍ଦରମଣି ଭାବିପାରୁ ନ ଥିଲେ। ତଥାପି ସେଥିରେ ସେ ଟୋପାଏ ଚନ୍ଦନ ଆଉ ଧାପେ ସିନ୍ଦୂର ମାରିଦେଇ ତୁଳସୀ ଗଛରେ ପାଣି ଦେଲାବେଳେ ଆଞ୍ଜୁଳାଏ ପାଣି ଦେଇ ଗଳବସ୍ତ୍ର ହୋଇ ପ୍ରଣାମ କରୁଥିଲେ। ଚଉରାର ସଞ୍ଜବତୀରୁ ନବାଗତ ବୃକ୍ଷ ମଧ୍ୟ ଦୁଇତିନୋଟି ଭାଗ ପାଉଥିଲା। ବେଳେବେଳେ ସୁନ୍ଦରମଣି ତା'ର ମୂଳକୁ ଖୁସାଇ ଦେଉଥିଲେ। ଏହାପରେ ଆଉ କ'ଣ କରିବାକୁ ହେବ ତାଙ୍କୁ ଜଣା ନ ଥିବାରୁ ଗଛର ପରିଚର୍ଯ୍ୟା ଏତିକିରେ ଶେଷ ହେଉଥିଲା।

ବୃକ୍ଷର ବିକାଶ ଏତେ ମନ୍ଥର ଥିଲା ଯେ, ଟିଣ ଡବାରୁ ଆସି ଦାଣ୍ଡର ମାଟିରେ ସ୍ୱାଧୀନ ଜୀବନ ପାଇବା ପାଇଁ ତାକୁ ଦଶବର୍ଷ ଲାଗି ଯାଇଥିଲା। ଇତିମଧ୍ୟରେ ରାମ-ଭରତ ଆଉ ଲକ୍ଷ୍ମଣ ଆସି ସୁନ୍ଦରମଣିଙ୍କର କୋଳମଣ୍ଡନ କରିସାରିଥିଲେ। କାନୁନ୍‌ଗୋ ପରିବାରର ମୂଳଶାଖା ଛିଡ଼ି ଛିଡ଼ି ଯାଉଥିବାବେଳେ ତା'ର ପ୍ରଶାଖାରେ ବଢ଼ିବାର ଲକ୍ଷଣ ଦେଖାଯାଉଥିଲା। ଗୋକୁଳ ଉଦ୍ୟମୀ ପୁରୁଷ। ତାଙ୍କର ସମ୍ବଳ କହିଲେ ଆକୁଳଚନ୍ଦ୍ର ବିଦାୟ ପୂର୍ବରୁ ତାଙ୍କୁ ଦେଇଯାଇଥିବା ସୁନ୍ଦରମଣି ମୁହଁ ଦେଖାରେ ପାଇଥିବା ଦଶଏକର ଦୋଫସଲୀ ଜମି। ସେଇଥାକୁ ସମ୍ବଳ କରି ଗୋକୁଳ ସଂସାର ସମୁଦ୍ରରେ ବୋଇତ ମେଲିଥିଲେ। ପ୍ରଥମେ ଭାଗ – ତା'ପରେ ଯୋଗାଯୋଗ କରି ହାତଚାଷ... ପ୍ରଥମେ ଧାନ୍ୟମୁଗ... ପରେ

ସୁବିଧାକରି ପନିପରିବା... ଏମିତି କରି ସେ ଏଇ କେତେବର୍ଷ ଭିତରେ ଅଞ୍ଚଳର ଜଣେ ନାଉଁଆ ଚାଷୀ ହୋଇପାରିଥିଲେ। ମେହେନତ, ବୁଦ୍ଧି ଆଉ ଲୋକ ସମ୍ପର୍କ... ଏହାରି ବଳରେ ସେ ନିଜର ସମ୍ପତ୍ତି ମଧ୍ୟ ବଢ଼ାଇ ଥିଲେ।

ଘରର ଘରଣୀ ସୁନ୍ଦରମଣି ମଧ୍ୟ ତୁଚ୍ଛା ବସି ରହି ନ ଥିଲେ। ଅଭିଜାତ ପରିବାରର ଅସୂର୍ଯ୍ୟମ୍ପଶ୍ୟା କୁଳବଧୂର ଘଟାଟୋପ ଖସାଇ ସେ ଅଣ୍ଟାରେ ପଣତ ଭିଡ଼ି ପାହାଚ ଓହ୍ଲାଇ ଆସିଥିଲେ। ଘରର ଚାରିପଟେ ନଡ଼ିଆ ଚାରାମାନ ଯୋଗାଡ଼ କରି ରୋପିଦେଇ ଥିଲେ। ତାଙ୍କର ବାଡ଼ି ଋତୁକାଳୀନ ପନିପରିବାରେ ହସୁଥିଲା। ବହୁକାଳର ପତିତ ଜମି ନିୟମିତ ଖୁସା କୋଡ଼ା ପାଣିପବନ ପାଇ ଯେମିତି ବରଦ ହସ୍ତରେ ସୁନ୍ଦରମଣିଙ୍କର ଅଞ୍ଚଳ ପୂର୍ଣ୍ଣ କରିଦେଉଥିଲା। ମାଟି କାହାରି ଋଣ ରଖେ ନାହିଁ।

ସନ୍ତାନମାନେ ଆସିଯିବା ପରେ ଗୋକୁଳ ଚନ୍ଦ୍ରଙ୍କର ପରିବାର ପୂର୍ଣ୍ଣତା ଲାଭ କରିଥିଲା। ଏହା ଏକ ସମ୍ପନ୍ନ ପରିବାର ନୋହି ଥିଲେ ହେଁ, ଥିଲା ଏକ ସଂତୃପ୍ତ ପରିବାର। ତହିଁରେ ଅଭାବ ହୁଏତ ଥିଲା, ମାତ୍ର ଅଭିଯୋଗ ନ ଥିଲା। ମାନସିକ ଅସନ୍ତୋଷ ହୁଏତ ଥାଇପାରେ, ମାତ୍ର ଈର୍ଷା ନ ଥିଲା। ସୁଯୋଗ ଆଉ ସମର୍ଥନ ପାଇଲେ ନାରୀ କ'ଣ କରି ଦେଖାଇ ଦେଇପାରେ, ସୁନ୍ଦରମଣି ତାହାର ଦୃଷ୍ଟାନ୍ତ ହୋଇସାରିଥିଲେ। ମାତ୍ର ବର୍ଷ ଦଶଟା ଭିତରେ ବିଲୁଆ ଡେଉଁଥିବା ପରିତ୍ୟକ୍ତ ଡିହକୁ ସେ ସବୁଜଶ୍ରୀରେ ଭରି ଦେଇଥିଲେ। ଲକ୍ଷ୍ମୀ ଯେମିତି ହସୁଥିଲେ...

ବୃନ୍ଦାବନରୁ ଆନୀତ ବୃକ୍ଷ ଇତି ମଧ୍ୟରେ ଦାଣ୍ଡରେ ସ୍ଥାପିତ ହେବା ଫଳରେ ତାହାଠାରେ ଦେବତ୍ୱ ଆରୋପିତ ହୋଇ ସାରିଥିଲା। ଗୋରୁଛେଳି ଏହାର ପତ୍ରକୁ ଖାଆନ୍ତି କିମ୍ବା ନାହିଁ, ଏ ବିଷୟରେ ସୁନ୍ଦରମଣିଙ୍କର କୌଣସି ଧାରଣା ନ ଥିଲା। ତେବେ ସେ ଗଛକୁ ଭଲ ଭାବରେ ଆକଟ କରି ସାତ/ଆଠ ଫୁଟ ଉଚ୍ଚ ହୋଇଯିବା ପରେ ତା'ର ନିରାପତ୍ତା ସମ୍ପର୍କରେ ନିଶ୍ଚିନ୍ତ ହେବାରୁ ତାକୁ ସିକ୍ୟୁରିଟୀ ଘେରରୁ ମୁକ୍ତ କରିଥିଲେ। ଏଇ କେତେବର୍ଷରେ ଦୈର୍ଘ୍ୟ ଆଉ ପ୍ରସ୍ଥରେ ତା'ର ଯେତିକି ବଢ଼ିବାର କଥା, ତାହା ହୋଇ ନ ଥିବାରୁ ସୁନ୍ଦରମଣିଙ୍କର ଉଦ୍‌ବେଗର ସୀମା ନ ଥିଲା। ମାତ୍ର ଏଥିରେ ତାଙ୍କର କିଛି କରିବାର ନ ଥିଲା।

ସୁନ୍ଦରମଣିଙ୍କର ଦୃଢ଼ ବିଶ୍ୱାସ ହୋଇଥିଲା, ସହାୟସମ୍ବଳହୀନ ଏକ ଦମ୍ପତିଙ୍କର ଜୀବନ-ନୌକା ଯେତେବେଳେ ପାଲଛିଣ୍ଡା ଅବସ୍ଥାରେ ସଂସାର ସମୁଦ୍ରରେ ଭାସିଯାଉଥିଲା, ସେତେବେଳେ ଏଇ ବୃକ୍ଷ ଦେବତାଙ୍କର ଅପାର କରୁଣା ହିଁ ସେମାନଙ୍କୁ ତୀରର ସନ୍ଧାନ ଦେଇଥିଲା। ତେଣୁ ବୃକ୍ଷ ପ୍ରତି ସୁନ୍ଦରମଣିଙ୍କର କୃତଜ୍ଞତାର ଶେଷ ନ ଥିଲା।

ଗଛ ଟିକିଏ ମୁଣ୍ଡ ଟେକିଲା ମାତ୍ରେ ତା' ଚାରିପଟେ ସୁନ୍ଦରମଣିଙ୍କ ତତ୍ତ୍ୱାବଧାନରେ ପିଣ୍ଡିଟିଏ ବନ୍ଧାଇ ଦିଆଯାଉଥିଲା। ନିୟମିତ ଗୋବର ମାଟିର ପରିମାର୍ଜନରେ ଗଛର ଚାରିପଟ ଟକ୍‌ଟକ୍ କରୁଥିଲା। ଗଛର ଆଖପାଖ ଯେମିତି ପରିଚ୍ଛନ୍ନ ରହେ ସେଥିପ୍ରତି ସୁନ୍ଦରମଣିଙ୍କର ତୀକ୍ଷ୍ଣ ଦୃଷ୍ଟି ରହିଥିଲା। ପ୍ରତିଦିନ ସ୍ନାନାନ୍ତେ ଗଛ ମୂଳରେ ପାଣି ଢାଳିବା, ତହିଁରେ ସିନ୍ଦୂର ଚନ୍ଦନର ଟିପା ସହ ମୁଠାଏ ଅରୁଆଚାଉଳ ଆଉ ଗୁଡ଼ରେ ପ୍ରସାଦ ଚଢ଼ାଇ ଗଳବସ୍ତ୍ର ହୋଇ ଦଣ୍ଡପ୍ରଣାମ କରୁ କରୁ ଗୁଣୁଗୁଣୁ ସ୍ୱରରେ ସାଂସାରିକ ସୁଖ ସମୃଦ୍ଧି ନିମନ୍ତେ ପ୍ରାର୍ଥନା କରିବା ଏବଂ ସଞ୍ଜବତୀ ଜାଳିଦେବା ପ୍ରଭୃତି ତାଙ୍କର ନୈମିତ୍ତିକ କର୍ତ୍ତବ୍ୟ ଥିଲା।

ଗଛର ବୟସ ବଢ଼ିବା ସହିତ ପିଲାମାନଙ୍କର ବୟସ ମଧ୍ୟ ବଢୁଥିଲା। ଇତି ମଧ୍ୟରେ ଚତୁର୍ଥସନ୍ତାନ ଶତ୍ରୁଘ୍ନ ସୁନ୍ଦରମଣିଙ୍କର କୋଳ ପୂର୍ଣ୍ଣ କରି ସାରିଥିଲା। ବିବାହର ଛଅବର୍ଷ ପର୍ଯ୍ୟନ୍ତ ପିଲାଛୁଆ ନ ହେବାରୁ କାନୁନ୍‌ଗୋ ପରିବାରରେ ତାଙ୍କର ଯେଉଁ ମାନସିକ ନିଗ୍ରହ – ସେ ଏ ପର୍ଯ୍ୟନ୍ତ ତା'ର ଦୁଃଖ ଭୁଲି ନ ଥିଲେ। ବଡ଼ଯାଆଙ୍କର ଦେଖା ଶିଖା କଥା, ଗାଁଆ ଲୋକଙ୍କର କରୁଣାପୂର୍ଣ୍ଣ ଦୃଷ୍ଟି ଆଉ ଶାଶୁଙ୍କର ନିସ୍ପୃହ ଉଦାସୀନତାରେ ତାଙ୍କର ହାଡ଼ରୁ ମାଉଁସ ଝଡ଼ି ପଡୁଥିଲା। ତାଙ୍କର ଧୀରେ ଧୀରେ ବିଶ୍ୱାସ ହେବାରେ ଲାଗିଥିଲାଯେ, ତାଙ୍କ ଭଳି ପାପୀ ବୋଧହୁଏ ସଂସାରରେ ଆଉ କେହି ନାହିଁ। ପରିବାରରୁ ବାହାରି ଆସିବା ପୂର୍ବରୁ ବଡ଼ଯାଆଙ୍କର 'ଆଲୋ ବାଂଝ, ସକାଳୁ ଉଠି ତୋ ମୁହଁ ଚାହିଁଲେ ପାପ। ତୁ ଥିବା ପର୍ଯ୍ୟନ୍ତ ମୋ ସଂସାରର ମଙ୍ଗଳ ନାହିଁ –' ରହି ରହି ତାଙ୍କର କାନରେ ବାଜୁଥିଲା ଆଉ ତାଙ୍କର ପଞ୍ଚପ୍ରାଣ ଦୁହିଁ ହୋଇ ଯାଉଥିଲା। କେଉଁ ପାପରେ ବିଶ୍ୱବିଧାତା ତାଙ୍କୁ ଏଡ଼େ ବଡ଼ ଦଣ୍ଡ ଦେଇ ସଂସାରକୁ ପଠାଇଲେ, ଏକଥା ସେ କାହାକୁ ପଚାରିବେ?

ଦୈବପ୍ରେରିତ ହୋଇ ବୃକ୍ଷ ଦେବତାଙ୍କର ତାଙ୍କ ପରିବାରରେ ଆବିର୍ଭାବ ଏବଂ ତାଙ୍କର ଦୁର୍ଦ୍ଦଶା ମୋଚନ ଅଚିରେ ଏକ କିମ୍ବଦନ୍ତୀର ରୂପ ନେଇ ପ୍ରଥମେ ନିଜ ଗାଁରେ ଏବଂ ଧୀରେ ଧୀରେ ଆଖପାଖ ଦଶଖଣ୍ଡି ମୌଜାରେ ପ୍ରଚାରିତ ହେବା ଫଳରେ ତାଙ୍କର ମର୍ଯ୍ୟାଦା ବଢ଼ି ଯାଇଥିଲା ଏବଂ ତାଙ୍କର ପାଦମୂଳରେ ପ୍ରଣତ ହୋଇ ସାଂସାରିକ ଦୁଃଖ ଦୁର୍ଦ୍ଦଶାରୁ ମୁକ୍ତି ପାଇବା ନିମନ୍ତେ ପ୍ରାର୍ଥନା କରୁଥିବା ଅନୁଗତ ଭକ୍ତମାନଙ୍କର ସଂଖ୍ୟା କ୍ରମେ ବଢ଼ିବାରେ ଲାଗିଥିଲା।

ଗଛରେ ଡାଳ ଖଣ୍ଡେ ଶୁଖିଗଲେ, ସୁନ୍ଦରମଣିଙ୍କର ପ୍ରାଣ ଶୁଖିଯାଉଥିଲା। କୌଣସି ଆକସ୍ମିକ ପାରିବାରିକ ଦୁର୍ବିପାକର ପୂର୍ବ ସୂଚନା ରୂପେ ଏହାକୁ ଧରିନେଇ ସେ ପୂଜା ଅର୍ଚ୍ଚନାର ଘଟା ବଢ଼ାଇ ଦେଉଥିଲେ। ଗଛ ପ୍ରତି ତାଙ୍କର ଏ ଦୁର୍ବଳତାର କଥା ଗୋକୁଳଚନ୍ଦ୍ର ତ ଜାଣିଥିଲେ, କ୍ରମେ ପିଲାମାନଙ୍କର ବୁଝିବା ବୟସ ହେବାରୁ ସେମାନେ ମଧ୍ୟ ଜାଣିଗଲେ। ଜନ୍ମଦାତ୍ରୀଙ୍କର ସନ୍ତୋଷ ଭାଜନ ହେବା ନିମନ୍ତେ ସେମାନେ ଆପେ ଆପେ ନିଜ ମଧ୍ୟରେ ଗୋଟିଏ ବୃକ୍ଷ-ସୁରକ୍ଷା-ବାହିନୀ ଗଢ଼ି ନେଇଥିଲେ ଆଉ ଗଛରେ କେହି ହାତ ଦେଇ ପକାଇଲେ, ସେମାନେ ଅପରାଧୀକୁ ତୁରନ୍ତ ସୁନ୍ଦରମଣିଙ୍କ ମିସଲ୍‌ରେ ଆଣି ହାଜର କରୁଥିଲେ।

ପରିବାର ବଢ଼ିବା ସଙ୍ଗେ ସଙ୍ଗେ ଗୋକୁଳଚନ୍ଦ୍ରଙ୍କ ଅପେକ୍ଷା ସୁନ୍ଦରମଣିଙ୍କର ଚିନ୍ତା ଅଧିକ ହେଉଥିଲା। ଘରେ ପ୍ରତିଦିନ ଏଓଳି ସେଓଳି ଖାଇବାକୁ ବାରଟି ମୁହଁ – ଏହାଛଡ଼ା ଅଛନ୍ତି କୋଠିଆ, ମୂଲିଆ, ଗଲା ଆଇଲା, ବନ୍ଧୁବାନ୍ଧବ ଇତ୍ୟାଦି। ଏଣେ ଗୋକୁଳଚନ୍ଦ୍ରଙ୍କର ନିୟମିତ ଆୟର କୌଣସି ପନ୍ଥା ନାହିଁ। ପିଲାମାନେ ବଢୁଛନ୍ତି। କରଣ ଘରର ପିଲା ମୂଲିଆ ମୁରୁଖ ହୋଇ ତ ଗାଁରେ ବୁଲିବେ ନାହିଁ। ତାଙ୍କ ପାଇଁ ଶିକ୍ଷାର ବ୍ୟବସ୍ଥା କରିବାକୁ ପଡ଼ିବ। ଏଣେ ଘରର ଅବସ୍ଥା ଖରାପ ହେବାରେ ଲାଗିଛି। ଆକୁଳଚନ୍ଦ୍ର ମୁଣ୍ଡ ଗୁଞ୍ଜିବା ପାଇଁ ଏକ ସାମୟିକ ଆଶ୍ରୟର ବ୍ୟବସ୍ଥା କରିଥିଲେ। ଗୋକୁଳଙ୍କ ପାଇଁ ତାଙ୍କର ଯୋଜନା ଅନ୍ୟପ୍ରକାର ଥିଲା, ଯାହାର ସୂଚନା ସେ ଯିବା ପୂର୍ବରୁ ତାଙ୍କୁ ଦେଇ ଯାଇଥିଲେ। ମାତ୍ର ମଣିଷର ସବୁ କଳ୍ପନା ଭଳି ଏଇଟି ମଧ୍ୟ ଅପୂରଣୀୟ ରହିଗଲା। ଆକୁଳି କର୍ମସ୍ଥଳରୁ ଆଉ ଫେରିଲେ ନାହିଁ।

ସେ ଦିନ ସେଇ କଥା ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ପଡ଼ିଥିଲା। ରାତି ଗଭୀର ହୋଇ ନ ଥିଲେ ମଧ୍ୟ ପିଲାମାନେ ଶୋଇ ପଡ଼ିଥିଲେ। ଦିନସାରା ଡିଆଁଡେଇଁ, ଖିଆ ଆଉ ଶୁଆଁଗାଁରେ ଏହାଛଡ଼ା ସେମାନଙ୍କ ପାଇଁ ବା ଆଉ ଅଧିକ କ'ଣ କରିବାର ଥିଲା? ବଡ଼ପୁଅ ଗ୍ରାମରେ ଉପଲବ୍ଧ ଚାଟଶାଳୀ ପାଠ ବେଶ୍ କିଛିଦିନ ହେବ ଶେଷ କରି ପୋଥିରେ ଡୋର ବାନ୍ଧିଥିଲା। ତା' ତଳର ଗାଁ ପାଠ ଶେଷ ହେବା ଉପରେ। ଏମାନଙ୍କୁ କିଛି ନ ହେଲେ ମଧ୍ୟ ଦି'ଅକ୍ଷର ଇଂରେଜି ହରଫ ପଢ଼ାଇବା କଥା। ତାଙ୍କ ଉମର କଟିଗଲା ବିନା ଇଂରେଜିରେ। ଏ କାଳର କଥା ନିଆରା... ଗୋରା-ସାହେବଙ୍କ ଦୟାରୁ ଭାଇ କିଛି ବିଦେଶୀ ପାଠ ପଢ଼ିଥିଲେ ବୋଲି ଏଡ଼େ ବଡ଼ ପାହ୍ୟା ପାଇଲେ। ସେ ତ ଯୋଉଆକୁ ସେଇଆ ରହିଗଲେ...

ମନ ହେଲେ କ'ଣ ହେବ? ସାଧନ ପୁଣି ଥିବା ଚାହି ତ। ଇଂରେଜୀ ସ୍କୁଲ ଯାଇ ପାଞ୍ଚକୋଶ ଦୂର। ବୋର୍ଡ଼ିଂରେ ରଖିବାକୁ ହେବ। ଦୁଇଟି ପିଲାଙ୍କୁ ସେଠି ରଖି ପଢ଼ାଇଲେ ମାସକୁ ଅନ୍ତତଃ ତିରିଶ/ଚାଳିଶ ମୁଦ୍ରା ଦରକାର। ଧାନ ଗଣ୍ଡାକୁ ସମ୍ବଳ କରି ନାଆ ମେଲିଥିବା ଗୋକୁଳି କାହୁଁ ପାଇବେ ଏତେ ଧନ? ଏ ଅପ୍ରୀତିକର ପ୍ରସଙ୍ଗକୁ ସେ ଭୁଲିଯିବାକୁ ଚାହୁଁଥିଲେ। ଯାହା ଥିବ ସେମାନଙ୍କ କପାଳରେ...

ସେ ସିନା ଭୁଲିଯିବେ। ହେଲେ ସୁନ୍ଦରମଣି ତାଙ୍କୁ ଭୁଲିବାକୁ ଦେଲେ ତ! ଗୋକୁଳ ଅଗତ୍ୟା ତାଙ୍କୁ ବୁଝାଉଥିଲେ... ଧନ ମଣିଷ ତିଆରି କରେ ନାଇଁ ସୁନ୍ଦ... ମଣିଷ ଧନ ତିଆରି କରେ। ଦେଖୁନା ବିକଳାର ଅବସ୍ଥାକୁ! ତାକୁ ମଣିଷ କରିବାକୁ ଭାଇ କୋଉ କଥା ବା ନ କରିଥିଲେ! ଆଜି ତା' ଅବସ୍ଥା ଦେଖ। ଦିନ କେଇଟାରେ ସେ ଅଚଳାଚଳ ସମ୍ପତ୍ତିକି କେମିତି ନାରଖାର କରିଦେଲା! କପାଳ ଫାଟିଲେ କଡ଼େଇର ମାଛ ସାତତାଳ ପାଣିରେ ପହଁରେ...

ଆକୁଳିଙ୍କ ତିରୋଧାନ ପରେ ସଦ୍ୟ ସାବାଳକ ବିକଳଚନ୍ଦ୍ର ନୂତନ ଅଭିଭାବକ ମାମୁଙ୍କ ପ୍ରରୋଚନାରେ ଆଉ ମାତାଙ୍କ ପ୍ରୋତ୍ସାହନରେ ଉଚ୍ଛୃଙ୍ଖଳତାର ଯେଉଁ ସ୍ରୋତ ଛୁଟାଇଥିଲେ, ତହିଁରେ ଆକୁଳିଙ୍କର କଷ୍ଟାର୍ଜିତ ଧନରେ କ୍ରୀତ ସମ୍ପତ୍ତି ଶେଷ ହେବା ପ୍ରାୟ। ମାମୁ ବେଳ ଉଣ୍ଡି ଡୁବ ମାରିସାରିଲେଣି। ସମ୍ପତ୍ତି ବଢ଼ାଇବାରେ

ଗୋକୁଳଙ୍କ ଅବଦାନ ମଧ୍ୟ କିଛି କମ୍ ନ ଥିଲା। ତା'ର ବିନର୍ବୟ ଦେଖି କେବଳ ଦୀର୍ଘ ନିଃଶ୍ୱାସ ପକାଇବା ଛଡ଼ା ତାଙ୍କର ଆଉ କରିବାର କିଛି ନ ଥିଲା।

ସେଇ କଥା ସେ ସୁନ୍ଦରମଣିଙ୍କୁ କହୁଥିଲେ। ତେବେ ସୁନ୍ଦରମଣି ଏଥିରେ କେତେ ବୁଝିଲେ, ତା' ସେ ଜାଣି ଥିବେ। ଗୋକୁଳଙ୍କ ନିଜ ମନ କିନ୍ତୁ ଏଥିପାଇଁ ଅଶାନ୍ତ ଥିଲା। ଏତିକିବେଳେ ତାଙ୍କର ଅସୁସ୍ଥତା। ସାମାନ୍ୟ ଜରତ – ଏଥିପାଇଁ ଗାଁ ଗହଳିରେ କିଏ ଅବା ବଇଦ କବିରାଜ ଲୋଡୁଥାଏ? କବିରାଜ ପୁଣି ପାଞ୍ଚଖଣ୍ଡି ଗାଁ ଛାଡ଼ି ତିନିକୋଶ ଦୂରରେ। ଖବର ଦେଲେ କି ଗାଡ଼ି ପଠେଇଲେ ଆସନ୍ତି। ଗାଁ ଭୂଇଁରେ ଏ ବ୍ୟବସ୍ଥା କରାଯାଏ ଚରମ ଅବସ୍ଥାରେ ପହଞ୍ଚିଲେ। ଗୋକୁଳ ତିନିଚାରିଦିନ ଜରକୁ ଦିହେ ଦିହେ ମାରିଲେ। ଶେଷକୁ ଚତୁର୍ଥ ଦିନ ସେ ଯେତେବେଳେ ହେଁସ ଖଣ୍ଡକ ଉପରେ ଗଡ଼ି ପଡ଼ିଲେ, ସୁନ୍ଦରମଣିଙ୍କର ଚେତା ପଶିଲା। ଚିନ୍ତା ତ ତାଙ୍କର ପ୍ରଥମରୁ ହିଁ ଥିଲା। ଏଥିପାଇଁ ରସୁଣ ସୋରିଷତେଲ ଫୁଟାଇ ପାଦରେ ମାଲିସ୍ କରିବା କିମ୍ବା ବାସଙ୍ଗ ଛେଲି, କଳାଜୀରାର ପାଚନ କରି ଖୁଆଇବା ପ୍ରଭୃତି ଗ୍ରାମୀଣ ଉପଚାର ଯାହା କରିବା କଥା କରିଥିଲେ। ସେଥିରେ ଯେତେବେଳେ ପୀଡ଼ାର ଉପଶମ ହେଲା ନାହିଁ, ଅଗତ୍ୟା କବିରାଜଙ୍କୁ ଆସିବାକୁ ହେଲା। ରୋଗୀର କଥା ସେତେବେଳକୁ ଅଠା ଠିକ୍।

ମାତ୍ର ବାଉନବର୍ଷ ବୟସରେ ଗୋକୁଳ ଯେତେବେଳେ ଆଖି ବୁଜିଲେ, ସେତେବେଳେ ସୁନ୍ଦରମଣିଙ୍କର ମୂହ୍ୟମାନ ଅବସ୍ଥା। ଅବଧାନ ଅବଶ୍ୟ କହି ଦେଇଥିଲେ – ବାଇଶି, ବତିଶ, ବାଉନ... ଏସବୁ ବିପଜ୍ଜନକ ଘାଟି... ମାରକ ଦଶା... ଗୋକୁଳ ବାଉନ ବର୍ଷର ଘାଟି ପାରି ହୋଇପାରିଲେ ନାହିଁ।

ଶୋକର ପ୍ରଥମ ଅବସ୍ଥାଟା କଟିଗଲା ପରେ ସୁନ୍ଦରମଣି ଯେତେବେଳେ ଚାରିଆଡ଼କୁ ଅନାଇଲେ, ସେତେବେଳେ ତାଙ୍କୁ ସବୁ ଅନ୍ଧାର ଦିଶିଲା। ସେ ଏକା ହୋଇଥିଲେ କଥା ନ ଥିଲା... ଚାରିଚାରିଟା ନାବାଳକ ପିଲା – କେବେ ଏମାନେ ଉଡ଼ି ଶିଖିବେ... କିଏ ଏମାନଙ୍କୁ ବାଟ ଚାଲିବା ଶିଖାଇବ? ପାଖରେ କହିଲା ପରି କେହି ନାହାନ୍ତି। ସେ ଏକୁଟିଆ – ପୁଣି ମାଇପି ଲୋକ... ସେ କ'ଣ ଏମାନଙ୍କୁ କୂଳରେ ଲଗାଇ ପାରିବେ? ଅତୀତରେ ଯେତେବେଳେ ସୁନ୍ଦରମଣି କୌଣସି କାରଣରୁ ସମସ୍ୟାର ଜାଲରେ ଛନ୍ଦି ହୋଇ ଯାଇଛନ୍ତି, ସେତେବେଳେ ସେ ବୃକ୍ଷ

ଦେବତାଙ୍କର ଶରଣ ନେଇଛନ୍ତି। ସେଥିରୁ ତାଙ୍କୁ କ'ଣ ମିଳିଛି ସେଇ ଜାଣନ୍ତି। ତେବେ ଗୋଟିଏ କଥା ହୋଇଛି। ନିଜ ଉପରୁ ତୁଟିଯାଇଥିବା ଭରସାକୁ ସେ ଫେରି ପାଇଛନ୍ତି। ତାଙ୍କର ମନେ ହୋଇଛି, କେହି ଯେମିତି ତାଙ୍କର ହାତଧରି ଉଠାଇ ଦେଇ କହିଛି, ଭୟ ନାହିଁ, ମୁଁ କାଳେ କାଳେ ତୋ ପାଖରେ ରହିଛି, ରହିଥିବି ମଧ। ତୋ'ର ଡର କାହାକୁ? ଆଗେଇ ଚାଲ, ଆଗେଇ ଚାଲ...

ସୁନ୍ଦରମଣି ପ୍ରାୟ ନିରକ୍ଷର ଗ୍ରାମୀଣ ନାରୀ। କାହୁଁ ବୁଝନ୍ତେ ଗୀତା ଭାଗବତର ନିଗୂଢ଼ ତତ୍ତ୍ୱ ଅବା ଦର୍ଶନ। ବାଟ ଚାଲୁଚାଲୁ ଗୋଟିଏ କଥା ସେ ଭଲଭାବରେ ବୁଝିଛନ୍ତି। ଜୀବନ ପଥରେ ଆଗେଇ ଚାଲିବା ପାଇଁ ଗୋଟାଏ ଅବଲମ୍ବନ ଲୋଡ଼ା ଆଉ ଦରକାର ତା' ଉପରେ ପ୍ରତ୍ୟୟ ସ୍ଥାପନର ଦୃଢ଼ ବିଶ୍ୱାସ। ଏହାରି ବଳରେ ମଣିଷ ସାତ ସମୁଦ୍ର ଲଂଘନ କରିପାରେ। ଏ ପର୍ଯ୍ୟନ୍ତ ସେ ଥିଲେ କହିବାକୁ ଗଲେ ପାହାଡ଼ର ଛାଇରେ। ଯାହା କରୁଥିଲେ, ତାଙ୍କୁ ଟିକିଏ ହେମତ୍ ଦବାକୁ ନିଜ ଖୁସିରେ କରୁଥିଲେ। ଏଣିକି ତାଙ୍କୁ ନିଜେ ସବୁ କରିବାକୁ ପଡ଼ିବ। ପିଲାଙ୍କୁ ଛାଡ଼ି ସେ ମରିବିତ ପାରିବେ ନାହିଁ।

କାହୁଁ ପାଇବେ ସେ ସହାୟତାର ସେଇ ବଳିଷ୍ଠ ହାତର ଅବଲମ୍ବନ ଯାହା ତାଙ୍କୁ ଗୋକୁଳ ଚନ୍ଦ୍ରଙ୍କଠାରୁ ମିଳୁଥିଲା। ଆକୁଳଚନ୍ଦ୍ର ଥିଲେ କଥା ହୋଇଥାଆନ୍ତା ନିଆରା – ଯେତେ ମନ ନ ମିଶିଲେ ବି ନିଜ ରକ୍ତର ଧାରକୁ ସେ କେବେହେଲେ ଆକାଶ ତଳକୁ ଛାଡ଼ିଦେଇ ନ ଥାନ୍ତେ। ବର୍ତ୍ତମାନ ସେଠି ଯିଏ ବା ଯେଉଁମାନି ଅଛନ୍ତି, ତାଙ୍କ ମନରେ ଆହା ପଦ ବୋଲି କୌଣସି କଥା ନାହିଁ। ଅନ୍ୟର ଦୁଃଖରେ ସେଇ ମଣିଷର ମନକଷ୍ଟ ତ ଦୂରର କଥା, ବରଂ ଯେଉଁ ଉଲ୍ଲସିତ ଆନନ୍ଦ ହୁଏ, ତାହା ଗୋପନ ରହିପାରେ ନାହିଁ। ସେଠାରୁ ତେଣୁ ଅଧିକ ଦୁଃଖ ଛଡ଼ା ଜୁଟିବ ନାହିଁ ଅନ୍ୟ କିଛି। ବରଂ ସେ ଭିକ ମାଗିବେ, ପୁଣିଥରେ କାନୁଗୋଇ ପରିବାରର ଉଚ୍ଚ ପିଣ୍ଡାତଳେ ଦୟାର ଭିକାରୀ ହୋଇ ଠିଆ ହେବେ ନାହିଁ।

ଗଛ ପାଖରେ ଗଳବସ୍ତ୍ର ହୋଇ ସୁନ୍ଦରମଣି ଏଇ ସବୁ ଭାବୁଥିଲେ। ତାଙ୍କ ଆଖିରେ ଚାରୋଟି ପିଲାଙ୍କର ଶୁଖିଲା ମୁହଁ ଭାସି ବୁଲୁଥିଲା। ଏତେ ବଡ଼ ଦୁନିଆରେ ସେ ଚାହିଁଥିଲେ ଖାଲି ଟିକିଏ ସୁଖ। ସେତକ ବି ତାଙ୍କର ଫଟା କପାଳକୁ ଦୁର୍ଘଟ ହୋଇଗଲା। ତାଙ୍କର ମନେପଡ଼ିଗଲା ଗୁରୁଦେବଙ୍କ କଥା। ସେ କହିଥିଲେ – ସୁଖ

କଥାଟା କ'ଣ ଜାଣୁ ବେଟୀ? ସେ ହେଉଛି ଆପଣା ଆପଣାର ବୁଝିବାର ଗୋଟାଏ ଦିଗ। କିଏ ଭାବେ ଯେମିତି ଅଛି ସୁଖ ସେଇଥିରେ। କିଏ ଅବା ଜୀବନସାରା 'କାହିଁ ସୁଖ କାହିଁ ସୁଖ' ହୋଇ ଏଠୁ ସେଠିକି ସେଠୁ ଏଠିକି ଧାଁଦଉଡ଼ କରୁଥାଏ। କିଏ ପୁଣି ଧରିନେଇଥାଏ ସୁଖ ମଣିଷ ପାଇଁ ନୁହଁ, ସେଇଟା ହେଉଛି ଗୋଟାଏ ଦିବ୍ୟ ଅନୁଭବ। ଯୋଉମାନଙ୍କର ବୋଧବୁଦ୍ଧି କମ୍ ସେଇମାନେ ଖାଲି 'ସୁଖ ସୁଖ' ବୋଲି କାତର ହେଉଥାଆନ୍ତି। କସ୍ତୁରୀ ମୃଗ ଯେମିତି ନିଜ ନାଭିର ସୁଗନ୍ଧରେ ନିଜେ ମୁଗ୍ଧ ହୋଇ ତାକୁ ଖୋଜିବାକୁ ଜଙ୍ଗଲରୁ ଜଙ୍ଗଲ ବୁଲୁଥାଏ, ଏମାନେ ବି ସେମିତି ନିଜ ଭିତରର ଜିନିଷଟିକୁ ପାଇବା ପାଇଁ ଏଣେ ତେଣେ ଧାଉଁ ଥାଆନ୍ତି। ସୁଖ ସରଗର ଚିଜ ମା' ନିଜ ଭିତରୁ ତାକୁ ଖୋଜି ବାହାର କରିବାକୁ ହୁଏ।' ସୁନ୍ଦରମଣି ମନ ସ୍ଥିର କଲେ। ଗୋକୁଳ ତାଙ୍କୁ ଅନାଥ କରି ଦେଇଯାଇଛନ୍ତି ଠିକ୍, ତେବେ ସେ ନିରାଶ୍ରୟ ନୁହନ୍ତି। ବଞ୍ଚିବା ପାଇଁ ତାଙ୍କର ଅଛି ସୁନାଥାଳି ପରି ପନ୍ଦର ଏକର ଜମି। ମୁଣ୍ଡ ଗୁଞ୍ଜିବାକୁ ଏଇ ଖଞ୍ଜାଘର। ଘର ଚାରିପଟେ ଏ ଯୋଉ ନଡ଼ିଆ ଗଛମାନ ଧୀର ପବନରେ ଚଅଁର ହଲାଉଛନ୍ତି, ସେମାନେ ହେଉଛନ୍ତି ଜଣେ ଜଣେ ତାଙ୍କର ପୋଷଣାହାରୀ ପୁଅ ଭଳି। ପାଖରେ ଅଛନ୍ତି ସାନ ସାନ ଚାରିଜଣ ଗୋକୁଳଚନ୍ଦ୍ର। କାଲିପରି ସେମାନଙ୍କର ମୁଣ୍ଡକୁ ହାତ ପାଇଗଲେ, ସେମାନେ ମନ କଲେ ନିହିମାକରେ ପାହାଡ଼ ଓଲଟାଇବେ । ଏମାନଙ୍କୁ କୁଣ୍ଢାଇ ବାହୁନି ବସିଲେ, ଭଗାରୀମାନେ ନାକରେ ହାତ ଦେଇ ହସିବେ ସିନା!

ଆଉ ଥରେ ବୃକ୍ଷ ଦେବତାଙ୍କ ଚରଣରେ ପ୍ରଣତି ବାଡ଼ି ସୁନ୍ଦରମଣି ସେଦିନ ନୂତନ ସଂକଳ୍ପ ନେଇ ବାହୁଡ଼ି ଆସିଥିଲେ।

ସାନ-କାନଗୋଇଙ୍କର ଏଇ ପରିବାର ତେଣୁ ସମୟର ଉତ୍ତାଳ ଢେଉ ଭିତରେ ହଜିଗଲେ ନାହିଁ। ପିଲାମାନେ ଧୀରେ ଧୀରେ ବଡ଼ ହେଉଥିବାବେଳେ ସୁନ୍ଦରମଣି ଢାଲ ହୋଇ ସେମାନଙ୍କୁ ସୁରକ୍ଷା ଯୋଗାଇ ଦେଉଥିଲେ। ସେମାନଙ୍କର ଶିକ୍ଷା ଦୀକ୍ଷା ସମ୍ପର୍କରେ ଗୋକୁଳ ଯାହା ଚିନ୍ତା କରିଥିଲେ, ତାଙ୍କର ଅବର୍ତ୍ତମାନରେ ସେମିତି ଅବଶ୍ୟ ହୋଇପାରିଲା ନାହିଁ। ତଥାପି ସୁନ୍ଦରମଣି ବଡ଼ପୁଅକୁ ପାଞ୍ଚକୋଶ ଦୂରରେ ଥିବା ଇଂରେଜୀ ସ୍କୁଲରେ ଦାଖଲ କରିଥିଲେ। ଏହି କାମପାଇଁ କାନୁନ୍‌ଗୋ ପରିବାରର ବଧୂମାନଙ୍କ ପାଇଁ ସହସ୍ର ବିଧି ନିଷେଧର ଯେଉଁ ଲକ୍ଷ୍ମଣରେଖା

ପଡ଼ିଥିଲା, ପୁଅକୁ ସାଙ୍ଗରେ ଧରି ଗାଡ଼ି ଖଣ୍ଡକରେ ବସି ସୁନ୍ଦରମଣି ଯେତେବେଳେ ଗ୍ରାମର ସୀମାନ୍ତ ଅତିକ୍ରମ କରିଗଲେ ତାହା ଲଙ୍ଘିତ ହେବାରୁ ଗ୍ରାମୀଣ ସମାଜ ଗର୍ଜି ଉଠିଥିଲା। ପୁଣି ଦିନେ ସବୁ ଶାନ୍ତ ମଧ ପଡ଼ି ଯାଇଥିଲା। ବିନା ପ୍ରତିବାଦ, ପ୍ରତିରୋଧ, ଗର୍ଜନ ତର୍ଜନ ଦ୍ୱାରା ସୁନ୍ଦରମଣି ସେମାନଙ୍କୁ ବୁଝାଇ ଦେଇଥିଲେ ଯେ, ଅତିକ୍ରମଣ ହିଁ ହେଉଛି ଲକ୍ଷ୍ମଣରେଖାର ନିୟତି।

ପିଲାଟା ଭଲ ପଢୁଥିଲା। ତେବେ ଘରର ଅବସ୍ଥା ଦେଖି ସେ ଆଉ ବେଶୀ ପଢ଼ିବାକୁ ଚାହିଁଲା ନାହିଁ। ମାଟ୍ରିକ କ୍ଲାସରେ ପଢୁଥିବାବେଳେ କାହାକୁ କେମିତି କୁହାପୋଛାରେ ରେଳବାଇରେ ମୁକରିର୍ ହୋଇଗଲା। ସମୟ ବହିଯାଉଥିଲା। ଗୋକୁଳଙ୍କ ସ୍ମୃତି ଉପରେ ପରସ୍ତ ପରସ୍ତ ଧୂଳି ଜମିବାକୁ ଲାଗିଥିଲା। ବର୍ଷକେ ଥରେ ପୁରୋହିତ ଆସି କୁଶହସ୍ତ ରାମଚନ୍ଦ୍ରକୁ ମନ୍ତ୍ର ପଢ଼ାଉଥିଲେ, 'ଅହଂ ଶ୍ରୀ ରାମଚନ୍ଦ୍ର କାନୁନ୍‌ଗୋ ଦାସଶର୍ମା, କାଶ୍ୟପ ଗୋତ୍ର... ଅଦ୍ୟ ଅଷ୍ଟମ୍ୟାଂ ତିଥୌ ମାର୍ଗଶୀର୍ଷ ମାସି ପ୍ରେତଂ ଗୋକୁଳଚନ୍ଦ୍ର କାନୁନ୍‌ଗୋ ଶର୍ମଣଃ... ଅର୍ଘ୍ୟଂ ପ୍ରକ୍ଷିଚ୍ଛାମି... ତୃପ୍ୟତାମ୍ –" ଇତ୍ୟାଦି... ଏହାଛଡ଼ା ତଙ୍କୁ ମନେ ପକାଇବାକୁ ଫଟୋ ଖଣ୍ଡେ ବି ତ ନ ଥିଲା।

ପିଲାମାନେ ଜଣକ ପରେ ଜଣେ ଉଡ଼ି ଯାଉଥିଲେ। ରାମ ସେମାନଙ୍କ ପାଇଁ ବ୍ୟବସ୍ଥା କରୁଥିଲା। ଭରତ ପଛେ ପଛେ ଲକ୍ଷ୍ମଣ ରେଳବାଇରେ ଭର୍ତ୍ତି ହୋଇ ଯିବାପରେ ଶତ୍ରୁଘ୍ନ ଯେତେବେଳେ ସହରକୁ ଯିବା ପାଇଁ ପାଦ ଟେକି ବସିଛି, ସେତିକିବେଳେ ସୁନ୍ଦରମଣି ଲଗାମ୍ ଟାଣିଲେ। ଜରୁରୀ ଖବର ଦେଇ ରାମକୁ ଡକାଇ ଆଣି କହିଲେ, ତମେମାନେ ଭାବିଚ କ'ଣ ? ଜଣକ ପରେ ଜଣେ ତ ବାଟ କାଟିବାରେ ଲାଗିଚ ମୁଁ କ'ଣ ଯଖ ହେଇ ଚିରକାଳ ଏ ସମ୍ପତ୍ତି ଆଗୁଳି ବସିଥିବି ? ରାମଚନ୍ଦ୍ର ଚିନ୍ତିତ ହେଲେ। ସତେତ, ବୋଉର ବୟସ ହେଉଚି। ସବୁଦିନେ ତ ଏଠିକାର ଝମେଲା ସେ ତୁଲାଇ ପାରିବ ନାହିଁ। ଏ ପର୍ଯ୍ୟନ୍ତ ସେ ପାଟି ଫିଟାଇ ନାହିଁ। ଏକା ହାତରେ ଚାରି ଚାରିଟା ପିଲାଙ୍କୁ ମଣିଷ କରିଛି। ତାଙ୍କର ଭିଟା ଉପରେ ଏ ଯେଉଁ ପାଞ୍ଚଶେଣୀଆ ଇଟା ସିମେଣ୍ଟର ବିଶାଳ ଇମାରତ୍ ଠିଆ ହୋଇଛି, ଏ ସବୁ ତ ତାହାରି କୀର୍ତ୍ତି। ଭିଟାମାଟିର ଏ ଯେଉଁ କାୟା ପରିବର୍ତ୍ତନ ଏ ସବୁ ହୋଇଛି କାହାଲାଗି ? ପ୍ରକୃତରେ ଏ ପର୍ଯ୍ୟନ୍ତ ତା'

କଥା କେହି ଚିନ୍ତା କରି ନାହାନ୍ତି। ସବୁ କଥାରେ 'ବୋଉ' 'ବୋଉ' 'ବୋଉ ଅଛି' 'ବୋଉ ବୁଝିବ' କରି ଦାୟିତ୍ୱ ଏଡ଼ାଇ ଯାଇଛନ୍ତି। ମାତ୍ର ସବୁଦିନେ ଏ ସବୁ ଚଳିବ ନାହିଁ। ଆଜି ଯେତେବେଳେ ସେ ମୁହଁ ଖୋଲି କହିଲାଣି...

ଶେଷକୁ ସେଇଆ ଠିକ୍ ହେଲା। ଶତ୍ରୁଘନ ସହରକୁ ଯିବ ନାହିଁ। ପାଠ ତ ସୁଯୋଗ ଥାଇ ମଧ୍ୟ ପ୍ରାୟ ପଢ଼ିଲା ନାହିଁ। ଗଛମାଛ ଧାନ ମୁଗ – ଏଇଆ କରି ସମୟ କାଟିଲା। ସ୍କୁଲକୁ ଯିବାବେଳେ ନଡ଼ିଆଗଛରେ ଚଢ଼ି ଲୁଚିଲା। ଗାଁରେ ଥାଇ ତେବେ ସେ ଏଥର ଜମିବାଡ଼ି କଥା ବୁଝାବୁଝି କରୁ। ବାପାଙ୍କ ଅମଳରେ ଜମି ଯାହା ଥିଲା, ପିଲାମାନେ ଚାକିରି କରିଯିବା ପରେ ସୁନ୍ଦରମଣି ଆଉ କିଛି ବଢ଼ାଇଛନ୍ତି। ସେଇଆକୁ ଦେଖାଶୁଣା କଲେ ପେଟ ତା'ର ଅପୋଷା ରହିବ ନାହିଁ। ପୁଣି ଭଲମନ୍ଦକୁ ତ ଭାଇମାନେ ଅଛନ୍ତି।

ଶତ୍ରୁଘ୍ନର ବିବାହ ପରେ ସୁନ୍ଦରମଣି ଧୀରେ ଧୀରେ ନିଜକୁ ସମ୍ବରଣ କରି ନେଉଥିଲେ। ଘରସଂସାରର ପାଞ୍ଚଟା କାମ ସାଧାରଣ ଭାବରେ କରୁଥିଲେ ମଧ୍ୟ ସେଥିରେ ଯେମିତି ତାଙ୍କର ମନ ନ ଥିଲା। ବୟସ ବି ତାଙ୍କୁ ଆସି ସତୁରୀ ଡେଇଁଲା। ଶେଷଥର ପାଇଁ ସେ ରେଜିଷ୍ଟ୍ରି ଅଫିସ୍‌କୁ ଯାଇଥିଲେ ଦେଣା ଦାୟରେ ସମବାୟ ବିଭାଗ  ନିଲାମ କରୁଥିବା ବିକଳଚନ୍ଦ୍ରଙ୍କ ଶେଷ ଦୁଇ ଏକର ଧାନ ଜମିକୁ ନିଲାମ ଧରିବା ପାଇଁ। ରେଜେଷ୍ଟ୍ରି କବଲାରେ ଦସ୍ତଖତ କରୁଥିବା ସମୟରେ ତାଙ୍କୁ ଦେଖାଯାଉଥିଲା ନେପୂରୀ ଦେବୀଙ୍କ ମୁହଁ। ନାକଫୁଲାର ନୋଥହଲାଇ ସେ ଯେମିତି ଗର୍ଜନ କରୁଛନ୍ତି – ନିକଲ୍ ମୋ ଘରୁ ବାଞ୍ଝ, ତୋ ମୁହଁ ଚାହିଁଲେ ବରକତ୍ ନାହିଁ।' ନେପୂରୀ କୋଉ କାଳରୁ କୁଆଡ଼େ ହଜିଗଲେଣି। ରହିଯାଇଚି ତାଙ୍କର କଥା କେଇପଦ ଛାତିରେ ଗିରା ଟାଣିବା ପରି। ସେଦିନ ଗୋକୁଳଚନ୍ଦ୍ର ମଧ୍ୟ ମାତୃସମା ଭ୍ରାତୃବଧୂଙ୍କର କୋପକଟାକ୍ଷରୁ ବାଦ୍ ପଡ଼ି ନ ଥିଲେ। 'ଅଇଁଠାଚଟା କୁକୁର', ଏମିତି କେତେ କଥା ଯେ ତାଙ୍କୁ ଶୁଣିବାକୁ ହୋଇଥିଲା, ସେ ସବୁ ମନେପକାଇ ସୁନ୍ଦରମଣିଙ୍କ ଆଖିରୁ ଲୁହ ବହି ଆସିଲା।

କିଛିଦିନ ପୂର୍ବର ଆଉ ଗୋଟିଏ ଘଟଣାର ସ୍ମୃତି ତାଙ୍କର ମନରେ ଉଙ୍କିମାରିଲା। ମୁହଁ ସଞ୍ଜବେଳ। ସୁନ୍ଦରମଣି ଯଥାରୀତି ବୃକ୍ଷଦେବତାଙ୍କ ପାଦମୂଳେ ସଞ୍ଜବତୀ ଦେଇ ଗଳବସ୍ତ୍ର ହୋଇ ପ୍ରଣତି ବାଡ଼ି ଉଠିଲାବେଳକୁ କାହାର ଦୀର୍ଘ ନିଃଶ୍ୱାସ

ତାଙ୍କର କାନରେ ବାଜିଲା। ସେ ପ୍ରଥମେ ଚମକି ପଡ଼ିଲେ। ରକ୍ଷା ହେଲା – ସଞ୍ଜବେଳଟା ଗାଁ ଦାଣ୍ଡରେ କେହି କେହି ଯିବା ଆସିବା ବି କରୁଛନ୍ତି। ସେ ସାହସ ସଂଗ୍ରହ କରି ପଚାରିଲେ – "କିଏ ?" ତାଙ୍କର କଣ୍ଠ ଥରିଗଲା।

ଦଣ୍ଡକ ପରେ ନିମ୍ନ କଣ୍ଠରେ ଉତ୍ତର ଆସିଲା... ମୁଁ ଖୁଡ଼ୀ!

ସୁନ୍ଦରମଣି ଚକିତ ହେଲେ। ଖୁଡ଼ୀ!!! ତାଙ୍କର ମନ ପହଁରିଗଲା ସୁଦୂର ଅତୀତକୁ ଯେଉଁଦିନ ଠିକ୍ ଏହିଭଳି ଏକ ସଞ୍ଜରେ ମା'ପୁଅଙ୍କର ମିଳିତ ଆକ୍ରମଣରେ ବିପର୍ଯ୍ୟସ୍ତ ହୋଇ ଦୁଇଟି ନିରାଶ୍ରୟ ମଣିଷଙ୍କୁ କାନୁନ୍‌ଗୋ ପରିବାରର ଉଚ୍ଚପିଣ୍ଡାରୁ ତଳକୁ ଓହ୍ଲାଇବାକୁ ପଡ଼ିଥିଲା। ସେଦିନ – ଆଉ ଆଜି!! ମୁହୂର୍ତ୍ତକରେ ନିଜକୁ ସମ୍ଭାଳି ନେଇ ସୁନ୍ଦରମଣି କହିଲେ– "ଏ କ'ଣ ବିକ, ସାତପର ପରି ଏ ଦାଣ୍ଡଟାରେ କାହିଁକି ଠିଆ ହୋଇଛ ? ଆସ, ଘରକୁ ଆସ।"

ଖୁଡ଼ୀଙ୍କ ଡାକରାରେ ବିକଳ ଘରକୁ ଆସି ବିନା ଅବତରଣିକାରେ ଗୋଟିଏ ପ୍ରସ୍ତାବ ରଖିଥିଲେ। ଜରୁର୍ ଦରକାର। ସୁନାମାଟି ଗହୀରର ଦୁଇଏକର ଜମି ବନ୍ଧକ ରଖି ଖୁଡ଼ୀ ଯଦି ଟଙ୍କା ଦୁଇଶ' ଦିଅନ୍ତେ...

ସୁନ୍ଦରମଣି ଚିନ୍ତାକଲେ। ଏକା ଗାଁରେ ସେମାନେ ଅଛନ୍ତି। ତଥାପି ସେଇ ଅଭିଶପ୍ତ ଦିନ ପରଠାରୁ କାହାରି ଦେଖା ହୋଇ ନାହିଁ। କାନୁନ୍‌ଗୋ ପରିବାରରେ ଏମାନଙ୍କର ଗତିବିଧିକି ନେଇ ନିୟମିତ ଚର୍ଚ୍ଚା ହେଉଥିବାର ଶୁଣିଥିଲେ ହେଁ, ଏ ପରିବାରରେ ସେମାନଙ୍କ ନାମ ଥରଟିଏ ମଧ ଉଚ୍ଚାରିତ ହୋଇ ନାହିଁ। ଗୋକୁଳଚନ୍ଦ୍ରଙ୍କ ବର୍ତ୍ତମାନିର ତ ନୁହେଁ; ଆଉ ପିଲାମାନେ ତ ସେମାନଙ୍କୁ ଚିହ୍ନି ମଧ ନାହାନ୍ତି... ଅବଶ୍ୟ ଟଙ୍କା ତାଙ୍କ ପାଖରେ ଅଛି। ତେବେ...

ସୁନ୍ଦରମଣି କହିଲେ, "ବନ୍ଧକୀ କାରବାର ମୁଁ କରେ ନାହିଁ ବିକ। ଜମି ଯେତେବେଳେ ଏମାନଙ୍କର ସାତପୁରୁଷର ତେବେ ବନ୍ଧା ନୁହେଁ, କବଲା କରିଦେଲେ, ମୁଁ ବନ୍ଧାଛନ୍ଦା ପଡ଼ି ଯେମିତି ହେଲେ ତାକୁ ରଖିବି...।"

ବିନା ବାକ୍ୟ ବ୍ୟୟରେ ବିକଳ ଚନ୍ଦ୍ର ବିଦାୟ ନେଇ ଯାଇଥିଲେ। ସେଇ ଜମି ଏବେ ତାଙ୍କ ହାତକୁ ଫେରି ଆସିଚି...

ଗୃହସ୍ଥ ହିସାବରେ ଏଇ ଥିଲା ସୁନ୍ଦରମଣିଙ୍କର ଶେଷ ବୈଷୟିକ କର୍ମ। ଏବେ ବୃକ୍ଷ ଦେବତାଙ୍କ ସେବାରେ ତାଙ୍କର ଅଧିକ ସମୟ କଟୁଛି। ଦିନରେ ତିନିଥର ଗଛମୂଳକୁ ନିୟମିତ ଓଳାଓଳି କରିବା, ଉର୍ଦ୍ଧ୍ୱ ଦୃଷ୍ଟି ହୋଇ ଗଛର ସାମୟିକ ପରିବର୍ତ୍ତନକୁ ସମୀକ୍ଷା କରି ତା'ର ପ୍ରତିକାର କରିବା, ମୂଳର ପିଣ୍ଡିକୁ ନିତି ପ୍ରତି ଗୋବରରେ ଲିପିବା, ସକାଳୁ ଉଠି ଗଛ ମୂଳରେ ମୁରୁଜ ପକାଇବା, ଫୁଲଚନ୍ଦନ ଦେଇ ପୂଜା କରିବା କିମ୍ବା ସଞ୍ଜବତୀଦେଇ ପ୍ରଣାମ କରିବା – ଏଇଥିରେ ତାଙ୍କର ସମୟ କଟିଯାଉଥିଲା। ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ବୃକ୍ଷ ଦେବତା ଏ ପରିବାରକୁ ଶୁଭ ଦୃଷ୍ଟିରେ ଦେଖୁଥିବା ପର୍ଯ୍ୟନ୍ତ ପରିବାରର ସଦସ୍ୟମାନଙ୍କ ଅଗଗୋଡ଼ରେ କଣ୍ଟା ବାଜିବ ନାହିଁ।

ବୃକ୍ଷ ଆଗରେ ଏ ପରିବାରରେ କେତେ କେତେ ପରିବର୍ତ୍ତନ ହୋଇଗଲା। ଗୋକୁଳଚନ୍ଦ୍ରଙ୍କର ତିରୋଧାନ, ପିଲାମାନଙ୍କର ବଡ଼ ହେବା, ବିଦେଶଯାତ୍ରା, ବିବାହ, ସନ୍ତାନ ଲାଭ... ସାଂସାରିକ ଜୀବନର କେତେ ଛୋଟ ବଡ଼ ଘଟଣା ଜୀବନ ରଙ୍ଗମଞ୍ଚରେ ଗୋଟିକ ପରେ ଗୋଟିଏ ଆସିଲା ଗଲା... ବୃକ୍ଷଦେବତା ସବୁର ସାକ୍ଷୀ...

ସୁନ୍ଦରମଣି ନିୟମ କରିଥିଲେ। ପିଲାମାନେ ଦିନରେ ଥରେ ହେଲେ ଯେମିତି ବୃକ୍ଷଦେବତାଙ୍କୁ ପ୍ରଣାମ କରିବେ। ବିଦେଶ ଯାତ୍ରା ପୂର୍ବରୁ ତାଙ୍କ ପାଖରେ ନତ ହୋଇ ବିଦାୟ ନେବେ। ବାହାରୁ ଆସି ଘରେ ପଶିବା ପୂର୍ବରୁ ତାଙ୍କୁ ସମ୍ମାନ ଜଣାଇବେ। ଆଗ ବୃକ୍ଷ... ପରେ ସେ।

ପୁଅମାନଙ୍କ ବିବାହରେ ଏଇ ବୃକ୍ଷମୂଳେ ହିଁ ଦିଅଁମଙ୍ଗୁଳା କାମ କରାଯାଉଥିଲା... ଚଳଣିରେ ନାହିଁ, ପିଲାମାନଙ୍କର ଅମଙ୍ଗଳ ହେବ... ଏମିତି ନାନା କଥାକୁ ସୁନ୍ଦରମଣି କାନକୁ ନେଉ ନ ଥିଲେ। ବର-ବଧୂ ଗୃହରେ ପ୍ରବେଶ କରିବା ପୂର୍ବରୁ ପ୍ରଥମେ ବୃକ୍ଷ ଦେବତାଙ୍କର ଚରଣ ବନ୍ଦନା କରିବା ଏକ ପ୍ରଥା ହୋଇଯାଇଥିଲା।

କାର୍ତ୍ତିକ ମାସରେ ବୃକ୍ଷ ଦେବତାଙ୍କର ମହତ୍ତ୍ୱ ବଢ଼ିଯାଉଥିଲା। ଦଶଖଣ୍ଡି ମୌଜାରେ ଏଇ ଗୋଟିଏ ବୋଲି ବିଷ୍ଣୁ ବୃକ୍ଷ। ଏ ମାସ ପୁଣି ହେଉଛି ବିଷ୍ଣୁଙ୍କ ମାସ। ଏ ସମୟରେ ଏହାର ପତ୍ର, ପୁଷ୍ପ ଫଳରେ ବିଷ୍ଣୁର ନିବାସ ବୋଲି ପୁରାଣ କହେ। ରାତି ନ ପାହୁଣୁ ଗାଧୋଇ ପାଧୋଇ ଚିତା ଚଇତନ ହୋଇ

ସଂକୀର୍ତ୍ତନିଆମାନେ ପହଞ୍ଚି ଯାଆନ୍ତି। ଦଣ୍ଡେ ଘଡ଼ିଏ ବୃକ୍ଷ ପରିକ୍ରମା କରି ଉଦ୍ଦଣ୍ଡ କୀର୍ତ୍ତନ କଲାପରେ ସେମାନେ ଦେବଦର୍ଶନକୁ ବାହାରି ଯାଆନ୍ତି। ତା'ପରେ ଆସନ୍ତି ହବିଷ୍ୟାଳୀମାନେ। ସେମାନେ ବି ଅନ୍ଧାର ଥାଉ ଥାଉ ବୁଡ଼ ପକାଇ ବାଲୁଙ୍କା ପୂଜି 'ଦାମୋଦରହୋ ଦାମୋଦର, ପାପୀ ଜନମରୁ ପାରିକର' ଗୀତ ବୋଲି ବୋଲି ବୃକ୍ଷ ପରିକ୍ରମାରେ ପହଞ୍ଚିଯାଆନ୍ତି। ସକାଳ ଗାଧୁଆର ପ୍ରସ୍ତୁତି ଆରମ୍ଭ ହୁଏ ପୂର୍ବ ଦିନ ସନ୍ଧ୍ୟାରୁ। ଏହାର ଦାୟିତ୍ୱ ନିଅନ୍ତି ପରିବାରର ବୟସ୍କା ଝିଅମାନେ। ଯେଉଁ ପରିବାରରେ ଝିଅ ନାହିଁ, ସେ ପରିବାରର ହବିଷ୍ୟାଳୀମାନଙ୍କର ଦାୟିତ୍ୱ ମଧ୍ୟ ଏମାନେ ବାଣ୍ଟିକୁଣ୍ଟି ନେଇ ଯାଆନ୍ତି। ଗାଧୁଆ ସମୟରେ ଦରକାର ହେଉଥିବା ଖଣ୍ଡିଏ ଶୁଖିଲା ଲୁଗା, ଘଷାପୋଛା ହେବା ପାଇଁ ଗାମୁଛା ଖଣ୍ଡିଏ, ଗୋଟିଏ ଛୋଟ ବୋତଲରେ କିଛି ନଡ଼ିଆ ତେଲ, ଖଣ୍ଡିଏ ଦାନ୍ତକାଠି... ଏସବୁ ସହିତ ରହୁଥିଲା, ସବୁଠୁଁ ମୂଲ୍ୟବାନ୍ ଦ୍ରବ୍ୟ – ଗୋଟିଏ କନାରେ ବନ୍ଧା ଯାଇଥିବା ଅଁଳା କୋଳିଟିଏ – ଗାଧୋଇ ସାରିକନା ସହିତ ଏହାକୁ ବୁଡ଼ାଇ ସେଇ ପାଣିକୁ ହବିଷ୍ୟାଳୀମାନେ ଛିଞ୍ଚି ହେଉଥିଲେ। ଏଥିରେ କୋଟି ଜନ୍ମର ପାପ ଧୋଇ ହୋଇଯାଉଥିଲା। ଏ ଦୁର୍ଲଭ ଫଳଟି ସମସ୍ତଙ୍କ ପାଖରେ ଉପଲବ୍ଧ ହେବା ସମ୍ଭବ ନଥିଲା। ତେଣୁ ଗୋଟିଏ ଫଳ କୋଟିଏ ପାପ ନାଶ କରୁଥିଲା ହାତକୁ ହାତ ବୁଲିବୁଲି। ଦୈବାତ୍ ଏହା ହଜିଗଲେ ମହା ବିଭ୍ରାଟ ଦେଖାଦେଉଥିଲା। ତେଣୁ ଏହାର ଦାୟିତ୍ୱରେ ଥିବା ଝିଅଟିକୁ ଏହାର ଗଣତାନ୍ତ୍ରିକ କ୍ରିୟାଶୀଳତା ଦିଗଟି ପ୍ରତି ସତର୍କ ଦୃଷ୍ଟି ରଖିବାକୁ ପଡୁଥିଲା। ଗୋଟିଏ ପାଚିଆରେ ପ୍ରତ୍ୟେକ ହବିଷ୍ୟାଳୀଙ୍କର ସ୍ନାନୋପରାନ୍ତ ଉପକରଣମାନ ରଖାଯାଇ ନଈକୂଳକୁ ନିଆଯାଉଥିଲା ଏବଂ ଦାୟିତ୍ୱରେ ଥିବା ଝିଅଟି ଯାହାକୁ ଯାହାର ପାଚିଆଟିମାନ ଦେଇଦେବା ପରେ ତା'ର ଦାୟିତ୍ୱ ଆପାତତଃ ଶେଷ ହୋଇଯାଉଥିଲା।

ବୃକ୍ଷରେ ପୁଷ୍ପୋଦ୍‌ଗମ ହେବା ଦିନୁ ଶତ୍ରୁଘ୍ନ, କୋଠିଆ ପିଲା ଏବଂ ସ୍ୱୟଂ ସୁନ୍ଦରମଣି ତାହାର କ୍ରମ ବିକାଶ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ। ସଦା ନର୍ତ୍ତନଶୀଳ ଗୁଣ୍ଡୁଚି, ଉଚ୍ଛୃଙ୍ଖଳ ପକ୍ଷୀ, ଅଦିନିଆଁ ଝଡ଼ବର୍ଷା, କୁହୁଡ଼ି କାକର ଦାଢ଼ରୁ ବଞ୍ଚି ବର୍ତ୍ତି ଯେତୋଟି ଫଳ ବା ପରିଣତିରେ ପହଞ୍ଚୁଥିଲା, ତା'ର ସଂଖ୍ୟା, ଏଥି ନିମନ୍ତେ ହେଉଥିବା ଦାବୀ, ଅନୁରୋଧ, ଉପରୋଧଠାରୁ ସବୁବେଳେ ବହୁ ନିମ୍ନରେ ରହୁଥିଲା।

ଏଥିପାଇଁ ତେଣୁ ସୁନ୍ଦରମଣିଙ୍କୁ ବଡ଼ ସାବଧାନରେ ବଣ୍ଟନ ପ୍ରକ୍ରିୟାକୁ ଚୂଡ଼ାନ୍ତ ରୂପ ଦେବାକୁ ହେଉଥିଲା।

ଯେହେତୁ ଭୋର୍ ହେଉଣୁ ନ ହେଉଣୁ ବୃକ୍ଷ ମୂଳକୁ ଭକ୍ତମାନଙ୍କର ସୁଅ ଛୁଟୁଥିଲା, ତେଣୁ ତା'ର ବହୁ ପୂର୍ବରୁ ତାକୁ ଏଥିନିମନ୍ତେ ପ୍ରସ୍ତୁତ କରିବାକୁ ପଡୁଥିଲା। ଗଛମୂଳ ଲିପାପୋଛା କରାଯାଇ, ତା' ଉପରେ ବହୁ ବର୍ଣ୍ଣର ମୁରୁଜରେ ଉତ୍କଳୀୟ ନାରୀର କଳାକାରିତାର ଚମତ୍କାର ନମୁନାମାନ ସୃଷ୍ଟି କରାଯାଉଥିଲା। ପୂର୍ବେ ଏସବୁ ବ୍ୟବସ୍ଥା ନିଜେ ସୁନ୍ଦରମଣି ଦେଖୁଥିଲେ। ଏବେ ତାଙ୍କୁ ନିଜକୁ ହବିଷ୍ୟାଳୀମାନଙ୍କ ସହିତ ନଈକୁ ଯିବାକୁ ପଡୁଥିବାରୁ ତାଙ୍କ ପାଖରେ ଏଥି ନିମନ୍ତେ ଅବସର ନ ଥିଲା। ଦାୟିତ୍ୱ ତେଣୁ ବୋହୂ ହାତକୁ ଚାଲିଆସିଥିଲା। ପାଖ ଆଖର କିଛି ଅନୂଢ଼ା ଝିଅ ତାକୁ ସାହାଯ୍ୟ କରୁଥିଲେ। କୋଠିଆ ପିଲା ଦିଙ୍ଗବର ଗୋବର ପାଣି ଗୋଳାଇ ବଡ଼ିଶାରେ ଗଛ ଚାରି ଚାରିପଟେ ଓଳାଇ ଦେଉଥିଲା। ଯଦିଓ ଏ ବ୍ୟବସ୍ଥା ସୁନ୍ଦରମଣିଙ୍କର ମନଃପୂତ ନ ଥିଲା, ତଥାପି ସେ ନିରୂପାୟ ଥିବାରୁ ଏକପ୍ରକାର ମାନିନେବାକୁ ବାଧ୍ୟ ହୋଇଥିଲେ।

ଏଗାରଟା ସୁଦ୍ଧା ଗଛ ମୂଳ ଫାଙ୍କା ହୋଇଯିବାରୁ ଏଥର ଦିଙ୍ଗର ଦ୍ୱିତୀୟ ପର୍ଯ୍ୟାୟ କାମ ଆରମ୍ଭ ହୋଇଯାଉଥିଲା। ବଡ଼ ବଡ଼ ଅଖା-ପାଲ ଦ୍ୱାରା ବୃକ୍ଷର ତିନିପଟକୁ ଘେରାଇ ସେ ଏକ କ୍ଷୁଦ୍ର ଅବରୋଧ ସୃଷ୍ଟି କରୁଥିଲା। ଗୋଟିଏ କୋଣରେ ଅଧ୍ୟାଟିଏ ଖୋଳି କିଛି ଶୁଖିଲା ଜାଳକାଠ ତା' ପାଖରେ ଥୋଇଦେଲେ ଆପାତତଃ ତା'ର କାମଶେଷ ହୋଇଯାଉଥିଲା। ପରେ ରାତିରେ ପାଲ ସବୁକୁ ଖୋଲି ରଖିବା, ଆଠଦଶ ଖଣ୍ଡ କଦଳୀପତ୍ର କାଟିଆଣି ଯୋଗାଇବା ଏବଂ ପରଦିନ ନିମନ୍ତେ ବୃକ୍ଷମୂଳକୁ ପ୍ରସ୍ତୁତ କରି ରଖିବା ଏସବୁ ମଧ୍ୟ ତାହାରି କାମ।

ହାତରେ ଗଙ୍ଗାପାଣିର ବୋତଲ ଧରି ତୁଣ୍ଡରେ 'ନୃଷଁ ନୃଷଁ' ନାମ ଉଚ୍ଚାରଣ କରୁ କରୁ (ତାଙ୍କର କେଉଁ ଜ୍ଞାତି ଦେଢ଼ଶୂରଙ୍କ ନାମ କୃଷ୍ଣ ହୋଇଥିବାରୁ) ଏହାପରେ ଆସରରେ ପ୍ରବେଶ କରନ୍ତି ସୁନ୍ଦରମଣି। ଚାରିଆଡ଼ର ବ୍ୟବସ୍ଥା ଆଡ଼େ ଥରେ ଆଖି ପକାଇଦେଇ ସେ ଗଙ୍ଗାପାଣି ଛିଞ୍ଚିବା ଆରମ୍ଭ କରନ୍ତି। ଏହାପରେ ବୋହୂକୁ ଡାକ ମାରନ୍ତି। ଏହି ମାସଟିଯାକ ନିମନ୍ତେ ଥରେ ସୁନ୍ଦରମଣିଙ୍କର ସ୍ୱପାକ ଆହାର। ବୋହୂ ନାଲିବଗଡ଼ା ଅରୁଆଚାଉଳ, ବନ୍ତଳ କଦଳୀ, ମୁଗଯାଇ, ସାରୁ,

ଓଉ, ଘିଅ ଆଦି ରୋଷେଇ ସରଞ୍ଜାମ ଧରି ଚାଲିଆସନ୍ତି। ଅହ୍ୟାରେ ଏକାଥରେ ଦୁଇଟି ନାତିଦୀର୍ଘ ପିତଳ ହାଣ୍ଡି ବସେ, ଯାହା ପୂର୍ବରୁ ମାଟି ବୋଳାଯାଇ ଚୁଲି ପାଖରେ ରଖାଯାଇଥାଏ। ସୁନ୍ଦରମଣି ରୋଷେଇ ଆରମ୍ଭ କରନ୍ତି। ବୋହୂ ଯୋଗାଣିଆ ହୋଇଥାଏ। ଦ୍ୱିଜବର କିନ୍ତୁ ଆଖପାଖରେ ଥାଏ। କୁକୁର ବିଲେଇ ଯେତେହେଲେ ଅବୋଲା ଜନ୍ତୁ ନା... ସେମାନେ ଏସବୁ ନିଷ୍ଠାର ମହିମା ବୁଝିବେ କାହୁଁ? ଦ୍ୱିଜବର ତେଣୁ ଏଇସବୁ ଅନାହୂତ ଅନୁପ୍ରବେଶକାରୀମାନଙ୍କର ଗତାଗତ ଆଡ଼େ ତୀକ୍ଷ୍ଣ ଦୃଷ୍ଟି ଦେଇ ବାହାରେ ବୁଲୁଥାଏ।

ପରିବାରରେ ସେମାନେ ଶତ୍ରୁଘ୍ନଙ୍କର ଶିଶୁ ସନ୍ତାନଙ୍କୁ ମିଶାଇ ସାଢ଼େଚାରିଜଣ ଲୋକ। ରୋଷେଇ କିନ୍ତୁ ହୁଏ ଦଶପନ୍ଦର ଜଣଙ୍କ ପାଇଁ। ବର୍ଷକରେ ଦିନ କେଇଟାର କଥା। ପାଞ୍ଚ ଲୋକଙ୍କର ଆଶା। ସୁନ୍ଦରମଣି ଏକା ଖାଇଦେଲେ ତାଙ୍କୁ ଭୋଗ ହେବ କିଆଁ? ଘରୁତ ଚାଉଳ, ଡାଲି, ସାରୁ, କଦଳୀ, ଓଉ ସବୁ ମିଳୁଛି। ଆଶ୍ୱିନ ମାସରୁ ସୁନ୍ଦରମଣି ଧାନ ଶୁଖାଇ, କୁଟୁଣୀ ଲଗାଇ କୁଟି ବଡ଼ ଘୁମରେ ସାଇତି ରଖିଥାଆନ୍ତି। ମୁଗ ଧୁଆ, ଶୁଖା, ରଗଡ଼ା – ଏସବୁ କାମ ମଧ୍ୟ କୁଆଁର ପୁନେଇଁ ଆଗରୁ ଶେଷ ହୋଇଯାଏ। ସବୁ ପାଇଁ ଲୋକ ଅଛନ୍ତି। ସୁନ୍ଦରମଣି କେବଳ ତଦାରଖ କରନ୍ତି।

ରୋଷେଇ ସରିବା ପରେ ପ୍ରଥମେ ସୁନ୍ଦରମଣି ବୃକ୍ଷ-ଦେବତାଙ୍କ ନିକଟରେ ଖଣ୍ଡେ କଦଳୀପତ୍ରରେ ପ୍ରସାଦ ଉତ୍ସର୍ଗ କରିଦେଇ ଗଳବସ୍ତ୍ର ହୋଇ ପ୍ରଣାମ କରନ୍ତି। ଏହାପରେ ତାଙ୍କର ଆହାର ପର୍ବ। କଦଳୀପତ୍ରରେ ଯେତିକି ବଢ଼ାଯାଇଥାଏ ସେତିକି। ସୁନ୍ଦରମଣି ସ୍ୱଳ୍ପାହାରୀ। ଏହାପରେ ବୋହୂ ପ୍ରସାଦକୁ ଛୁଇଁବାର ଅଧିକାର ପାଏ। କଦଳୀପତ୍ର ପକାଯାଇ ଆଖପାଖରେ ଥିବା ପ୍ରତ୍ୟାଶୀମାନଙ୍କୁ ଆହ୍ୱାନ କରାଯାଏ। ସୁନ୍ଦରମଣିଙ୍କର ଆହାର ତ ସନ୍ଧ୍ୟାପୂର୍ବରୁ ସରିଯାଇଥାଏ। ତେବେ ଅସ୍ଥାୟୀ ରୋଷେଇଶାଳର କାମ ସାରି ବୋହୂର ଫେରିବାବେଳକୁ ଦ୍ୱିଜବର ଚଉରାମୂଳରେ ପ୍ରୋଥିତ ଦୀର୍ଘ ବଂଶ ଦଣ୍ଡ ଉପରେ ଆକାଶଦୀପ ଜାଳି ଦେଇସାରିଥାଏ। ନଈରୁ ଗାଧୋଇ ବୃକ୍ଷ ପରିକ୍ରମା – ଦେବଦର୍ଶନ ପରେ ସୁନ୍ଦରମଣିଙ୍କର ଆଉ ଗୋଟିଏ କାମ ଥାଏ। ସେଇଟି ହେଉଛି କାର୍ତ୍ତିକ ମାହାତ୍ମ୍ୟ ପୋଥିରୁ ନିତି ଅଧ୍ୟାଏ ଲେଖା ଶ୍ରବଣ। କୁଳ ପୁରୋହିତ ବଳି ରଥେ ଏଥିପାଇଁ ନିଯୁକ୍ତ ଥାଆନ୍ତି। ଗାଁରେ ତାଙ୍କର

ଆଉ ପାଞ୍ଚଘର ଯଜମାନ ଅଛନ୍ତି। ସମସ୍ତଙ୍କ ଘରେ ତାଙ୍କୁ ଏଇ କାମଟି କରିବାକୁ ପଡ଼େ। ମାସ ସାରା ସେ ବଡ଼ ହରବରରେ ଥାଆନ୍ତି। ପୋଥି ବି ଲେଖାଯାଇଛି ସେମିତି – ତିରିଶ ଦିନକୁ ତିରିଶି ଅଧ୍ୟାୟ। ସେଇକଥା ଦିନକୁ ଦଶଘରେ ପଢ଼ି ପଢ଼ି ତାଙ୍କର ପ୍ରାଏ ମୁଖସ୍ଥ ହୋଇଯାଇଥାଏ। ପୋଥି ଉପରେ ତେଣୁ ଖାଲି ତାଙ୍କର ଆଖି ପହଁରି ଯାଉଥାଏ। ଗୋଟିଏ ଘରେ 'ଇତିଶ୍ରୀ କାର୍ତ୍ତିକମାହାତ୍ମ୍ୟେ ମହାପୁରାଣେ... ବ୍ୟାସ ବୈୟାସିକ୍ୟାଂ ସମ୍ବାଦେ...' ଇତ୍ୟାଦି ବୋଲୁ ବୋଲୁ ପୋଥିର ଡୋରକୁ ସମ୍ଭାଳୁ ସମ୍ଭାଳୁ ସେ ପରବର୍ତ୍ତୀ ଗୃହ ନିମନ୍ତେ ପ୍ରସ୍ତୁତ ହୋଇଯାଆନ୍ତି। ଦାଣ୍ଡରୁ ଭିଟାରେ ପାଦ ଦେବା ପୂର୍ବରୁ ତାଙ୍କର ଉଚ୍ଚ କଣ୍ଠରୁ ଶୁଣାଯାଉଥାଏ... "ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ, ପଦ୍ମୁ ଗଲୁଚି ମକରନ୍ଦ" ଇତ୍ୟାଦି। ନାନାଙ୍କ ପାଟି ଶୁଣି ସୁନ୍ଦରମଣି ବାହାରକୁ ଆସନ୍ତି। ବେକରେ କାନିଗୁଡ଼ାଇ ପୁରୋହିତଙ୍କ ପାଖରୁ ତିନିଚାରି ହାତ ଦୂରରେ ହାତ ଯୋଡ଼ି ବସନ୍ତି ଯେ, ପୋଥି ଗୁଡ଼ା ହେବା ପର୍ଯ୍ୟନ୍ତ।

କାର୍ତ୍ତିକ ମାସ ସାରା ସୁନ୍ଦରମଣିଙ୍କର ଏଇ ହେଉଚି ଦିନଚର୍ଯ୍ୟା। କାର୍ତ୍ତିକ ସରୁ ସରୁ ମାର୍ଗଶୀର। ମାଣବସା ଲକ୍ଷ୍ମୀପୂଜା ସୁଦଶାବ୍ରତ... ପୁଣି ସେଇ ଧାନକୁଟା, ପିଠାପଣାର ଆୟୋଜନ, ସୁନ୍ଦରମଣିଙ୍କୁ ତର କାହିଁ?

ଓଷାବ୍ରତ, ପୂଜାପାର୍ବଣ ଭିତରେ ଏମିତି ସୁନ୍ଦର ମଣିଙ୍କର ବର୍ଷ, ମାସ, ଦିନ ଦଣ୍ଡ ବାଣ୍ଟି ହୋଇଯାଉଥାଏ। ତାହାରି ଭିତରେ ସେ କିନ୍ତୁ ବୃକ୍ଷ ଦେବତାଙ୍କର ପରିଚର୍ଯ୍ୟା କରିବାକୁ ମୁହୂର୍ତ୍ତେ ବି ଭୁଲନ୍ତି ନାହିଁ। କେତେଦିନ ପୂର୍ବେ... ଚାରିପାଞ୍ଚ ଯୁଗ ଆଗରୁ... ସେତେବେଳେ ତାଙ୍କୁ କେତେ ବା ବୟସ... ଖୁବ୍ ଜୋର୍‌ରେ କୋଡ଼ିଏ... ଗୋଟିଏ ସାମାନ୍ୟ ପାତ୍ରରେ ଏଇ ଗଛଟି ତାଙ୍କ ସାଙ୍ଗରେ ଆସିଥିଲା। ସେତେବେଳେ ସେ ଏହାର ମହିମା ବୁଝି ନଥିଲେ ବି ଗୁରୁଦେବଙ୍କ କଥା ଭୁଲି ନଥିଲେ। ପରିବାରର ସେତେବେଳେ ଯୋଉ ଅବସ୍ଥା! ମାମୁଁ ମାଇଁ ଦି' ଜଣଙ୍କୁ ନେଇ ପରିବାର। ଘରଛାଡ଼ି ସେମାନେ କହିଲା ପରି ବାଟରେ ବସିଛନ୍ତି ଦେଢ଼ଶୁର ଥିଲେ ଅବଶ୍ୟ ଏ ଅବସ୍ଥା ହୋଇନଥା'ନ୍ତା। ମାତ୍ର ସେ ବି ଅସମୟରେ ଚାଲିଗଲେ। ଆଶାଭରସା କିଛି କାହିଁ ଦିଶୁନାହିଁ। ତା' ଉପରେ ସେ ପୁଣି ନିଃସନ୍ତାନ।– ବାଂଝ ଅପବାଦ ଗାଁ ସାରା... ଏମିତି ସମୟରେ ଗୋକୁଳଙ୍କର

ଯୋଉ ଅସହାୟ ଅବସ୍ଥା, ସେଥିରେ ସେ ଯେ କିଛି କରିପାରିବେ, ଏ ଭରସା ତାଙ୍କ ନିଜରତ ନଥିଲା। ଅନ୍ୟମାନଙ୍କ କଥା କ'ଣ କହିବ ?

ଭାଇଙ୍କ ମରଣ ଖବର ପାଇବା ଦିନରୁ ସେ ଏକପ୍ରକାର ବୋବା ହୋଇଯାଇଛନ୍ତି। ଯୋଉଠି ବସିଛନ୍ତି ସେଇଠି। ପାଞ୍ଚଥର ଡାକିଲେ ଥରେ 'ଓ' କରନ୍ତି। ଏ ଭଳିମଣିଷକୁ ନେଇ କେମିତି ସଂସାର କରିବେ ସୁନ୍ଦର ମଣି ! ଆଗରେ ପାହାଡ଼ ଭଳି ଜୀବନ... କ'ଣ ହେବ ତାଙ୍କର ?

ଏତିକିବେଳେ ତାଙ୍କ ମନରେ ତୀର୍ଥଯାତ୍ରା କରିବା କଥାଟା ଆସିଥିଲା। କୌଣସି ମତେ ବୁଝାଇ ସୁଝାଇ ଗୋକୁଳଙ୍କୁ ରାଜି କରିଥିଲେ। ଶସ୍ତାକାଳ... ବାଟଖର୍ଚ୍ଚ କୌଣସି ମତେ ଯୋଗାଡ଼ ହୋଇ ଯାଇଥିଲା। ବୃନ୍ଦାବନରୁ ବିଦାୟ ନେବା ସମୟରେ ଗୁରୁଦେବ ଯେତେବେଳେ ଟିଣଡ଼ବାରେ ଏଇ ନିର୍ଜୀବ ଗଛଟିକୁ ତାଙ୍କ ହାତକୁ ବଢ଼ାଇ ଦେଇଥିଲେ, ସେତେବେଳେ ସୁନ୍ଦରମଣି ଭାବୁଥିଲେ, ଘରେ ପହଞ୍ଚିବା ପର୍ଯ୍ୟନ୍ତ ଇଏ ବଂଚିଥିବ ତ !

ତା'ପରେ ତ କେତେ କଥା ଘଟିଗଲା। ପରିବାର ରେ କେତେକେତେ ଝଡ଼ବତାସ ଉଠିଲା। ମହାଝଡ଼ ତ କହିଲା ପରି ଗୋକୁଳଙ୍କର ଅଚାନକ ବିଦାୟ। ସବୁଏଇ ମହାତ୍ମା ଦେଖିଛନ୍ତି। ସବୁ ଜାଣିଛନ୍ତି। ବାହାରୁ ବିପଦର ସୁରାକ୍ ପାଇବା ମାତ୍ରେ ବାଛୁରୀ ଯେମିତି ଏକ ମୁହାଁ ହୋଇ ମାଆ ପାଖକୁଧାଏଁ, ସେମିତି ତାଙ୍କ ସଂସାରରେ ବତାସର ଧାସ ବାଜିବା ମାତ୍ରକେ ସେ ସେଇ ମହାତ୍ମାଙ୍କ ପାଖକୁ ଦଉଡ଼ି ଆସିଛନ୍ତି, ତାଙ୍କ ପାଖରେ ଲୁହଢ଼ାଳିଛନ୍ତି ଆଉ ହାତେ ହାତେ ଫଳବି ପାଇଛନ୍ତି ! କାନୁନ୍‌ଗୋ ବଂଶର ଏଇ ଶାଖା ବୁଡ଼ିମ୍ରିବାକୁ ବସିଥିବା ବେଳେ ଏହାଙ୍କ କରୁଣାରୁ ପୁଣି ଭାସି ଉଠିଛି।

ଭକ୍ତି ହୁଏତ ଏକ ଡିଆଁ ରୋଗ। ନହେଲେ ତାଙ୍କ ଦେଖା ଦେଖି ଆଉ ପାଞ୍ଚଖଣ୍ଡି ଗାଁର ଲୋକ ଏଇ ମହାତ୍ମାଙ୍କ ପାଖକୁ ଧାଇଁ ଆସନ୍ତେ କାହିଁକି ? ସେମିତି ଫଳ ପାଉଛନ୍ତି ବୋଲିସିନା ! 'ବୃନ୍ଦାବନୀ-ଅଁଳା ମହାତମା' ସତରେ ତାଙ୍କ ପାଇଁ ବିଧାତାଙ୍କର ଏକ ଆଚମ୍ବିତ ଦାନ...।

ଅଶୀବର୍ଷ ପାରିକଲେ ସୁନ୍ଦରମଣି। ଆଉ କେତେଦିନ ? କେତେଦିନ ଆଗରୁ ସେ ଗୋକୁଳଙ୍କୁ ସପନ ଦେଖିଛନ୍ତି । ଗଲାବେଳେ ତାଙ୍କର ଯୌବନ ରୂପ- ଅବିକଳ

ସେଇ ରୂପରେ । ତାଙ୍କ ଆଗରେ ଆସି ଚୁପ୍ ହୋଇ ଠିଆ ହୋଇଛନ୍ତି। ତାଙ୍କୁ ପଚାରୁଛନ୍ତି... ଆଉ କେତେଦିନ ସୁନ୍ଦ? ସେ ଅଭିମାନରେ କହୁଛନ୍ତି–ତମେତ ମୋତେ ଏକା କରି ଦେଇ ଚାଲିଗଲ। ସେ କହୁଛନ୍ତି... ତମେତ ଯିବାକୁ ଚାହୁଁ ନାହଁ... ନ ହେଲେ ତମକୁ ବି ସାଙ୍ଗରେ ନେଇ ଯାଆନ୍ତି।

ହଠାତ୍ କଡ଼କଡ଼ ମଡ଼୍ ଶବ୍ଦରେ କୋଉଠି ଘଡ଼ଘଡ଼ି ପଡ଼ିଲା। ସେଥିରେ ସୁନ୍ଦରମଣିଙ୍କର ନିଦ ଭାଙ୍ଗିଗଲା। ବାହାରେ ପବନର ସୁଉ ସୁଉ ଗର୍ଜନ। ବର୍ଷା ହେଲା ନା କ'ଣ! ସେ ଭାବୁଥିଲେ। ଦିନେ ନାହିଁ, କାଳେ ନାହିଁ। ଆଜି ଏତେ ବର୍ଷପରେ ସେ ଗୋକୁଳଙ୍କୁ ସପନଦେଖିଲେ କାହିଁକି? ଅନ୍ଧାର ଘର ଭିତରେ ସତେଯେମିତି ଏବେବି ତାଙ୍କର ଛାଇ ଘୂରି ବୁଲୁଚି! ଶେତା ମୁହଁରେ ଟୋପାଏ ରକତ ନାହିଁ! ସେଇ ଅସୁଖୀ ମୁହଁ ଆଡ଼କୁ ଅନାଇ ସୁନ୍ଦରମଣିଙ୍କର ପ୍ରାଣ ମନ୍ଥି ହୋଇ ଯାଉଚି। ସେତ ଜୀବ ଥିଲା ଯାଏ ତାଙ୍କୁ ସୁଖ ଦେବାରେ କେବେ ହେଳା କରିନାହାନ୍ତି! ସୁନ୍ଦରମଣି ଗୁଣୁଗୁଣୁ ହୋଇ କହୁଥିଲେ। ମୁଁ ତ ଏବଯାଏ ତମ ସଂସାରକୁ ଯଖଭଳି ଜଗି ବସିଚି। ତମ ପିଲାଙ୍କୁ ଅଣ ହେଳା କରିନାହିଁ... ତମ ହାତରେ ଏହାର ଭାର ଦେଇ ଚାଲିଯିବାକୁ ମୁଁତ ତିଆରି ହେଇ ରହିଚି । ତମେ ନବାକୁ ଚାହିଁଲ ନାହିଁ ତ ମୁଁ କ'ଣ କରିବି?

ସୁନ୍ଦରମଣି ଚାରିଆଡ଼କୁ ଚାହିଁଲେ। ଛାଇ କେତେବେଳୁ ମିଳାଇ ଗଲାଣି। ସେ କ'ଣ ତେବେ ସପନ ଦେଖୁଥିଲେ? ଲୋକେ କହନ୍ତି... ତେବେ କ'ଣ ତାଙ୍କର...

ଏବେ ଦିନେ ଦିନେ ରାତିରେ ତାଙ୍କୁ ବାହାରୁ କ'ଣ ଶବ୍ଦ ଶୁଣାଯାଉଚି। ବେଳେବେଳେ ପୁଣି ଶୁଣିବାକୁ ମିଳୁଚି ଶିଶୁଙ୍କର ଯନ୍ତଣା ଦାୟକ କାନ୍ଦଣା ସାଙ୍ଗକୁ କୁକୁର କଣ୍ଠରୁ କରୁଣ ଲହରା ଏତେ ରାତିରେ କାହାର ପିଲା ଏତେ ବିକଳ ହେଇ କାନ୍ଦିବ! ଅଥବା ବିତିଯାଇଥିବା ଦିନଗୁଡ଼ିକର ହାହାକାର ତାଙ୍କରି ଭିତରେ ଶବ୍ଦ ହୋଇ ବାଜୁଚି!

ହଠାତ୍ ପାଦତଳୁ କ'ଣ ଗୋଟାଏ ସିର୍‌ସିର୍ ହୋଇ ଦିହ ଭିତରେ ଉପର ଆଡ଼କୁ ଉଠିଆସୁଥିବା ଭଳି ଲାଗିଲା ତାଙ୍କୁ। ଯେମିତି ସବୁ ରକ୍ତଯାକ ଓଟାରି ହୋଇ ମଥା ଆଡ଼କୁ ଠେଲି ହେଇ ଯାଉଚି। ଗୋଟାଏ ମୁନିଆଁ ତତଲା ଲୁଗା କଣ୍ଟା ଯେମିତି ତାଙ୍କ ମୁଣ୍ଡ ଭିତରେ କିଏ ମାଡ଼ି ଦଉଚି ! ସୁନ୍ଦର ମଣି ପାଟି କରି

କାହାକୁ ଡାକିବାକୁ ଚେଷ୍ଟା କଲେ। କଣ୍ଠରୁ ବାହାରିଗଲା ଏକ ଗଁ ଗଁ ଶବ୍ଦ। ଦେହ ଭିତରୁ ଶେଷ ପବନଟିକ ବାହାରି ଯିବା ଆଗରୁ ସେ ଯେମିତି କିଛି କହିବାକୁ ଚାହିଁଲେ। ତାଙ୍କର ପ୍ରାଣହୀନ ଖୋଲା ଆଖି ଦୁଇଟି ମହାଶୂନ୍ୟ ଆଡ଼େ ଅନାଇ ରହିଲା।

ବାହାରେ ସେତେବେଳେ ଝଡ଼ର ତାଣ୍ଡବ।

ମଡ଼ମଡ଼ ହୋଇ ଭାଙ୍ଗି ପଡୁଚି ଗଛଡ଼ାଳସବୁ। ଉପୁଡ଼ି ପଡ଼ିଚି ସୁନ୍ଦରମଣିଙ୍କର ଏତେ ସାଧର ବୃନ୍ଦାବନୀ ଅଁଳା ଗଛ...ଏକ ମହାଜୀବନର ଅତିନ୍ଦ୍ର ପ୍ରହରୀ !





ଡକ୍ଟର ହେମନ୍ତ କୁମାର ଦାସ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ପରିଚିତ ନାମ। ନାଟକ,ଗଳ୍ପ,ଉପନ୍ୟାସ,ଶିଶୁ ଓ ନବ ସାକ୍ଷର ସାହିତ୍ୟ ଏବଂ ସମାଲୋଚନା କ୍ଷେତ୍ରରେ ସେ ନିୟମିତ ଲେଖନୀ ଚାଳନା କରି ଆସୁଛନ୍ତି। ଏଥିପାଇଁ ସେ ବିପୁଳ ପାଠନୀୟ ଶ୍ରଦ୍ଧା ତଥା ସମ୍ମାନର ଅଧିକାରୀ ହୋଇପାରିଛନ୍ତି। ନିଜର ସାହିତ୍ୟିକ ଦର୍ଶନ ସମ୍ପର୍କରେ ସୂଚନା ଦେଇ ଡକ୍ଟର ଦାସ କହନ୍ତି, ମାଟି ଓ ମଣିଷର ଜୀବନ ସଂଗୀତ ଗାନ ହିଁ ହେଉଛି ପ୍ରତ୍ୟେକ ସାହିତ୍ୟିକର ଧର୍ମ। ମାଟିଠାରୁ ଦୂରେଇଗଲେ ମଣିଷ ଜୀବନଠାରୁ ମଧ୍ୟ ବିଛିନ୍ନ ହୋଇଯାଏ। ଜୀବନ ବ୍ୟତିରିକ୍ତ ସାହିତ୍ୟ ପଦବାଚ୍ୟ ହୋଇନପାରେ। ତାଙ୍କର ପ୍ରତ୍ୟେକ ଗଳ୍ପ,ଉପନ୍ୟାସ,ନାଟକ ଓ ଏକାଙ୍କିକାରେ ଏଇ ଜୀବନ ସଂଗୀତର କରୁଣ ମଧୁର ମୂର୍ଚ୍ଛନା ଶୁଣିବାକୁ ମିଳେ। 'ହେ ମହାଜୀବନ'ର ସମସ୍ତ ଗଳ୍ପରୁ ଏହାର ପରିଚୟ ମିଳିବ। ସତୁରୀରୁ ଉର୍ଦ୍ଧ୍ୱ ପୁସ୍ତକର (ଉଭୟ ଇଂରାଜୀ ଓ ଓଡ଼ିଆରେ) ରଚୟିତା ଡଃ ଦାସ ବହୁ ମର୍ଯ୍ୟାଦାଜନକ ପୁରସ୍କାରେ ଭୂଷିତ ହୋଇ ସାରିଛନ୍ତି।

...ପ୍ରକାଶକ...

ମହମ୍ମଦିଆ ବଜାର,କଟକ-୭୫୩୦୦୨

